# ହ୍ୟାମ୍‌ଲେଟ୍



ଶ୍ରୀ ଅକ୍ଷୟ୍ କୁମାର ବନ୍ଦ୍ୟୋପାଧ୍ୟାୟ୍, ଏମ୍, ଏ, ବି, ଇତି ।

# ହ୍ୟାମ୍‌ଲେଟ୍

ବିଶ୍ୱବିଶ୍ରୁତ ସୁନାମଧନ୍ୟ ଇଂରାଜ କବି ଓ ନାଟ୍ୟକାର
ଉଇଲିଅମ୍ ସେକ୍‌ସ୍‌ପିଅର୍‌ଙ୍କର ରହସ୍ୟମୟ ନାଟକର
ଅମିତ୍ରାକ୍ଷର ଛନ୍ଦ ଅନୁବାଦ ।


ଅନୁବାଦକ
ସମ୍ବଲପୁର ଜିଲ୍ଲା ସ୍କୁଲ ଶିକ୍ଷକ
**ଶ୍ରୀ ଅକ୍ଷୟ୍‌କୁମାର ବନ୍ଦ୍ୟୋପାଧ୍ୟାୟ୍, ଏମ୍, ଏ, ବି, ଇଡି ।**


# HAMLET

**By**
**William Shakespeare**

*Translated into Oriya in Blank Verse*
*By*


**Akshoy Kumar Bandyopadhyaya M. A. B. ED.**
**Teacher, Sambalpur, Zilla School.**


**1934**

Price Rs. 1—4　　　　ମୂଲ୍ୟ ଠ ୧ ।

# ନାଟ୍ୟୋଲ୍ଲିଖିତ ବ୍ୟକ୍ତିଗଣ ।

## ପୁରୁଷ ।

କ୍ଲଡ଼ିଅସ୍—ଡେନ୍‌ମାର୍କର ରାଜା ।

ହ୍ୟାମ୍‌ଲେଟ୍—ଭୂତପୂର୍ବ ରାଜାଙ୍କର ପୁତ୍ର ଓ ବର୍ତ୍ତମାନ ରାଜାଙ୍କର ଭ୍ରାତୃଷ୍ପୁତ୍ର ।

ପଲୋନିଅସ୍—ପ୍ରଧାନ ସଚିବ ।

ହୋରାସିଓ—ହ୍ୟାମ୍‌ଲେଟ୍‌ଙ୍କ ବନ୍ଧୁ ।

ଲେର୍ଟିସ୍—ପଲୋନିଅସ୍‌ଙ୍କ ପୁତ୍ର ।

ଭଲ୍‌ଟିମଣ୍ଡ୍ }
କର୍ଣ୍ଣେଲିଅସ୍ }
ରୋଜେନ୍‌କ୍ରାନ୍ସ }
ଗିଲ୍‌ଡେନ୍‌ଷ୍ଟାର୍ଣ୍ଣ } ସଭାସଦ୍‌ଗଣ ।
ଅସ୍ରିକ୍ }
ଜନୈକ ଭଦ୍ରବ୍ୟକ୍ତି }

ମାର୍ସେଲସ }
ବାର୍ଣ୍ଣାର୍ଡୋ } ରାଜକର୍ମଚାରୀ ।

ଫ୍ରାନ୍‌ସିସ୍କୋ—ଜନୈକ ସୈନିକ ।

ଜନୈକ ଧର୍ମଯାଜକ ।

ରେନାଲ୍ଡୋ—ପଲୋନିଅସ୍‌ଙ୍କ ଭୃତ୍ୟ ।

ଅଭିନେତୃ ବୃନ୍ଦ ।

ଦୁଇଜଣ କୃଷକ—ସମାଧି ଖନନକାରୀ ।

ଫୋର୍ଟିନ୍‌ବ୍ରାସ—ନରୱେ ଯୁବରାଜ ।

ଅନେକ ସୈନ୍ୟାଧ୍ୟକ୍ଷ ।
ଇଂରାଜ ରାଜଦୂତଗଣ ।

## ସ୍ତ୍ରୀ ।

ଗାର୍ଟ୍ରୁଡ୍—ଡେନ୍‌ମାର୍କ୍‌ର ରାଣୀ ଓ ହ୍ୟାମ୍‌ଲେଟ୍‌ଙ୍କ ଜନନୀ ।
ଓଫିଲିଆ—ପଲୋନିଅସ୍‌ଙ୍କ କନ୍ୟା ।

ଭଦ୍ରବ୍ୟକ୍ତି, ଭଦ୍ରମହିଳା, ସୈନ୍ୟ, ନାବିକ, ବାର୍ତ୍ତାବହ ଓ
ଅନ୍ୟ ଅନୁଚର ବୃନ୍ଦ ।
ହ୍ୟାମ୍‌ଲେଟ୍‌ଙ୍କ ପିତାଙ୍କର ପ୍ରେତମୂର୍ତ୍ତି ।

### ସ୍ଥାନ—ଡେନ୍‌ମାର୍କ



# ହ୍ୟାମ୍‌ଲେଟ୍

## ପ୍ରଥମ ଅଙ୍କ

### ପ୍ରଥମ ଦୃଶ୍ୟ

ଏଲ୍‌ସିନୋର—ଦୁର୍ଗର ସମ୍ମୁଖସ୍ଥ ମଞ୍ଚ । ( ୧ )

[ ଫ୍ରାନ୍‌ସିସ୍କୋ ପହରାରେ ନିଯୁକ୍ତ—ବାର୍ଣ୍ଣାଡ଼ୋର ପ୍ରବେଶ । ]

ବାର୍ଣ୍ଣାଡ଼ୋ—କିଏ ତୁମ୍ଭେ ?

ଫ୍ରାନ୍‌ସିସ୍କୋ— କହ ତୁମ୍ଭେ କିଏ; ରହ ତହିଁ;
ଦିଅ ଆତ୍ମ ପରିଚୟ ।

ବାର୍ଣ୍ଣା— ଦୀର୍ଘାୟୁ ହୁଅନ୍ତୁ
ନୃପତି ।

---

( ୧ ) ଏଲ୍‌ସିନୋର—ଡେନ୍‌ମାର୍କ୍‌ର ଉତ୍ତର-ପୂର୍ବ ଉପକୂଳସ୍ଥିତ ଗୋଟିଏ ବନ୍ଦର । କୋପନ୍‌ହେଗେନ୍‌ର ଉତ୍ତର ପଶ୍ଚିମରେ ଅବସ୍ଥିତ ।

ଫ୍ରାନ୍—ବାର୍ଣ୍ଣାଡ଼ୋ ?

ବାର୍ଣ୍ଣା— ସେହି ।

ଫ୍ରାନ୍— ହେଲ ସମାଗତ
ଉଚିତ ସମୟେ ।

ବାର୍ଣ୍ଣା— ବାଜିଲା ଦ୍ୱାଦଶ ଘଡ଼ୀ;
ଯାଅ, ଭୁଞ୍ଜ ନିଦ୍ରାସୁଖେ ।

ଫ୍ରାନ୍— ଦେଲ ଅବ୍ୟାହତି,
ତେଣୁ ଘେନ ଧନ୍ୟବାଦ; ପଡ଼ୁଛି କଠୋର —
ଶୀତ, ଅଛି ପରଶ୍ରାନ୍ତ ମୁହିଁ ।

ବାର୍ଣ୍ଣା— ହୋଇଲା କି ହେ
ନିର୍ବିଘ୍ନେ ପହରା ସାଙ୍ଗ ?

ଫ୍ରାନ୍— ଶୁଣି ନାହିଁ, ପଦ-
ଶବ୍ଦ ଗୋଟିଏ ମୂଷାର ।

ବାର୍ଣ୍ଣା— ହେଉ, ଯାଅ ତେବେ
ଦେଉଛି ମେଲାଣି । ହୋରାସିଓ, ମାର୍ସେଲସ୍
ଦେବେ ପହରା ମୋ'ସହ, ଦେଖିଲେ ତାହାଙ୍କୁ
କହିବ ସେ ଶୀଘ୍ର ଗତି ଆସିବେ ଏଠାକେ ।

ଫ୍ରାନ୍—ଏଇ, ତାଙ୍କ କଣ୍ଠସ୍ୱର ଶୁଭୁଅଛି ପରା !
ରହ, କହ କିଏ ତୁମ୍ଭେ ଅଛୁଛ ସେଠାରେ ?

( ହୋରାସିଓ ଓ ମାର୍ସେଲସ୍‌ର ପ୍ରବେଶ )

ହୋରା—ମିତ୍ର ଏ ଦେଶର ।

ମାର୍ସେ— ଚିର ଭୃତ୍ୟ ରାଜାଙ୍କର,

ଫ୍ରାନ୍—ସେନୁଛ ମେଲ୍ଲଣି ଏବେ ।

ମାର୍ସେ— ଯାଅ ହେ ସୈନିକ,
ଦେଖୁଛ ବଦାସ୍ତୁ; ଅଛ କିଏ ପହରାରେ ?

ଫ୍ରାନ୍—ଅଛ ବାର୍ଣ୍ଣାଡ଼ୋ ମୋ'ସ୍ଥଳେ; ସେନୁଛ ମେଲ୍ଲଣି । (ପ୍ରସ୍ଥାନ)

ମାର୍ସେ—କହେ ବାର୍ଣ୍ଣାଡ଼ୋ !

ବାର୍ଣ୍ଣା— କହିବା ହେଉ, ଅଛନ୍ତିକି
ହୋରାସିଓ ତହିଁ ?

ହୋରା— ସେହିପରି ଜଣେ ।

ବାର୍ଣ୍ଣା—ସ୍ୱାଗତ ହୋରାସିଓ, ସ୍ୱାଗତ ମାର୍ସେଲସ୍ ।

ମାର୍ସେ—ଦେଖିଛ କି ସେହି ଦୃଶ୍ୟ ଅଦ୍ୟ ରଜନୀରେ ?

ବାର୍ଣ୍ଣା—ଦେଖିନାହିଁ କିଛି ।

ମାର୍ସେ— କହେ ହୋରାସିଓ, ଏହା
କଳ୍ପନା ପ୍ରସୂତ, ବିଶ୍ୱାସର ଯୋଗ୍ୟ ନୁହେ
ଦେଖିହୁଁ ନୟନେ ଯେଉଁ ଦୃଶ୍ୟ ଭୟାନକ
ବେନିଥର; ତେଣୁ କହିଛି ବିନୟେ ତାକୁ
ରହି ଜାଗରେ, ଅମ୍ଭ ସହ ରଜନୀଭାଗେ
କରୁ ନିରୀକ୍ଷଣ, ଆସିଲେ ସେ ଛାୟାମୂର୍ତ୍ତି
ଦେଖି ତା ସ୍ୱନେନେ ହେବ ସଂଶୟ ମୋଚନ,
ହେଲେ ଇଚ୍ଛା କରିବ ସେ ଆଳାପ ତା' ସହ ।

ହୋରା—ଥାଉ, ଥାଉ, କେବେନାହିଁ ଆସିବ ସେ ଅଉ ।

ବାର୍ଣ୍ଣୋ—ବସ କ୍ଷଣେ, କହିବା ତୁମ୍ଭଙ୍କୁ ପୁଣି
କରନ୍ତୁ ଯା କେତେଗଡ଼ିଥ ଗତ ଦୁଇରାତେ;
ନ ହେଲେ ବିଶ୍ୱାସ ତୋହ୍ନ ଆମ୍ଭର ବଚନେ,
ହେଉ ପଛେ ତବ ଶ୍ରୁତି-ପୀଡ଼ା ଜାତ ।

ହୋରା—ଅଚ୍ଛା,
ବସିବା ଏ ଠାବେ, ଶୁଣିବା ବାର୍ଣ୍ଣୋଙ୍କୋ ତବ
ବଚନ କଥନ ।

ବାର୍ଣ୍ଣୋ—ମାନ ଗତ ରଜନୀରେ,
ଦେଖୁଛ ଯେ ତାରା ଧ୍ରୁବ ତାରାର ପଶ୍ଚିମେ,
ସେହି ସ୍ଥଳେ, କରିଥିଲା ଯେବେ ଗଗନର
ପ୍ରାପ୍ତ ସେହି ଅଂଶ, ଯହିଁ ଝଲୁଛି ତା ଏବେ,
ନୈଶ-ନିସ୍ତବ୍ଧତା ଭେଦି ବାଜିଲା ଯେ କାଳେ
ଘଣ୍ଟା ଗୁରୁସ୍ୱନେ ଏକ, ମାର୍ସେଲସ୍, ମୁହିଁ—

(ପ୍ରେତର ପ୍ରବେଶ)

ମାର୍ସେ—ରହ ରହ, ଦେଖ ପୁଣି ଆସୁଛି କି ଭଳି !

ବାର୍ଣ୍ଣୋ—ଧରି ସେହି ମୂର୍ତ୍ତି, କରି ପରିଧାନ ସେହି
ବେଶ ମୃତ ରାଜାଙ୍କର ।

ମାର୍ସେ—ଜ୍ଞାଣ ତୁମ୍ଭେ ଦେବ-
ଭାଷା ହୋରାସିଓ, କର ଅଳାପ ତା' ସହି । (୧)

(୧) ଦେବଭାଷା—ଲାଟିନ୍ ।

ବାର୍ଣ୍ଣୋ—ଦେଖ ହୋରାସିଓ, ନୁହେ କି ଏ ଛାୟାମୂର୍ତ୍ତି
ରାଜମୂର୍ତ୍ତି ସମ ?

ହୋରା— ଅଛି ପୂର୍ଣ୍ଣ ସାମଞ୍ଜସ୍ୟ,
କରୁଛି ବିସ୍ମୟେ, ହାସେ ସ୍ତମ୍ଭିତ ମୋ' ଚିତ୍ତ ।

ବାର୍ଣ୍ଣୋ—କର ତୁମ୍ଭେ ସମ୍ଭାଷଣ ।

ମାର୍ସେ— ପୁଚ୍ଛ ପ୍ରଶ୍ନ ତାକୁ,
ହୋରାସିଓ ।

ହୋରା— କିଏ ତୁମ୍ଭେ ନିଶୀଥ-ସମୟେ,
କରି ଭଙ୍ଗ ନୈଶ-ନୀରବତା, ଭ୍ରମୁଛ ହେ
ଧରି ରାଜବେଶ, ଯେଉଁ ବେଶେ ଭୂତପୂର୍ବ
ଡେନ୍‌ମାର୍କ-ଭୂପତି କରୁଥିଲେ ବିଚରଣ
ଜୀବିତ କାଳରେ ? କହ, ଦିଅ ହେ ଉତ୍ତର ।

ମାର୍ସେ—ହେଲା ସେ କୁପିତ ।

ବାର୍ଣ୍ଣୋ— ଦେଖ ଧୀରେ, ଦୀର୍ଘପଦ-
କ୍ଷେପେ କରୁଛି ପ୍ରସ୍ଥାନ ।

ହୋରା— ରହ, କହ କଥା,
କର ସମ୍ଭାଷଣ । ( ପ୍ରେତର ପ୍ରସ୍ଥାନ )

ମାର୍ସେ— ହେଲା ସେ ଅଦୃଶ୍ୟ, ଅହୋ,
ନ ଦେଲା ଉତ୍ତର ।

ବାର୍ଣ୍ଣୋ— କି ହେଲୁ ହେ ହୋରାସିଓ,
ଅଙ୍ଗ-ଯଷ୍ଟି ତବ ହେଉଛି କମ୍ପିତ, ମୁଖ

ହୋଇଛ ବିବର୍ଣ୍ଣ ? ଅଟେ କି ଅଳୀକ ଏହା ?
କହ କି ମତ ତୁମ୍ଭର ?

ହୋରା— ଜାଣ ହେ କଣ୍ଟସ୍,
ନ ଦେଖିଲେ ନେନେ କେବେ ନୁହନ୍ତା ପ୍ରତୀତ
ମାତ୍ର ଶୁଣି ତବ ମୁଖୁଁ ।

ମାର୍ସେ— ନୁହେଁ କିଏ ମୂର୍ତ୍ତି
ରାଜମୂର୍ତ୍ତି ସମ ?

ହୋରା— ତୁମ୍ଭ ମୂର୍ତ୍ତି ତୁମ୍ଭସମ
ଦଶଇ ଯେସନ । ଏହିଭଳି ତନୁତ୍ରାଣେ ତନୁ
କରି ଆଚ୍ଛାଦିତ, କରିଥିଲେ ଦ୍ୱନ୍ଦ୍ୱଯୁଦ୍ଧ
ଭଙ୍ଗିବାକୁ ଠାଣ ଦମ୍ଭୀ ନରୱେ ରାଜାର;
ଏହିଭଳି ଭ୍ରୂଭଙ୍ଗ-ଜ୍ୱାଳା ଜ୍ୱଳେ ତାଙ୍କର
ଦେଖିଥିଲି ଦିନେ, କ୍ରୋଧେ ମତ୍ତ ହୋଇ ଯେବେ
କଲେ ସେ ପ୍ରହାର ସଭାସ୍ଥଳେ ପୋଲକଙ୍କୁ—,(୧)
ତୁଷାର-ମଣ୍ଡିତ-ଦେଶେ ସୁଦକ୍ଷ ଗୃଳନେ
ଯେଉଁ ଚକହୀନ ଯାନ । ଆଶ୍ଚର୍ଯ୍ୟ ଏ ଦୃଶ୍ୟ । (୨)

ମାର୍ସେ—ଏହି ଭାବେ ଦୁଇଥର ନିଶୀଥ ସମୟେ
ସହସା ସେ ଆସି ପୁଣି ଯାଇଛନ୍ତି ଚାଲି
ଦୃଢ଼ର ଗତିରେ, ଥିଲୁ ଅମ୍ଭେ ପହରାରେ
ନିଯୁକ୍ତ ଯେ କାଳେ ।

---

(୧) ପୋଲକ—ପୋଲଣ୍ଡବାସୀ ।
(୨) ଚକହୀନ ଯାନ—Sledge.

ହୋରା—                    ଘଟିବ କି ବଡ଼ ତାହା
ନ ଜାଣଇ ମୁହିଁ, ମାତ୍ର ଏ ଧାରଣା ମୋର
ହେବ ଛାରଖାର ଅଣୁ ଏ ଦେଶାଳ ରାଜ୍ୟ;
କରୁଛି ଏ ଅଶୁଭ ସୂଚନା ।

ମାର୍ସେ—                    ଅଚ୍ଛା, ଆସ
ବସିବା ଏଠାବେ; କହ ଜାଣିଛ କି କେହି
କି ହେତୁ ଏ ପହରାର କଠୋର ବ୍ୟବସ୍ଥା;
ପ୍ରତିରାତ୍ରେ ପ୍ରଜାଗଣେ କରୁଛି ଅସ୍ଥିର,
ହେଉଛି କପାଇଁ ସୃଷ୍ଟ ତୋପ ଅନୁଦିନ,
ସମର-ସମ୍ଭାର କପାଁ ପଣ୍ୟ ଦ୍ରବ୍ୟରୂପେ
ଆସଇ ବିଦେଶୁଁ; ସୂତ୍ରଧର କୁଳ କପାଁ
ଭୁଲି ରବିବାର ଲଗିଛନ୍ତି ପ୍ରାଣପଣେ
ପୋତ ନିର୍ମାଣରେ, କି ହେତୁ ଏ ରଣସଜ୍ଜା,
କାର ପ୍ରତିକୂଳେ, ଦେଶବାସୀ-ଚମୂ ମାତି
କରୁଛନ୍ତି ଅହୋରାତ୍ର ଅବଶ୍ରାନ୍ତ ଭାବେ;
କିଏ ଦେବ ଏ ବାରତା ?

ହୋରା—                    କହିପାରେଁ ମୁହିଁ,
ଶୁଣିଛି ଯା ବହୁମୁଖୀ-ଜନଶ୍ରୁତି-ମୁଖେ ।
ଜାଣ ତୁମ୍ଭେ ଭୂତପୂର୍ବ ଅମ୍ଭ ନୃପତିଙ୍କି,
( ଦେଖିଲୁଁ ସାକ୍ଷାତେ ଯାଙ୍କ ଛାୟାମୂର୍ତ୍ତି ଏବେ )
ନରୱେ ମଣ୍ଡଳାଧୀଶ ଫୋର୍ଟିନବ୍ରାସ୍ ବଳୀ
ଦମ୍ଭଭରେ ଦ୍ୱନ୍ଦ୍ୱ ଯୁଦ୍ଧେ କରିଲେ ଆହ୍ୱାନ

ମଣି ବଳେ ଆପଣାଙ୍କୁ ତାଙ୍କ ସମକକ୍ଷ;
ଦର୍ପି-ଦର୍ପ-ହର ଶୂର ନରେଶ ହ୍ୟାମ୍‌ଲେଟ୍‌ (୧)
( ଶୌର୍ଯ୍ୟେ, ବୀର୍ଯ୍ୟେ ଅତୁଳ ସେ ଥିଲେ ଏ ମଣ୍ଡଳେ )
କରଲେ ସଂହାର ରଣେ ଫୋର୍ଟିନ୍‌ବ୍ରାସ୍‌ ଭୂପେ;
ଚୁକ୍ତିପତ୍ର ସ୍ୱାକ୍ଷରିତ କରି ସେ ଅର୍ପଣ
କରିଥିଲେ ପ୍ରାଣସହ ଅଖଣ୍ଡ ଭୂଖଣ୍ଡ
ଥିଲା ତାଙ୍କ ଦଣ୍ଡାଧୀନ ଯାହା, ଜେତୃ-ହସ୍ତେ;
ନୃପତି ଆମ୍ଭର ପୁଣି କରିଥିଲେ ପଣ
ଦେବେ ସେହି ପରିମାଣେ ରାଜ୍ୟର ଅର୍ଦ୍ଧାଂଶ,
କଲେ ପରାଭୂତ ତାଙ୍କୁ ଯୁଦ୍ଧେ ଫୋର୍ଟିନ୍‌ବ୍ରାସ;
ସେହି ଚୁକ୍ତି ମତେ ଯୁଦ୍ଧେ ତେଜି ନିଜ ପ୍ରାଣ,
ହାରିଲେ ଆପଣା ରାଜ୍ୟ ନରଓ୍ୱେ ନୃପତି ।
ଯୁବରାଜ ଫୋର୍ଟିନ୍‌ବ୍ରାସ୍‌ ତାଙ୍କ ପୁତ୍ର ଏବେ,
ଉଗ୍ର ଯଥା ଉଗ୍ରମୂର୍ତ୍ତି ଊର୍ଦ୍ଧ୍ୱ ଫଣାଫଣୀ,
କରିଛି ସଦମ୍ଭେ ଠୁଳ ନରଓ୍ୱେ ସୀମାନ୍ତେ
ଠାବେ ଠାବେ ସୈନ୍ୟଦଳ ସୀମାନ୍ତ-ନିବାସୀ
ଦୁର୍ବାରଣ ରଣପ୍ରିୟ ଅନ୍ଧରଙ୍କ ଜନେ
ଦେଇ ଅନ୍ନ ଦଳଭୁକ୍ତ କରିଛି ତାହାଙ୍କୁ,
ଅଭିସନ୍ଧି ତାର ହେଲେ ନୃପତି ଆମ୍ଭର,
ବୁଝିଛନ୍ତି, ଇଚ୍ଛଇ ସେ ନଷ୍ଟ ପିତୃରାଜ୍ୟ
କରିବାକୁ ହସ୍ତଗତ ବଳାତ୍କାରେ ଏବେ;

(୧) ହ୍ୟାମ୍‌ଲେଟ୍‌—ଡେନ୍‌ମାର୍କ୍‌ର ଭୂତପୂର୍ବ ରଜା ଓ ଯୁବରାଜ ହ୍ୟାମ୍‌ଲେଟ୍‌ଙ୍କ ପିତା ।

ଶୁଣିଛ ମୁଁ ସେହୁ ଦେଖୁ ଅମ୍ଭର ଏ ରଣ-
ସଜ୍ଜା, ପ୍ରହରିଜାଗରଣ, ରାଜ୍ୟ ମଧ୍ୟେ ଏହୁ
ଅସ୍ଥିରତା, କୋଳାହଳ ଲାଗିଛୁ ସତତ ।

ହାର୍ଣ୍ଣୀ—ସମ୍ଭବତଃ ତାହାହିଁ କାରଣ; ତେଣୁ ଏହୁ
ଛାୟାମୂର୍ତ୍ତି ଅମଙ୍ଗଳ-ଶଂସୀ, ଜଣାଯାଏ
କଞ୍ଚୁକେ ଆବୃତ ହୋଇ, କରୁଛୁ ଭ୍ରମଣ ( ୧ )
ଧରି ମୃତ ରାଜାଙ୍କର ବେଶ, ଯାଙ୍କ ଲାଗି,
ଲାଗିଅଛୁ ଏ ବିଭ୍ରାଟ ବେନି ରାଜ୍ୟ ମଧ୍ୟେ ।

ହୋରା—ହେଲେ ମଧ୍ୟ ତୁଚ୍ଛ ଏହା କରୁଛୁ ଏ ଦୃଶ୍ୟ
ଚିତ୍ତ ବିଚଳିତ ଅତି, କ୍ଷୁଦ୍ର ଧୂଳି-କଣା;
କରେ ଯଥା ନୟନ ଆକୁଳ, ଥିଲା ପୂର୍ବେ
ରୋମ ଯେବେ ଅଧୀଶ୍ୱର ଅର୍ଦ୍ଧ ଜଗତର,
ଅମିତ-ବିକ୍ରମ-ଶାଳୀ, ଅରାତି-ତପନ,
ସିଜାରଙ୍କ ପତନର କିଛିକାଳ ପୂର୍ବେ, ( ୨ )
ତେଜି ନିଜ ଗୋରସ୍ଥାନ ପ୍ରେତମୂର୍ତ୍ତିଚୟ, ( ୩ )
ଶୁକ୍ଳ ଆଚ୍ଛାଦନେ ତନୁ ଯତନେ ଆବରି,
ଭ୍ରମୁଥିଲେ ରାଜମାର୍ଗେ ରୋମ ନଗରୀର,
ବିକଟ ନିନାଦେ ଭାଷି ଅବୋଧ ବଚନ;
ହେଲା ଅଚମ୍ଭିତେ ଉଲ୍କାପାତ, କକ୍ଷଚ୍ୟୁତ

---

( ୧ ) କଞ୍ଚୁକ—ସାଞ୍ଜୁ ।
( ୨ ) ସିଜର—ରୋମର ସ୍ୱେଚ୍ଛାଚାରୀ ଶାସକ ଜୁଲିଅସ୍ ସିଜାର । (ଖ୍ରୀ: ପୂ: ୧୦୦ରୁ ୪୪) ।
( ୩ ) ଗୋର—କବର, ସମାଧି ।

ହେଲେ ନକ୍ଷତ୍ର ନିଚୟ, ହେଲା ବୃଷ୍ଟି ରକ୍ତ-
ବିନ୍ଦୁ ନୀହାର ଆକାରେ, ପ୍ରଭାକର ହେଲେ
ଅପ୍ରଭମ୍ଳାନ, ପୂର୍ଣ୍ଣିମା ରଜନୀ ହେଲା ବ୍ୟାପ୍ତ
ଅନ୍ଧକାରେ, କଳାକରେ ଗ୍ରାସିଲା ନଭକ, ( ୧ )
ବିଷାଦେ ହୋଇଲା ମଗ୍ନ ବାରୀଶ ଆଳୟ;
ସେ ଭଳି ଅଦ୍ଭୁତ ଦୃଶ୍ୟ ଶିବେତରଶଂସୀ
ସଙ୍କାଳେ ହୁଏ ଦୃଷ୍ଟ, ଏ ଦେଶେ ଅମ୍ଭର
ବକ୍ଷସ୍ଥଳେ ପୁଣି, ଭାବୀ ଅମଙ୍ଗଳ ସୂଚି,
ନଭସ୍ଥାୟୀ ଗ୍ରହସଙ୍ଘ ଭୂତଳ ସଞ୍ଚାରୀ
ପ୍ରେତମୂର୍ତ୍ତିଚୟ, ଦେଇଛନ୍ତି ପୂର୍ବାଭାସ
ଦେଶବାସିଗଣେ, ଉପୁଜାଇ ଜନମନେ
ଭୀତି ଦୁର୍ନିବାର । କ୍ଷାନ୍ତ ହୁଅ, ଦେଖ ପୁଣି
ସେହି ମୂର୍ତ୍ତି ଆସୁଛି କି ଭଳି ! (ପ୍ରେତର ପୁନଃ ପ୍ରବେଶ)
ଗତିରୁଦ୍ଧ
କରିବ ଏହାର, ଦେଉ ପଛେ ମୋତେ ସେହି
ଫୁତ୍କାରେ ଉଡ଼ାଇ । ସମ୍ଭାଳ ମାୟାବୀ ତୁ ରେ !
ଅଛି ଯଦି ସ୍ୱର କିମ୍ବା ବଚନ ତୋହର,
କହ ମୋତେ କଥା;
ରଖିବୁ ଅପୂର୍ଣ୍ଣ ଯଦି
ଶୁଭକର୍ମ କିଛି, କଲେ ତାହା ଶାନ୍ତ ଯେବେ
ଲଭିବୁ ରେ ତୁହି, ହେବ ବୃଦ୍ଧି ପୁରୁଷାର୍ଥ

( ୧ ) ନଭକ—ରାହୁ ।

ମୋର, କହ ମୋତେ ଖୋଲ୍; ( କୁକ୍କୁଟର ଶବ୍ଦ ।
ଜାଣିହୁରେ ଯଦ
ତୁହ ମାୟାର ପ୍ରଭାବେ ( ମାୟାବୀ ତୁ ଯେଣୁ )
କ ବିପତ୍ତି ଲୁଲେ ଲହୁଛ ବିଧାତା, ତୋର
ଦେଶମାତୃକାର, କ ଉପାୟେ ସେ ସଙ୍କଟୁ
ଲଭିବ ସେ ମୁକ୍ତି, କହ ମୋତେ ଫେଡ଼ି, ଅବା
ରଖିହୁ ଗୋପନେ ଯେବେ ଧନରତ୍ନ ଗ୍ରନ୍ଥ
ବସୁଧା ଗରଭେ, କରିଥିଲ୍ ଶୋଷଣ ଯା
ଜୀବିତ କାଳରେ ( ଶୁଣିଛ ମୁଁ ସେ କାରଣେ
ତୋହୋପର ପ୍ରେତଗଣ କରନ୍ତି ଭ୍ରମଣ, )
କହ ସେ ବାରତା; ରହ, କହ ମନୋଭାବ ।
ମାର୍ସେଲସ୍, କର ଭୁଦ୍ଧ ଗତିପଥ ତାର ।

ମାର୍ସେ—କରିବ କ କୁଠାର ଅଘାତ ?

ହୋସ୍—କର ଯଦ
ଲଙ୍ଘେ ସେ ଅଦେଶ ।

ବାର୍ଣ୍ଣା—ଏଇ ଅସିଲ୍ଲ ଏ ଠାବ !

ହୋସ୍—ଏଇ ଅସିଲ୍ଲ ମୋ ପାଶେ

ମାର୍ସେ—ହେଲ ସେ ଅଦୃଶ୍ୟ ।
( ପ୍ରେତର ପ୍ରସ୍ଥାନ )

ଗର୍ହିତ ଅମ୍ଭର ଏହୁ ରୁଢ଼ ବ୍ୟବହାର
ରାଜମୂର୍ତ୍ତି ପ୍ରତି, ବାୟୁସମ ଦୁର୍ଭେଦ୍ୟ ତା'

ଗାଇ, ଅମ୍ଭର ଏ ଅସ୍ଫାଳନ କରୁଥିଲ
ସେନା; ମାଇ ବାଗୁଲତା ।

ବାର୍ଣ୍ଣୋ— ହେଲ ପ୍ରେତ ଯେନ୍ତେ
କହୁଥାନ୍ତା କିଛି ଡାକିଲା କୁକ୍କୁଟ ଯେବେ ।

ହୋର—ତହୁଁ ପଳାଇଲା ଯେରେ ରାଜଦଣ୍ଡ ଭୟେ
ଯଥା ପଳାଏ ତସ୍କର । ଶୁଣିଛି ମୁଁ ଲୋକ-
ମୁଖେ, ତାମ୍ରଚୂଡ଼ ଯେବେ ବୈତାଳିକ ତାନ
ତୋଳି ପ୍ଲୁତ-ସ୍ୱରେ ଅଂଶୁମାଳୀ ଦିବାକରେ
କରେ ଜାଗରିତ, ଶୁଣି ସେ ଅରାବ ତାର
ଜଳେ, ସ୍ଥଳେ, ବହ୍ୱାୟୁସେ ଅଥବା ପାବକେ
ଯହିଁ ଯେଉଁ ପ୍ରେତଗଣ କରନ୍ତି ବିହାର,
ଝେଙ୍କି ତାହା ଦ୍ରୁତଗତି ଗମନ୍ତି ସ୍ୱସ୍ଥାନେ;
ଯଥାର୍ଥତା ସେ ଉକ୍ତିର କଲା ପ୍ରମାଣିତ
ଏହି ଛାୟାମୂର୍ତ୍ତି ଏବେ ।

ମାର୍ସେ— ହେଲା ସେ ଅଦୃଶ୍ୟ
ଶୁଣି କୁକ୍କୁଟର ରବ । କହୁଥାନ୍ତି ଲୋକେ,
ସେ ଶୁଭ ମୁହୂର୍ତ୍ତ ହେଲେ, ଯେ କାଳେ ଅମ୍ଭର
ଲୋକତ୍ରାତା ଯିଶୁ ହେଲେ ଅବତୀର୍ଣ୍ଣ ଭବେ,
ସମଗ୍ର ଶର୍ବରୀ ବ୍ୟାପି ଡାକଇ ସେ ଖଗ,
ଶୁଣି ତା' ମଙ୍ଗଳ ତାନ ପ୍ରେତକୁଳ ଭୟେ
ରହନ୍ତି ଲୁଚି, ସୁନ୍ଦର ସୌଷ୍ଠବପୂର୍ଣ୍ଣ
ହୁଏ ବିଭାବରୀ; କି ପାବନ ସେହି କାଳ,

କବା ତାର ଅଦ୍ଭୁତ ମହିମା । କୂର ଗ୍ରହ-
ଗଣ ଭୁଲି ବୈରଭାବ ରହନ୍ତି ମଉନେ,
ଡ଼ାକିନୀ, ଯୋଗିନୀଦଳ ବେଗର ପସରି
ରଖନ୍ତି ଯୋଡ଼ାଇ, ମାୟାବିନୀ ମାୟାଜାଲ
ହୁଏ ଛିନ୍ନଭିନ୍ନ ।

ହୋରା— ଶୁଣିଛି ମୁଁ ତାହା, କରେଁ
କିଞ୍ଚିତେ ବିଶ୍ୱାସ । ଦେଖ ଦୂରେ ଉଷାଦେବୀ,
ଅରୁଣ ବରଣୀ, କରୁଛନ୍ତି ବିଚରଣ,
ନୀହାରମଣ୍ଡିତଶୃଙ୍ଗ ପୂର୍ବଗିରି ଚୂଡ଼େ, (୧)
ଅସ, ସାଙ୍ଗ କରିବା ପହରୀ; ଦେବା ଚାଲ
ଯୁବରାଜ ହ୍ୟାମ୍‌ଲେଟଙ୍କୁ ଏ ଅପୂର୍ବ ବାର୍ତ୍ତା,
ଦେଖିଲୁଁ ଯା ନେତ୍ରେ ଆମ୍ଭେ ଅଦ୍ୟ ରଜନୀରେ;
ହେଉଛି ପ୍ରତୀତ ମୋର ସେହି ପ୍ରେତମୂର୍ତ୍ତି,
ନ କଲା ପ୍ରକାଶ ଯେହୁ ଆମ୍ଭର ସାକ୍ଷାତେ
ମନୋଭାବ ତାର, ସେତ କହିବ ତାହାଙ୍କୁ ।
ନୁହେଁ କି କର୍ତ୍ତବ୍ୟ, ବନ୍ଧୋ, ଦେବା ଏ ବାରତା,
ଅଟନ୍ତି ଆମ୍ଭର ଯେଣୁ ଅତିପ୍ରିୟ ସେହୁ ?

ମାର୍ସେ— ଚାଲ, କହିବା ତାହାଙ୍କୁ; ଜାଣେ ମୁହିଁ କାହିଁ
ତାଙ୍କୁ ଭେଟିବା ଏକାଳେ ।

( ସମସ୍ତଙ୍କର ପ୍ରସ୍ଥାନ )



( ୧ ) ନୀହାର—ତୁଷାର ।

## ଦ୍ୱିତୀୟ ଦୃଶ୍ୟ

ଦୁର୍ଗ ମଧ୍ୟସ୍ଥ ଦରବାର ଗୃହ ।

[ ରାଜା, ରାଣୀ, ହ୍ୟାମ୍‌ଲେଟ୍, ପଲୋନିଅସ୍, ଲାର୍ଟିସ୍, ଭଲ୍ଟିମନ୍ଦ୍
କର୍ଣ୍ଣିଲଅସ୍, ସମ୍ଭ୍ରାନ୍ତ ବ୍ୟକ୍ତିଗଣ ଓ ପାର୍ଶ୍ୱଚରମାନଙ୍କର ପ୍ରବେଶ ]

ରାଜା—ଅଦ୍ୟାପି ସବୁଜ ବର୍ଣ୍ଣେ ରହିଛି ରଞ୍ଜିତ,
ଜ୍ୟେଷ୍ଠ ସହୋଦର ହ୍ୟାମ୍‌ଲେଟଙ୍କ ମୃତ୍ୟୁଛବି
ସ୍ମୃତିପଟେ, ଉଚିତ ଏକାଳେ ଆମ୍ଭ ପକ୍ଷେ,
ଦୁଃଖଭରେ ପରିପୂର୍ଣ୍ଣ କରିବା ଅନ୍ତର,
ଉଚିତ ଏକାଳେ, କୁଞ୍ଚିତ ହେବା ସେ ଶୋକେ ( ୧ )
ସାମ୍ରାଜ୍ୟର ଭାଲ; ତଥାପି ହେ ସୁଧୀବୃନ୍ଦ,
ରାଜ୍ୟର କଲ୍ୟାଣ ଚିନ୍ତା ଚିତ୍ତ ବୃତ୍ତି ସଙ୍ଗେ
ଘଟାଇ ବିପ୍ଳବ, କରିଛି ପ୍ରବୃତ୍ତ ମୋତେ
କରିବାକୁ ବିମିଶ୍ରିତ ଭ୍ରାତୃ-ଶୋକ ସହ
ଚିନ୍ତା ଆପଣାର । ତେଣୁ ହର୍ଷ ଶୋକ ବେନି
ଭାବ ମିଶାଇ ଏକତ୍ର, ଆନନ୍ଦ-ସଲିଳେ
ସିକ୍ତ କରି ଏକ ଚକ୍ଷୁ, ବୁହାଇ ଅପର
ନେତ୍ରୁ ଶୋକବାରି, ଅନ୍ତ୍ୟେଷ୍ଟି ସମୟେ କରି
ଅବାହନୀ ଗାନ, କରି ବିସର୍ଜନୀ ସ୍ୱରେ
ସମ୍ପନ୍ନ ଉଦ୍‌ବାହ, ବେନି ଭାବ ସମଭାବେ
ତୁଳି ତୁଳାଦଣ୍ଡେ, କରିଛୁ ଗ୍ରହଣ ତାଙ୍କୁ,

---

( ୧ ) ସମସ୍ତ ସାମ୍ରାଜ୍ୟବାସୀ ଏକ ସମ୍ପୃକ୍ତରେ ଶୋକ ପ୍ରକାଶ କରିବା ଉଚିତ ।

ଥିଲେ ଯେହୁ ଭ୍ରାତୃ-ଜାୟା, ଅର୍ଦ୍ଧାଙ୍ଗିନୀରୂପେ,
ବିଶାଳ ଏ ରାଜ୍ୟ ଏବେ ମୋ'ସହ ଶାସନ
କରିବେ ସେ ତୁଲ୍ୟଭାବେ ରାଣୀରୂପେ ମୋର;
ସଭ୍ୟସଦବର୍ଗ ତୁମ୍ଭେ ଏ ବ୍ୟାପାରେ ପୁଣି
ଦେଇ ଅନୁକୂଳ ମତ, କାର୍ଯ୍ୟାବଳୀ ମୋର
କରିଅଛ ସମର୍ଥନ, କରୁଛି ଜ୍ଞାପନ
ତେଣୁ କୃତଜ୍ଞତା ମୋର, ଦେଇ ଧନ୍ୟବାଦ ।
କହିବି ତୁମ୍ଭଙ୍କୁ ଏବେ ଅଛି ଯା ବିଦିତ:
ଅର୍ବାଚୀନ ଫୋର୍ଟିନ୍‌ବ୍ରାସ୍, କରି ଜ୍ଞାନ ଶକ୍ତି-(୧)
ହୀନ ମୋତେ, ଅବା ଭାବି ଭ୍ରାତାଙ୍କ ବିୟୋଗେ
ରାଜ୍ୟ ହୋଇଛି ଅରାଜକ, କରୁଛି ବିରକ୍ତ
ମୋତେ ବାରମ୍ବାର ପେଶି ଏ ବାରତା, ଦୂତ-
ମୁଖେ, କରିବାକୁ ଅବିଳମ୍ବେ ପ୍ରତ୍ୟର୍ପଣ,
ଚୁକ୍ତିପତ୍ର ସତ୍ତ୍ୱ ନଷ୍ଟ-ପିତୃରାଜ୍ୟ ତାର;
ନାହିଁ ପ୍ରୟୋଜନ ଆଉ କହିବା ବିସ୍ତାର
ଚେଷ୍ଟା ତାର । ସଭ୍ୟସ୍ଥଳେ କରୁଛି ଅଗତ
ଏବେ ସିଦ୍ଧାନ୍ତ ମୋହର: ନରୱେ-ନୃପଙ୍କ
ପାଶେ ଲେଖିଛି ଏ ପତ୍ର, ପିତୃବ୍ୟ ସେ ତାର,
( ବ୍ୟାଧିଗ୍ରସ୍ତ ହୋଇ ବୃଦ୍ଧ, ଭ୍ରାତୁଷ୍ପୁତ୍ର ଚେଷ୍ଟା
ନ ଜାଣନ୍ତି କିଛି ) ତେଣୁ ତାଙ୍କ ପ୍ରଜାଗଣେ

---

୧ ଅର୍ବାଚୀନ—ସଦସତ୍ ବିଚାରଶକ୍ତିବିହୀନ ।

ପ୍ରବର୍ତ୍ତାଇ ଠାବେ ଠାବେ କରୁଛନ୍ତି ସେ ଟୁଳ
ସୈନ୍ୟଦଳ, ଶୀଘ୍ର ତାକୁ କରିବେ ଦମନ ।
ଯାଅ ତୁମ୍ଭେ କର୍ଣ୍ଣିଲିଅସ୍‌, ଭଲ୍‌ଟିମଣ୍ଡ୍‌ ଏବେ
ଘେନ ଏ ଶୁଭାଶଂସା, ବୃଦ୍ଧ ନରୱେ ରାଜାଙ୍କୁ
ଜଣାଇବ ଅଭ୍ୟର୍ଥନା, ଦେବ ଏହୁ ଲେଖ,
ଦୌତ୍ୟକାର୍ଯ୍ୟ ଏତିକି ତୁମ୍ଭର, ନାହିଁ ଅନ୍ୟ
କିଛି ବାକି; ଯାଅ ଏବେ ଦେଉଛି ମେଲାଣି,
ଦେଖାଅ କର୍ତ୍ତବ୍ୟନିଷ୍ଠା ସାଧି ଏହୁ କର୍ମ ।

କର୍ଣ୍ଣି } —କରିବୁଁ ସାଧନ, ପ୍ରଭୁ, ଏହୁ କର୍ମ ଅବା
ଭଲ୍‌ } ଅନ୍ୟ ଯେଉଁ କାର୍ଯ୍ୟେ କରିବେ ନିଯୁକ୍ତ ।

ରାଜା— ନାହିଁ
ସଂଶୟ ତହିଁରେ, ଯାଅ, ଦେଉଛି ମେଲାଣି ।

(ଭଲ୍‌ଟିମଣ୍ଡ୍‌ ଓ କର୍ଣ୍ଣିଲିଅସ୍‌ର ପ୍ରସ୍ଥାନ)

କହହେ ଲେଏଟିସ ଏବେ ସମ୍ବାଦ ତୁମ୍ଭର,
ଅଛି କି ପ୍ରାର୍ଥନା ତବ ଜଣାଅ ବଦନ;
ଯୁକ୍ତିଯୁକ୍ତ ବାକ୍ୟ କହି ନ ହେବ ନିରାଶ
କେବେ ଡେନମାର୍କଠାରୁ; ଅଛି କି ଯାଚନ
ଯାହା ନ ମାଗିବ ତୁମ୍ଭେ, ନ ଦେବଇଁ ମୁହିଁ ?
ମସ୍ତିଷ୍କ ହୃଦୟସହ ଗ୍ରଥିତ ଯେ ସୂତ୍ରେ,
ଯେଉଁ ସୂତ୍ରେ ହସ୍ତସହ ଗ୍ରଥିତ ବଦନ,
ସେ ସୂତ୍ରେ ଅବଦ୍ଧ ଜାଣ, ଡେନମାର୍କ-ନୃପତି

ତବ ଜନକଙ୍କ ସହ । କହ ଫେଡ଼ ଅଛି
କି ଯାଚନା ତବ ?

ଲଏଁସ୍— ନୃପ-କୁଳ-ଅଳଙ୍କାର,
ଏତକ ମାଗୁଣି ମୋର କରୁଛି ମୁଁ ଭିକ୍ଷା
ଫରାସୀ ଦେଶକୁ ପୁଣି ଯିବ ମୁଁ ବାହୁଡ଼ି;
ହୋଇ ସ୍ୱତଃପ୍ରଣୋଦିତ ଆସିଥିଲି ତହୁଁ,
ଅଭିଷେକ କାଳେ ତବ ରାଜଭକ୍ତି ମୋର
କରିବାକୁ ପ୍ରଦର୍ଶନ, ସାଙ୍ଗ ଏବେ ତାହା,
ପ୍ରବଳ ବାସନା ତେଣୁ ନେଉଛି ଓଟାରି
ମୋତେ ପୁଣି ସେହି ଦେଶେ, ମାଗୁଛି ବିନୟେ
ହୋଇ କୃପାପରବଶ, ଦଅନ୍ତୁ ମେଲାଣି ।

ରାଜା— ଲଭିଛ କି ପିତାଙ୍କ ସମ୍ମତି ? ପଲୋନିଅସ୍,
କହ କି ମତ ତୁମ୍ଭର ?

ପଲୋ— କରି ବହୁ ଶ୍ରମ
ନେଇଛି ଓଟାରି, ପ୍ରଭୁ, ଅନୁମତି ମୋର,
ଦେଇଛି ସମ୍ମତି ଅତି କୁଣ୍ଠିତ ହୃଦୟେ;
ଦଅନ୍ତୁ ନୃମଣି ଆଜ୍ଞା ଯାଉ ସେ ବାହୁଡ଼ି ।

ରାଜା—କର ଯାହା ବୁଝି ତୁମ୍ଭେ ଅନୁକୂଳ ବେଳା,
ରହ ହେ ଲଏଁସ ତହିଁ ଇଚ୍ଛା ଯେତେକାଳ,
ଅପ୍ରୋକ୍ଷିତ କଲେ ତବ ଯଥା ଅଭିରୁଚି
କର ସମସ୍ତ ଯାପନ ।

କହ ଭ୍ରାତୃଷ୍ପୁତ୍ର !
ହ୍ୟାମ୍‌ଲେଟ୍, ତନୟ ମୋହର—

ହ୍ୟାମ୍—(ସ୍ୱଗତ)            ହେଲେହେଁ ମୁଁ
ପୁତ୍ର ତୁଲ୍ୟ, ନୁହଁ ତୁମ୍ଭେ ପିତୃ-ପଦ-ବାଚ୍ୟ ।

ରଜା— କି ହେତୁ ବାରଦଛାୟା ଘୋଟିଛି ବଦନ ?

ହ୍ୟାମ୍—ନୁହେଁ, ପ୍ରଭୁ, ସନ୍ତାପିତ ରୌଦ୍ର ତାପେ ତାହା ।

ରାଣୀ—ହେ ପ୍ରିୟ ହ୍ୟାମ୍‌ଲେଟ୍ କର ଏ କାଳିମା ଦୂର,
ଚିତ୍ତ କର ଉଲ୍ଲସିତ, ନୃପତିଙ୍କ ପ୍ରତି
ବନ୍ଧୁଭାବେ ଫେରାଅ ନୟନ, ନତାନନେ
କି ହେବ ଖୋଜିଲେ ସଦା ଜନକଙ୍କୁ ତବ
ହୋଇ ଶୋକାତୁର; ଜାଣ ଏ ଜଗତ ରୀତି,
ଜନ୍ମିଲେ ଏ ଭବେ ମୃତ୍ୟୁ ଘଟିବ ନିଶ୍ଚୟ,
ସଂସାରର ଲୀଳାଖେଳା କରି କିଛି କାଳ
ଅନନ୍ତ କାଳର ସ୍ରୋତେ ହୁଅନ୍ତି ବିଲୀନ
ପ୍ରାଣିବର୍ଗ ବୁଦ୍‌ବୁଦ ଆକାରେ ।

ହ୍ୟାମ୍—            ଜାଣେ, ଭଦ୍ରେ,
ଏହା ଜଗତର ରୀତି ।

ରାଣୀ—            ତେବେ କି କାରଣେ
ଦୁର୍ବିଷହ ଶୋକଚିହ୍ନ କରିଛ ଧାରଣ ?

ହ୍ୟାମ୍—ନୁହେଁ ମାତ୍ର ଚିହ୍ନ ଏହା, ମର୍ମସ୍ଥଳ ଭେଦୀ
ଗଭୀର ଏ ଦୁଃଖ; ନୁହେଁ ମୁହିଁ ଶୋକ-ଧ୍ୱଜୀ ।

ଜାଣ ମସୀବର୍ଣ୍ଣ ଏହି ଆବରଣ ମୋର,
ଅବା କୃଷ୍ଣ ପରିଚ୍ଛଦ ଯିବନ୍ତ ମା ଜନନି
ଅନ୍ତ୍ୟେଷ୍ଟି ସମୟେ, ଛଳ ଛଳ ନେତ୍ର ଅବା
ଛଳନା ପୂରିତ ଦୀର୍ଘଶ୍ୱାସ, ଅବା ଶୁଷ୍କ
ପାଣ୍ଡୁର ବଦନ, ଅବା ଅନ୍ୟ ଯେତେମତେ
ବିଭିନ୍ନ ଆକାରେ ହୁଏ ଶୋକ ପ୍ରକାଶିତ,
ଏ ଗମ୍ଭୀର ଦୁଃଖ ମୋର ନ ପାରିବ କହି;
ସେ ସବୁ ଶୋକର ଲୀଳା ଅବଲୀଳା କ୍ରମେ
ପାରିବ ଦର୍ଶାଇ ଯେଣୁ ଲୋକ ରଙ୍ଗମଞ୍ଚେ
ଅତଳ ଏ ଦୁଃଖ ମୋର ଅଭିନୟାତୀତ
ସେ ସବୁ ଉପାଙ୍ଗ ମାତ୍ର, ଶୋକ-ପରିଚ୍ଛଦ ।

ରାଜା—ନିବେଦିଲ ଯେଉଁ ଦୁଃଖ ପିତାଙ୍କ ଉଦ୍ଦେଶ୍ୟ,
ସରଳ ମଧୁର ଅତି ସେ ଭାବ ତୁମ୍ଭର;
ମାତ୍ର ହେ ହ୍ୟାମ୍ଲେଟ୍ ଏବେ ଭାବି ଦେଖ ବାରେ
କେ ଅଛି ଅମର ଭବେ, ଜନକ ତୁମ୍ଭର
ହରାଇ ଅଛନ୍ତି ପିତା, ତାଙ୍କ ପିତା ପୁଣି
ତେଜି ମର୍ତ୍ତ୍ୟ ଦିବ୍ୟଧାମେ ଯାଇଛନ୍ତି ଚଳି,
ଉଚିତ ସନ୍ତାନ ପକ୍ଷେ କରିବା ପାଳନ
କର୍ତ୍ତବ୍ୟ ଦର୍ଶାଇ ଶୋକ ମୃତ-ପିତା ପ୍ରତି
କିଛିକାଳ ଅନ୍ତ୍ୟେଷ୍ଟି ସମୟେ, ମାତ୍ର ହେବା
ଶୋକେ ସଦା ମ୍ରିୟମାଣ ନ ଲଭି ସାନ୍ତ୍ୱନା
ଅତୀବ ଗର୍ହିତ, ପୁଣି ଭୀରୁଚିତ ଏହା

ଏଭଳି ଉଦ୍ଦାମ ଶୋକ ଦିଏ ପରିଚୟ
ଅବିବେକିତାର, ବିଧିର ବିଧାନ ପ୍ରତି
ଜନ୍ମାଏ ବିରାଗ, ଚିତ୍ତ କରେ ବିଚଳିତ,
ମନୋବୃଜ୍ଞ୍ୟେ ଘଟାଏ ବିପ୍ଳବ, ମନ୍ଦୀଭୂତ
କରେ ବୁଦ୍ଧି ବୃତ୍ତି; ତେବେ ଅକାରଣେ କହ,
ଅନିବାର୍ଯ୍ୟ ଜାଣି ମୃତ୍ୟୁ ପ୍ରତ୍ୟହ ପ୍ରତ୍ୟକ୍ଷେ
ମୃତ୍ୟୁର ତାଣ୍ଡବ ଲୀଳା କରି ସନ୍ଦର୍ଶନ,
ବିଷାଦ—ସହିତେ ବୃଥା ଅସ୍ତ୍ର-ପୁରୁଷାର୍ଥ
ଦେବା ବିସର୍ଜ୍ଜନ ? ଛି, ଛି, ଏ ବେଭାର ତବ
ପରିପନ୍ଥୀ ବିଧି ବିଧାନର, ନୁହେଁ ଶାନ୍ତ—
ବିଧାୟକ ପ୍ରେତକୂଳ ପକ୍ଷେ, ନୁହେଁ ପୁଣି
ପ୍ରକୃତି ସମ୍ମତ, ବିଶ୍ୱରେ ଅସାର ଅତି,
ସୃଷ୍ଟିର ପ୍ରାରମ୍ଭ କାଳୁଁ ଶମନ-ସଦନେ
ଯେତେ ଶବ ଅଦ୍ୟାବଧି କରିଛନ୍ତି ଯାହା,
ସମସ୍ୱରେ ସର୍ବେ ଏହା କରିଛନ୍ତି ଗାନ
"ରହିନାହିଁ ଚିରକାଳ ଜନକ କାହାର"
କହିଛନ୍ତି ତାରସ୍ୱରେ ସେଇ ଭୂତଗଣେ
"ଜନ୍ମିଲେ ଏ ଭବେ ମୃତ୍ୟୁ ଘଟିବ ନିଶ୍ଚୟ" ।
ଯେଣୁ ମୋ ମିନତି, ବତ୍ସ, ନିଷ୍ଫଳ ଏ ଶୋକ
ଫିଙ୍ଗି ଦିଅ ଦୂରେ, କର ଜ୍ଞାନ ପିତୃତୁଲ୍ୟ
ମୋତେ, ସଭାସ୍ଥଳେ କହୁଛି ମୁଁ ମୁକ୍ତକଣ୍ଠେ
ମୋହ ଅନ୍ତେ ଏକମାତ୍ର ଅଧିକାରୀ ତୁମ୍ଭେ

ବସିବାକୁ ଡେନାମାର ରାଜ-ସିଂହାସନେ;
ପୁଣ ପ୍ରତି ଜନକର ହୃଦୟ-କନ୍ଦରୁ,
ଯେଉଁ ସ୍ନେହ ମନ୍ଦାକିନୀ-ଧାରା ସମ ହୁଏ
ପ୍ରବାହିତ, ସେହି ଅନାବିଳ ପିତୃସ୍ନେହ
କରୁଛି ତୁମ୍ଭଙ୍କୁ ଦାନ । କି କାରଣେ କହ
ଉଇଟେନ୍‌ବାର୍ଗ୍ ବିଦ୍ୟାଳୟେ ଯିବ ତୁମ୍ଭେ ପୁଣି, (୧)
ନୁହେଁ ଅଭିପ୍ରେତ ମୋର, ତେଜ ସେ ବାସନା
କହୁଛି ବିନୟେ ତୁମ୍ଭେ ରହ ଏହିଠାବେ
କର ସୁଖେ କାଳ କ୍ଷେପ ଅମ୍ଭର ଗହଣେ
ଏକାଧାରେ ମୁଖ୍ୟ ସଭାସଦ ଭ୍ରାତୃଷ୍ପୁତ୍ର,
ପୁଣି ପୁତ୍ର ଭାବେ ମୋର ।

ରାଣୀ— କହୁଛି ହ୍ୟାମ୍‌ଲେଟ୍
ଜନନୀର ଅନୁରୋଧ ନ ଯାଅ ହେ ଏଡ଼ି,
ରଖ ମୋ ମିନତି, ରହ ଏଥି ଅମ୍ଭ ପାଶେ,
ତେଜ ମନୁ ଉଇଟେନ୍‌ବାର୍ଗେ ଯିବାର ବାସନା ।

ହ୍ୟାମ୍—ଯଥାସାଧ୍ୟ ଆଜ୍ଞା ତବ କରିବି ପାଳନ ।

ରାଜା—ଦେଲ ସ୍ନେହରସାପ୍ଲୁତ ଯଥାର୍ଥ ଉତ୍ତର
ସ୍ୱଚ୍ଛନ୍ଦେ ବିହାର କର ଡେନାମାର୍ ଦେଶେ
ଭୁଞ୍ଜି ରାଜୋଚିତ ପୂଜା ରାଜପୁତ୍ର ସମ
ଆସ ଭଦ୍ରେ ! ହେଲି ମୁଁ ସନ୍ତୁଷ୍ଟ ଅତି, ଚିତ୍ତ
ହେଲା ଆନନ୍ଦିତ ଶୁଣି ହ୍ୟାମ୍‌ଲେଟ୍‌ର ଏହି

(୧) ଉଇଟେନ୍‌ବାର୍ଗ୍ ଜର୍ମାନ ଦେଶର ଗୋଟିଏ ବିଶ୍ୱବିଦ୍ୟାଳୟ ।

ସ୍ୱେଚ୍ଛାକୃତ ସବିନୟ ଅଙ୍ଗୀକାର ବାଣୀ;
ହୃଦୟର କୃତଜ୍ଞତା  ଜଣାଇବା ଅଣେ;
(୧) ଇଚ୍ଛ ସ୍ୱାସ୍ଥ୍ୟ ହ୍ୟାମ୍‌ଲେଟ୍‌ର ଡେନ୍‌ମାର୍କ-ନୃପତି
କରିବେ ଯେ ପାନ ଅଦ୍ଧ ମାତ୍ର ହର୍ଷଭରେ,
ସେ ବାରତା ତୋପମୁଖେ ହେବ ପ୍ରଚାରିତ
ଅମ୍ବର ପ୍ରଦେଶେ, ଗମ୍ଭୀର ନିଃସ୍ୱନେ ପୁଣି
ପ୍ରତିଧ୍ୱନି-ଚ୍ଛଳେ ଗଗନ ସେ ସୁସମ୍ବାଦ
ଦେବ ପେଶି ଅବନୀ ମଣ୍ଡଳେ ।

ଯିବା ଆସ ।

( ହ୍ୟାମ୍‌ଲେଟ୍‌ ବ୍ୟତୀତ ଅନ୍ୟ ସମସ୍ତଙ୍କର ପ୍ରସ୍ଥାନ )

ହ୍ୟାମ୍— ସାନ୍ଦ୍ର ଘନୀଭୂତ ଅହୋ, ଏହି ମାଂସ-ପିଣ୍ଡ,
ହୋଇ ତରଳିତ ଯେବେ ମୁକ୍ତା-ନନ୍ଦୀ-ସ୍ୱଚ୍ଛ-
ନୀହାର-ବିନ୍ଦୁ-ଆକାର କରନ୍ତା ଧାରଣ;
ହୁଅନ୍ତା ଏ ସ୍ଥୂଳ ଦେହ ପରିଣତ ଯେବେ
ସ୍ୱଚ୍ଛ ସୂକ୍ଷ୍ମ କଳେବରେ ! ବିଧିର ବିଧାନେ
ଅବା ଆତ୍ମହତ୍ୟା ଯେବେ ନହନ୍ତା ଅବିଧି !
ହେ ବିଧି, କରୁଣାନିଧି ସଂସାରର ରୀତି
ଲାଗଇ ବିସ୍ୱାଦ ମୋତେ, ମନେ ହୁଏ ତା'ର
ନାହିଁ କିଛି ରସ ଗନ୍ଧ, ଅସାର ତା ଅତି

(୧) ଅନ୍ୟର ସ୍ୱାସ୍ଥ୍ୟ କାମନା କରି ମଦ୍ୟପାନ କରିବା ପାଶ୍ଚାତ୍ୟ ଦେଶର ଗୋଟିଏ ସାମାଜିକ ରୀତି ।

ମାତ୍ର ଅବଲତାମସ୍ତ ! ଛି, ଛି, ଏ ଜଗତ
କଣ୍ଟକିତ ଲତାଗୁଳ୍ମେ ସମାକୀର୍ଣ୍ଣ ଏବେ।
ପ୍ରତେ ହୁଏ ଯେସନ୍ତେ ଏକ କୁତ୍ସିତ ଉଦ୍ୟାନ
ନାହିଁ ପରିପାଟୀ ତାର, ତରୁଲତା ଅବା
ଅଯତ୍ନେ ପାଳିତ ହୋଇ ଯେ ଯାହାର ମତେ
ବଢ଼ି, ଛିନ୍ନ ପତ୍ରଛନ୍ନ, ଯେ ଯାହାର ମତେ
ରହିଛନ୍ତି ଛନ୍ଦାଛନ୍ଦ ଭିଡ଼ାଭିଡ଼ି ହୋଇ,
ଉଦ୍ୟାନ ପାଳକ ବିନା କେବଳ ଜଞ୍ଜାଳେ
ହୋଇଛି ପୂରିତ । ଅହୋ କି ବିଭତ୍ସ ଦୃଶ୍ୟ,
ହେଲା ଏହି ପରିଣତି ! ଦେହାନ୍ତ ତାଙ୍କର
ମାତ୍ର ହେବ ଦୁଇମାସ, ନୁହେଁ ଏତେଦିନ,
ହେବ ତହିଁ ମଧ୍ୟ ଊଣା; ସରଳ, ଉଦାର
କିବା ପ୍ରକୃତି ତାଙ୍କର ! କେଡ଼େ ମହୀୟୁ,
ପୁଣ୍ୟଶ୍ଳୋକ ଥିଲେ ସେହି ନରପତି କୁଳେ !
ସରି କି ଏ ତାଙ୍କ ସଙ୍ଗେ ? ହୁଏ କି ଭୁବନ
ଭାସ୍କର ଜ୍ୟୋତିଷ୍କ ସଙ୍ଗେ ଜ୍ୟୋତିରିଙ୍ଗ କେବେ
ବସିବାକୁ ଏକାସନେ ? ସରି କି ବାୟସ
କେବେ ବୈନତେୟ ସଙ୍ଗେ ? ଜନନୀର ପ୍ରତି
ଥିଲା କି ସ୍ନେହ ତାଙ୍କର, ବାୟୁର ପ୍ରବାହ
ଖରେ ତାଙ୍କ ଗଣ୍ଡଦେଶେ ହେଲେ ପ୍ରବାହିତ,
ମଣୁଥିଲେ କ୍ଳେଶକର ! ହେ ଦ୍ୟାବା ପୃଥିବ !
ପାଶୋରି ତ ପାରୁନାହିଁ ସେକାଳର କଥା,

କ   ହୃ ବଲ୍ଲୀ ପାଶେ ମାତା ଅଦର ସତତ
ରଖିଥିଲେ ଜନକଙ୍କୁ, ଅବରେ କୃତଘ୍ନୀ
ଯଥା ରସାଳେ ଉଲ୍ଲାସେ, ହେଉଥିଲା ପ୍ରତେ
ଯେତେକେ କରୁଥିଲେ ଯେତେ ପ୍ରେମରସ ପାନ
ବଢ଼ୁଥିଲା କ୍ରମେ ତେତେ ପ୍ରେମର ପିପାସା
ତଥାପି ଗୋଟିଏ ମାସ ନ ହେଉଣୁ ଗତ—
କେମନ୍ତେ ଭୁଲିବ ଏହା !—ରେ ଚପଳା ତୋର
ଖେଳା, ଖେଳା ନାରୀ ସିନା ଜୀବନ୍ତ ବିଗ୍ରହ !
ଏହୁ ସ୍ୱଳ୍ପକାଳ ମଧ୍ୟେ ଯେଉଁ ପାଦତ୍ରାଣ
ସିଦ୍ଧ କରିଥିଲେ ଯାହା ମାତା ଜନକଙ୍କ
(୧)କୁଣପ ପଶ୍ଚାତେ, ବନ୍ଧୁସ୍‌ ନାଇଓବୀ ପରି (୨)
ଭାସି ଅଶ୍ରୁନୀରେ, ସେହୁ ଉପାନହ ଅହୋ
ନ ହେଉଣୁ ପୁରାତନ ସେହି ମାତା ପୁଣି,—
ଆହା ରେ ଦଇବ ! ହୋଇଥିଲେ ପଶୁ, ନାହିଁ
ଯାର କଣ୍ଠତେ ବିଚାର, କରିଥାନ୍ତା ଶୋକ
ଦୀର୍ଘତର—ସ୍ୱାମିପଦେ କରିଲେ ବରଣ
ପିତାଙ୍କର ସହୋଦର ପିତୃବ୍ୟଙ୍କୁ ମୋର

---

( ୧ ) କୁଣପ—ଶବ ।
( ୨ ) ନାଇଓବୀ—ଗ୍ରୀକ୍‌ଦେଶର ଅନ୍ତର୍ଗତ ଥିବ୍ସର ରାଜାଙ୍କର ସ୍ତ୍ରୀ ଥିଲେ । ତାଙ୍କର ଅନେକ ଗୁଡ଼ିଏ ସନ୍ତାନ ଥିଲେ । ସେମାନେ ସମସ୍ତେ ନିହତ ହେବାରୁ ସେ ଗ୍ରୀସର ପ୍ରଧାନ ଦେବତାଙ୍କ ପ୍ରାର୍ଥନାକ୍ରମେ ପ୍ରସ୍ତରରେ ପରିଣତ ହୋଇଥିଲେ । ଗ୍ରୀଷ୍ମକାଳରେ ତାଙ୍କର ଅଶ୍ରୁମୋଚନ କରିବାର ପ୍ରସିଦ୍ଧି ଅଛି ।

ନୋହିବ ତୁଳନା ତାର ପିତାଙ୍କ ସହିତ
ଗୋଷ୍ପଦ ସହିତ ଯଥା ତୁଳା ଜଳଧିର
ଅଥବା ମୋ ସହ ହର୍କୁଲିସ୍‌ର ତୁଳନା (୧)
ଯଥା ହାସ୍ୟାସ୍ପଦ ଅଟେ; ମାସକ ମଧ୍ୟରେ,
ନୟନୁ ଲୋତକଧାର ନ ହେଉଣୁ ଶୁଷ୍କ;
ଛି, ଛି, କି ଛଳନା ! କଲେ ବିବାହ ସେ ପୁଣି !
ଅହୋ କିବା ଦୂଷଣୀୟ ! କି ବେଗେ ଜନନୀ
କଲେ କି କୌଶଳେ ତାଙ୍କ ସ୍ୱାର୍ଥ ସିଦ୍ଧି ପାଇଁ
ଅବହିତ ଏ ବିବାହ, ପିତୃବ୍ୟଙ୍କ ଅଙ୍କେ
ନେଲେ କି ବେଗେ ଆଶ୍ରୟ, ଭୁଲି ପୂର୍ବ ପ୍ରେମ !
ଅଟେ ନିନ୍ଦନୀୟ ଏହା ଅପକୀର୍ତ୍ତିକର ।
କ୍ଷାନ୍ତ ହୁଅ ଚିତ୍ତ, ରୁଦ୍ଧ କରୁଛି ରସନା ।

( ହୋରେସିଓ, ମାର୍ସେଲସ୍ ଓ ବାର୍ଣ୍ଣାର୍ଡୋର ପ୍ରବେଶ )

ହୋରେ—ଯୁବରାଜ, ହେଉ ସ୍ୱସ୍ତି ତବ ।
ହ୍ୟାମ୍— ସୁସ୍ଥଦେହେ
ଦେଖି ମୁଁ ତୁମ୍ଭଙ୍କୁ ହେଲି ଆନନ୍ଦିତ ଅତି ।
କିଏ ହୋରେସିଓ—ଅଥବା ବିଭ୍ରମ ମୋର ।
ହୋରେ—ସେହି, ଯୁବରାଜ, ଚିର ଅନୁଗତ ତବ ।
ପ୍ରିୟବନ୍ଧୁ, କର ମୋତେ ସଖା ସମ୍ବୋଧନ,
କି ହେତୁ ଆସିଛ ତୁମ୍ଭେ ତେଜି ଉଇଟେନ୍‌ବାର୍ଗ ?
ମାର୍ସେଲସ୍ ?

---

( ୧ ) ହର୍କ୍ୟୁଲିସ୍—ଗ୍ରୀସ୍‌ଦେଶର ପ୍ରବଳ ପ୍ରତାପ ଯୋଦ୍ଧା ।

ମାର୍ସେ— ଯୁବରାଜ—
ହ୍ୟାମ୍— ଦେଖି ମୁଁ ତୁମ୍ଭଙ୍କୁ
ହେଲି ଆନନ୍ଦିତ । ସ୍ୱାଗତ ବାଣ୍ଡାହୋ । କହ
କି ହେତୁ ଆସିଛ ତୁମ୍ଭେ ତେଜି ଉଇଟେନ୍‌ବାର୍ଗ ?

ହୋରା—ନାହିଁ ମନ ବିଦ୍ୟାଭ୍ୟାସେ, ଆସିଛି ପଳାଇ ।

ହ୍ୟାମ୍—ଶୁଣି ଏହା ଶତ୍ରୁମୁଖୁଁ ତବ ସ୍ଥିର ଭାବେ
ନ ପାରନ୍ତି ରହି, ଦିଅ ନାହିଁ ଶ୍ରୁତି-ପୀଡ଼ା
କହି, ବନ୍ଧୋ, ନିଜମୁଖେ ଅଖ୍ୟାତି ତୁମ୍ଭର;
ନୁହଁ ତୁମ୍ଭେ ପାଠଚୋର ଜାଣେ ମୁହିଁ ଭଲେ ।
କି ହେତୁ ଆସିଛ ତୁମ୍ଭେ କହ ଏଲସିନୋରେ ।
ଚାହୁଁ ଯଦି ଶୁଣିବାକୁ ମଦିରା—ମାହାତ୍ମ୍ୟ,
ଅଛି ଅଷ୍ଟାଦଶାଧ୍ୟାୟୀ ବୃହତ ସଂହିତା,
ଅଛନ୍ତି ମଦ୍ୟପ ବହୁ ବିଚକ୍ଷଣ ଏଥି ।

ହୋରା—ଆସିଥିଲି, ଯୁବରାଜ, ଦେଖିବାକୁ ତବ
ପିତାଙ୍କ ଅନ୍ତ୍ୟେଷ୍ଟି ।

ହ୍ୟାମ୍— ନ କର ବିଦ୍ରୂପ ତୁମ୍ଭେ
ସହାଧ୍ୟାୟୀ ମୋତେ । ଆସିଥିଲ ପ୍ରତେ ହୁଏ
ଦେଖିବାକୁ ଜନନୀଙ୍କ ପରିଣୟ ମୋର ।

ହୋରା—ବସ୍ତୁତଃ ଘଟିଲା ତାହା ଅଳ୍ପକାଳ ପରେ ।

ହ୍ୟାମ୍—ହୋରାସିଓ, ଫନ୍ଦି ତାହା ମିତବ୍ୟୟିତାର;
ଅନ୍ତ୍ୟେଷ୍ଟି ସମୟେ ଯେଉଁ ଆହାର୍ଯ୍ୟ ସାମଗ୍ରୀ
ହୋଇଥିଲା ପାକ, ହେଲା ସମାହୃତ ସେହି

ପର୍ଯ୍ୟୁଷିତ ଭୋଜ୍ୟଦ୍ରବ୍ୟ ପରଶନ୍ତୁ ଭୋଜ ।
ହାୟ୍ ହୋରେସିଓ ବନ୍ଧୁ ଲଭିଥିଲି ଭଲେ
ଦେଖିବାକୁ ନେତ୍ରେ ମୋର ମର୍ମ ବିଦାରକ
ଏ ବୀଭତ୍ସ ଦୃଶ୍ୟ । ପିତା, ପିତା, ମନେହୁଏ
ଦେଖୁଛି ତାହାଙ୍କୁ ।

ହୋର— କାହିଁ, ପ୍ରଭୁ ?

ହ୍ୟାମ୍— ହୋରେସିଓ
ମାନସ—ନୟନେ

ହୋର— ତାଙ୍କୁ ଦେଖିଥିଲି ଥରେ,
ଥିଲେ ସେ ଉତ୍ତମ ରାଜା

ହ୍ୟାମ୍— ନରୋତ୍ତମ ନର—
କୁଳେ ଥିଲେ ନରବର, ସର୍ବ-ଗୁଣାନ୍ୱିତ
ସେଭଳି ପୁରୁଷ ନେତ୍ର ନ ଦେଖିବ ଆଉ ।

ହୋର—ମନେହୁଏ ଦେଖିଥିଲି ତାଙ୍କୁ ଗତରାତ୍ରେ ।

ହ୍ୟାମ୍—ଦେଖିଲ କାହାକୁ ?

ହୋର— ପିତାଙ୍କୁ ତୁମ୍ଭର, ପ୍ରଭୁ !

ହ୍ୟାମ୍—ପିତାଙ୍କୁ ମୋହର ?

ହୋର— ସମ୍ବର ବିସ୍ମୟ କ୍ଷଣେ
ଶୁଣ ଅବହିତେ, କହିବ ତୁମ୍ଭଙ୍କୁ ଏବେ
ଦେଖିଛି ବିସ୍ମୟକର ଯେ ଅଦ୍ଭୁତ ଦୃଶ୍ୟ,
ସାକ୍ଷୀ ତାର ବେନି ବନ୍ଧୁ ବିଦ୍ୟମାନ ଏଥି ।

ହ୍ୟାମ୍—କହ ମୋତେ, ଉଦ୍‌ବିଗ୍ନ ମୁଁ ଶୁଣିବାକୁ ଏହା !

ହୋରା—କ୍ରମାଗତ ଦୁଇରାତି ନିଶୀଥ ସମୟେ,
ବିଶ୍ୱ ଚରାଚର ଯେବେ ଥିଲା ନିଦ୍ରାମଗ୍ନ
ସ୍ତବ୍ଧ ବସୁନ୍ଧରା; ବାର୍ଣ୍ଣାର୍ଡୋ, ମାର୍ସାଲେସ୍ ଏହି
ଦୁଇ ଭଦ୍ରବ୍ୟକ୍ତି ଯେବେ ଥିଲେ ପହରାରେ
ଦେଖିଲେ ସେ ଏହିଭାବେ ଅପୂର୍ବ ଏ ଦୃଶ୍ୟ;
ଛାୟାମୂର୍ତ୍ତି ଏକ ପିତାଙ୍କ ସଦୃଶ ତବ
ଆପାଦମସ୍ତକ ହୋଇ କଞ୍ଚୁକେ ଆବୃତ
ହେଲା ଆବିର୍ଭୂତ ସମ୍ମୁଖେ ତାଙ୍କର ତହୁଁ
ଧୀର ପଦକ୍ଷେପେ, ମାତଙ୍ଗ ଗତିରେ ଗଲା
ତାଙ୍କ ପାର୍ଶ୍ୱଦେଇ, ତିନିବାର ସେ ଏହିଭାବେ
କଲା ବିଚରଣ ଅତି ନିକଟେ ତାଙ୍କର,
ବିସ୍ମିତ ନୟନେ ସେହି ହୋଇ ଜଡ଼ୀଭୂତ
ରହିଲେ ଅନାଇ ତ୍ରାସେ ସେହି ମୂର୍ତ୍ତି ପ୍ରତି,
ପ୍ରବଳ ଲକ୍ଷେଁ ତାଙ୍କ ବିନ୍ଦୁ ବିନ୍ଦୁ ହୋଇ
ସ୍ୱେଦବାରି, ଡରେ ବାକ୍ୟ ନ ସ୍ଫୁରିଲା ମୁଖୁଁ
ଦେଲେ ସେ ଏ ବାର୍ତ୍ତା ମୋତେ ଅତି ସଙ୍ଗୋପନେ
ବ୍ୟାକୁଳ ଚିତ୍ତେ, ତାଙ୍କର ଗହଣେ ତହୁଁ
ରହିଲି ଉନ୍ନିଦ୍ର ମୁହିଁ ତୃତୀୟ ରଜନୀ,
ହେଲା ଆବିର୍ଭୂତ ତହିଁ ନିରୂପିତ କାଳେ
ସେହି ବେଶେ ସେହି ଭାବେ ସେହି ଛାୟାମୂର୍ତ୍ତି,
ଦେଖିଛି ମୁଁ ଜନକଙ୍କୁ ତବ, ନାହିଁ କିଛି
ତାରତମ୍ୟ ବେନିମୂର୍ତ୍ତି ମଧ୍ୟେ, ଅଭିନ୍ନ ଏ
ବାହୁଦ୍ୱୟ ଯଥା ।

ହ୍ୟାମ୍—                    କାହିଁ ଦେଖିଲ ସେ ମୂର୍ତ୍ତି ?
ହୋରେ—ଥିଲୁଁ ଯହିଁ ପହରାରେ ସେହି ମଞ୍ଚେ, ପ୍ରଭୁ ।
ହ୍ୟାମ୍—ତାଙ୍କୁ ପୁଛିଲ କି କହ ?
ହୋରେ—                    ପୁଛି ଥିଲି, ପ୍ରଭୁ,
ନ ଦେଲା ଉତ୍ତର, ତଥାପି ହୋଇଲା ପ୍ରତେ
ଟେକିଲା ତା ମସ୍ତକ ଯେହ୍ନେ ହେଲା ଅଗ୍ରସର
ସମ୍ଭାଷଣ ଅର୍ଥେ, ସେହିକାଳେ ଡାକିଲା ଯହିଁ
ପ୍ରଭାତସ୍ୱରେ ତାମ୍ରଶିଖୀ ପ୍ରଭାତ-ଜଗର
ଦ୍ରୁତେ ଲୁଚିଗଲା ଖରେ ଶୁଣି ତାର ରବ,
ହେଲା ସେ ଅଦୃଶ୍ୟ ।
ହ୍ୟାମ୍—                    ଅତୀବ ଅଦ୍ଭୁତ ଏହା ।
ହୋରେ—ଯୁବରାଜ, ସତ୍ୟ ଏହା ଅକ୍ଷରେ ଅକ୍ଷରେ ।
ଜଣାଇବା ଏ ସମ୍ବାଦ ତୁମ୍ଭଙ୍କୁ ଅଚିରେ
ମଣିଲୁଁ ଉଚିତ ।
ହ୍ୟାମ୍—                    ନିଶ୍ଚୟ, ନିଶ୍ଚୟ, ବନ୍ଧୋ,
ମାତ୍ର ଚିତ୍ତ ମୋର ହେଉଛି ଅସ୍ଥିର । ଦେବ
କି ପହରା ଅଦ୍ୟ ରଜନୀରେ ?
ମାର୍ସେ } —
ବାର୍ଣ୍ଣା }                    ଦେବୁଁ, ପ୍ରଭୁ ।
ହ୍ୟାମ୍—ବର୍ମାବୃତ କହିଲ ନା ?
ମାର୍ସେ } —
ବାର୍ଣ୍ଣା }                    ବର୍ମାବୃତ, ପ୍ରଭୁ ।

ହ୍ୟାମ୍—ଆପାଦମସ୍ତକ ?

ମାର୍ସେ }
ବାର୍ଣ୍ଣୋ } — ପ୍ରଭୁ, ଆପାଦମସ୍ତକ ।

ହ୍ୟାମ୍—ଦେଖିନାହଁ ତେବେ ତୁମ୍ଭେ ବଦନ ତାହାର ?

ହୋର୍—ଦେଖିଅଛୁଁ, ପ୍ରଭୁ, ଥିଲା ମୁଖ ଅନାବୃତ ।

ହ୍ୟାମ୍—ଥିଲା କି କୁଞ୍ଚିତ ମୁଖ ଅମର୍ଷ-ବ୍ୟଞ୍ଜକ ?

ହୋର୍—ହେଲା ପ୍ରତେ ଥିଲା ମୁଖ ଦୁଃଖଭରାକ୍ରାନ୍ତ ।

ହ୍ୟାମ୍—ପାଣ୍ଡୁର, ଆରକ୍ତ ଅବା ?

ହୋର୍— ଅତୀବ ପାଣ୍ଡୁର ।

ହ୍ୟାମ୍—ଅନାଇଲା ତୁମ୍ଭ ପ୍ରତି ?

ହୋର୍— ଅପଲକ ନେତ୍ରେ ।

ହ୍ୟାମ୍—ଅହୋ, ଥାଆନ୍ତି ସେ ଠାବେ ଯଦି !

ହୋର୍— ଦେଖି ତାହା
ହୁଅନ୍ତ ବିସ୍ମିତ ଅତି ।

ହ୍ୟାମ୍— ସମ୍ଭବତଃ । ଥିଲା
କି ସେ ବହୁକ୍ଷଣ ?

ହୋର୍— ଗଣିବାକୁ ଧୀରେ ଶତ
ଲାଗେ ଯେତେକ୍ଷଣ ।

ମାର୍ସେ }
ବାର୍ଣ୍ଣୋ } — ତହୁଁ ବେଶି, ତହୁଁ ବେଶି ।

ହୋର୍—ନୁହେଁ ତହୁଁ ବେଶିକ୍ଷଣ ଦେଖିଲି ମୁଁ ଯେବେ ।

ହ୍ୟାମ୍—ଶ୍ମଶ୍ରୁ ଶୁକ୍ଳ-ବର୍ଣ୍ଣ ଥିଲା କି ତାହାର—ନୁହେଁ ?

ହୋର—କୃଷ୍ଣ ଶୁକ୍ଳ ମିଶାମିଶି ଦେଖିଥିଲି ଯଥା
ତାଙ୍କ ଜୀବିତ କାଳରେ ।
ହ୍ୟାମ୍—                                        ରହିବି ଜନିଦ୍ର
ଅଦ୍ୟ ରଜନୀରେ; ସମ୍ଭବତଃ କରିବ ସେ
ବିଚରଣ ପୁଣି ।
ହୋର—                                        ଅସିବ ନିଶ୍ଚୟ ସେହି ।
ହ୍ୟାମ୍—ଅସେ ଯଦି ଧରି ମୋର ପିତାଙ୍କ ମୂରତି,
କରିବି ନିଶ୍ଚିତ ମୁହିଁ ଅଳାପ ତା' ସଙ୍ଗେ,
କଲେହେଁ ନିଷେଧ ଅସି ପ୍ରେତପତି ଅପେ ।
କରୁଛି ମିନତି ମୁହିଁ ସଗୋପନେ ଯେତେବେ
ରଖିଛ ଦେଖିଛ ଯାହା ନ କହି କାହାକୁ
ରଖିଥାଅ ସେହି ଭାବେ, ଘଟିବ ଯା ଅଛି.
ପୁଣି ନ କରି ପ୍ରକାଶ ରଖିବ ମନରେ
ଦେବି, ବନ୍ଧୋ ! ପ୍ରୀତିର ଏ ପ୍ରତିଦାନ ଦିନେ ।
ଦେଉଛି ମେଲାଣି, ଭେଟିବି ପହରା-ମଞ୍ଚେ
ରାତି ଏକାଦଶ ଦ୍ୱାଦଶ ଘଟିକା ମଧ୍ୟେ ।
ସମସ୍ତେ—ଅବଦ୍ଧ କର୍ତ୍ତବ୍ୟ-ପାଶେ ଅଛୁଁ ଯୁବରାଜ ।
ହ୍ୟାମ୍—କର ହେ ଅବଦ୍ଧ ତୁ-ମ୍ଭ ପ୍ରୀତି-ପାଶେ ମୋତେ,
ଦେଉଛି ମେଲାଣି ।
( ହ୍ୟାମ୍‌ଲେଟ୍ ବ୍ୟତୀତ ଅନ୍ୟ ସମସ୍ତଙ୍କର ପ୍ରସ୍ଥାନ )
ପିତାଙ୍କର ପ୍ରେତମୂର୍ତ୍ତି
କଞ୍ଚୁକେ ଅବୃତ ହୋଇ କରେ ବିଚରଣ ।

ଅଶୁଭ ଅଶଙ୍କା ଚଢ଼େ ହୃଏ ଜାତ ମୋର
ପ୍ରତେ ହୃଏ ତାଙ୍କ ପ୍ରତି କରିଛି ଅନ୍ୟାୟ
କେହୁ, ଅସନ୍ତ୍ରା ରଜନୀ ଯଦ ! ତଦବଧି
ଚିତ୍ତ ରହ ଶାନ୍ତ ଭାବେ; ନ ହୃଅ ଅକୁଳ,
ସୃଷ୍ଟିଗର୍ଭ ଧର୍ମଚକ୍ର ଘୂରଇ ପବନେ,
ଅପକର୍ମ ପଙ୍କେ ଧର ନ ରହେ ଗୋପନେ ।

( ପ୍ରସ୍ଥାନ )



## ତୃତୀୟ ଦୃଶ୍ୟ

[ ପଲୋନିଅସ୍‌ର ଗୃହର ଗୋଟିଏ ପ୍ରକୋଷ୍ଠ । ]

( ଲର୍ଟିସ୍ ଓ ଓଫିଲିଅର ପ୍ରବେଶ )

ଲର୍ଟିସ୍—ପୋତେ ବ୍ୟବହାର୍ଯ୍ୟ ପାଥେୟ ଦ୍ରବ୍ୟାଦ ମୋର
ହୋଇଛି ରକ୍ଷିତ, ଭଗ୍ନି, ଦେଉଛି ମେଲାଣି,
ଅନୁକୂଳ ବାୟୁମୁଖେ ମେଲି ପକ୍ଷ ତାର,
କରିବ ଯେ କାଳେ ଯାତ୍ରା ଗରୁତ୍ମତୀ ତରି, (୧)
ଆଳସ୍ୟ ବରଜି ଦେବ ସମ୍ବାଦ ତୁମ୍ଭର ।

ଓଫି—ଅଛି କି ସନ୍ଦେହ ତହିଁ ?

ଲର୍ଟିସ୍— ହ୍ୟାମଲେଟ୍ ସମ୍ବନ୍ଧେ
କିଛି କହିବ ମୁଁ ଏବେ, ଦେଖ ଭଗ୍ନି, ଶୁଣି
ଗୃହ୍ଣ ବାଣୀ ତାର ତୁମ୍ଭେ ନ ଭୁଲିବ କେବେ,

---

( ୧ ) ଗରୁତ୍—ପାଲ ।

ଜାଣ ଭଲେ ମାତ୍ର ତାହା କ୍ଷଣିକ ଉଚ୍ଛ୍ୱାସ
ନବ ଯୌବନର, ନୁହେଁ ଦୀର୍ଘ କାଳ ସ୍ଥାୟୀ;
ବସନ୍ତ ରଙ୍ଗିଣୀ ଧରା ନବ ମାଳକାରୀ
ବସନ୍ତ ଆଗମେ ଯଥା କ୍ଷଣ କାଳ ପାଇଁ
ଫୁଟି ଉଠେ କାନ୍ତ ଛଟା ଚହଟେ ସୁବାସ,
ଜାଣ ତେସନ ଏ ଭାବ ।

ଓଫ—                    ନୁହେଁ ଅନ୍ୟ କିଛି ?

ଇନ୍ଦ୍ରଂସ—ନ ଦେଖେ ତା ଅନ୍ୟଭାବେ, ଜାଣ ହେ ଭଗିନି,
ତରୁଣ ପ୍ରକୃତି ନ ଲଭେ ବିକାଶ ମାତ୍ର
ବଳେ, ଆୟତନେ, ଶରୀରର ବୃଦ୍ଧି ସଙ୍ଗେ
ମନୋବୃତ୍ତିଚୟ ପୁଣି ହୁଏ ଉନ୍ମେଷିତ ।
ହୋଇପାରେ ସ୍ନେହ ତାର ଭ୍ରମ୍ର ପ୍ରତି ଏବେ,
ସରଳ, ବିମଳ, ସ୍ୱଚ୍ଛ, ସ୍ୱାର୍ଥଲେଶ-ଶୂନ୍ୟ,
ମାତ୍ର ଯେଣୁ ଉଚ୍ଚାସନେ ସମାସୀନ ସେହୁ,
ନାହିଁ ମନୋରଥ-ରଜ୍ଜୁ ନିଜ ହସ୍ତେ ତାର,
ଅଭିଜାତ୍ୟ-ନିଷାଦୀ ତା' ଚିତ୍ତ-ଗଜ ଶିରେ (୧)
ଧରିଛି ଅଙ୍କୁଶ, ନାହିଁ ତାର ଇଚ୍ଛାଗତି
ବନ୍ୟ-ହସ୍ତୀ ସମ ନ ପାରେ ସେ ଯହିଁ ତହିଁ,
କରି ବିଚରଣ, ଇତର ଜନ ସଦୃଶ
ନ ପାରେ ଖନିତ୍ର ହସ୍ତେ ଖୋଳି ନିଜ ମାର୍ଗ,
ରାଜ୍ୟର ସୁଖ ସମ୍ପଦ ଅଭିରୁଚି-ସ୍ତମ୍ଭେ
ତାର ରହିଛି ସ୍ଥାପିତ କର୍ଣ୍ଣଧାର ସେହୁ

(୧) ନିଷାଦୀ-ମାହୁନ୍ତ ।

ବିଶାଳ ଏ ସାମ୍ରାଜ୍ୟର ଜନମତ ତେଣୁ
ରଖିଛି ସୁଦୃଢ଼େ ବାନ୍ଧି ଇଚ୍ଛାଶକ୍ତି ତାର ।
ଭାବି ଦେଖ ମନେ, କହେ ସେ ତୁମ୍ଭଙ୍କୁ ଯେବେ
ବସାଇବ ନେଇ ତାର ହୃଦୟ ଆସନେ,
ଡେନାମାର—ପ୍ରଜାପୁଞ୍ଜ ନ ଦେଲେ ସମ୍ମତି
ହେବ କି ଗୋ ପୂର୍ଣ୍ଣ କେବେ ମନୋରଥ ତାର ?

ତା’ ପ୍ରେମ-ମୁରଲୀ ତାନ ଶୁଣି ମୁଗ୍ଧ କର୍ଣ୍ଣେ,
କର ଯେବେ ତୁମ୍ଭେ ତାକୁ ହୃଦୟ ଅର୍ପଣ
ଅବା ପ୍ରେମ-ପୂର୍ଣ୍ଣ ତାର କାତର ଉଚ୍ଛ୍ୱାସେ
ହୋଇ ବିଗଳିତ ସତୀତ୍ୱ-ରତନ-ପେଡ଼ି

ଫେଡ଼ି ତାକୁ ଅକାତରେ କର ସମର୍ପଣ
ଭାବି ଦେଖ ଚିତ୍ତେ କିଭାବେ ମର୍ଯ୍ୟାଦା ତବ
ହୋଇବ ଲାଘବ । ହେ ପ୍ରିୟ ଭଗିନୀ ତେଣୁ
ହୁଅ ସାବଧାନ, ପ୍ରୀତିର ବନ୍ଧୁର-ପଥେ
ନ ହୁଅ ଧାବିତ, ନ କର ଜଡ଼ିତ ତୁମ୍ଭେ
ଆପଣାକୁ, ଓଫିଲିଆ, ସେ ବିଷମ ଫାନ୍ଦେ,
ତେଜ ମନୁ ସେ ବାସନା ରହ ଦୂରେ ଯେତେ
ହେବ ମନୋଜର ବ୍ୟର୍ଥ ଅବ୍ୟର୍ଥ ସନ୍ଧାନ ।
ଯେଉଁ ବ୍ରୀଡ଼ାବତୀ ବାଳା ବସି ନିକାଞ୍ଚନେ
ଦେଖାଏ କୌତୁକେ ତାର ସୌନ୍ଦର୍ଯ୍ୟ-ସମ୍ପଦ,
ନିଷ୍କଳଙ୍କ-ଚନ୍ଦ୍ର-କରେ ହୁଏ କଳଙ୍କିନୀ,
ନିନ୍ଦାର କବଳୁଁ ନାହିଁ ନିସ୍ତୃତି କାହାର,

ଅପେ ସତୀଦେବୀ ସଦା ସନ୍ତ୍ରସ୍ତା ତା'ଭୟେ,
ବସନ୍ତର ନବଜାତ କୁସୁମ-କୋରକ
କୀଟଦଷ୍ଟ ହୋଇ ପଡ଼େ ନ ଫୁଟୁଣୁ କେତେ
ମଉଳି ଅକାଳେ, ଯୌବନ-କଳିକା ତଥା
ଦୋହଲେ ସବେଗେ ଯେବେ ଅବଗାହ ତନୁ
ପ୍ରଭୃତ ଶିଶିରେ, ବହୁ ବାତ୍ୟା ଅଚମ୍ବିତେ
ହରି ନଏ ମନୋହାରୀ ସେ ସୁଷମା ତାର ।
ରହ ଗୋ ସତର୍କ ତେଣୁ; ଭୟ ଯହିଁ ଜୟ
ତହିଁ ରଖିଥାଅ ମନେ; ବିଷମ ଯୌବନେ
ରିପୁ-ବର୍ଗ ନିଜ ତେଜେ ହୋଇ ଉତ୍ତେଜିତ
ହୃଦୟ-ଶାସନ କାଟି ଘଟାନ୍ତି ବିପ୍ଳବ ।

ଓଫି— ରଖିବି ମୁଁ ଏହି ନୀତି-ଉପଦେଶ ତବ
ହୃଦୟର ପ୍ରହରୀ ସ୍ୱରୂପ; କିନ୍ତୁ ଭ୍ରାତ,
ଅଧର୍ମୀ, କୁପଥଗାମୀ ଧର୍ମଯାଜୀ ସମ
ଦୁର୍ଗମ କଣ୍ଟକମୟ ତୁଙ୍ଗ ଧର୍ମମାର୍ଗ
ପ୍ରଦର୍ଶାଇ ମୋତେ ନ କର ଭ୍ରମଣ ଆପେ
ଅସଂଯତ, ପାପାସକ୍ତ ଲମ୍ପଟ ସଦୃଶ
ମାତି କାମ-ମଦେ ପୁଷ୍ପ-ବିକୀରିତ ପଥେ
ପାସୋର ପ୍ରମତ୍ତ ସମ ନିଜ ଉପଦେଶ ।

ଲର୍ଟିସ୍—ନ ଭୂଲ ମୋ ପାଇଁ, ଭଗ୍ନି, ହେଉଛି ବିଳମ୍ବ;
ଆସୁଛନ୍ତି ଏଇ ଦେଖ ଜନକ ମୋହର ।

(ପଲୋନିଅସ୍‌ର ପ୍ରବେଶ)

ଦ୍ୱିଗୁଣ ଆଶିଷ କରେ ସୁଖ ଦ୍ୱିଗୁଣିତ,
ଦୈବକ୍ରମେ ଲଭିଲି ଏ ଦରଶନ ପୁଣି ।
ପଲୋ—ଅଦ୍ୟାପି ରହିଛ ଏଥି ! ଛି, ଛି, ହେ ଲର୍ଟିସ୍,
ଯାଅ ଶୀଘ୍ର କର ତୁମ୍ଭ ତରୀ ଆରୋହଣ
ଅବନତ ବାୟୁ ଭରେ ପାଲ-ଅଂଶ-ଦେଶ
ସହଚର ବୃନ୍ଦ ପୁଣି ରହିଛନ୍ତି ଚାହିଁ ।
ଘେନ ମୋ ଆଶିଷ, ରଖ ସ୍ମୃତି ପଟେ ଲେଖି
ବିଶଦ ଅକ୍ଷରେ ଏହି ନୀତି ବାକ୍ୟ ମୋର ।
ନ କର ପ୍ରକାଶ ତବ ମନୋଗତ ଭାବ
ଅସଂଯତ ଚିନ୍ତା ନ କର କଦାପି ତୁମ୍ଭେ
କାର୍ଯ୍ୟେ ପରିଣତ । ଦେଖାଅ ଘନିଷ୍ଠ ଭାବ
ପରିଚିତ ଜନେ, କିନ୍ତୁ ଭାବେ ସଦାଳାପ
କର ତାଙ୍କ ସଙ୍ଗ, ମାତ୍ର ଅଶ୍ଳୀଳତା ଦୋଷେ
ନ କର ଦୂଷିତ କେବେ ସ୍ୱଭାବ ତୁମ୍ଭର ।
ବିପଦ-ନିକଷେ କଷି ବନ୍ଧୁଗଣେ ତବ,
ସ୍ନେହର ଶୃଙ୍ଖଳେ ବାନ୍ଧି ରଖ ଦୃଢ଼ଭାବେ
ପ୍ରାଣର ଦୋସର ରୂପେ; ଅର୍ବାଚୀନ ଯାର
ବୈଷୟିକ ଜ୍ଞାନ ମାତ୍ର ସଦ୍ୟ ମୁକୁଳିତ
ନାହିଁ ଯାର ଭଲ ମନ୍ଦ ବିଚାର ଶକତି
ତାଦୃଶ ଅର୍ଭକ ସଙ୍ଗ ମିଶି ଯହିଁ ତହିଁ, (୧)
ନ କର ନିସ୍ତେଜ ତୀକ୍ଷ୍ଣବୁଦ୍ଧି ବୃତ୍ତି ତବ ।

(୧) ଅର୍ଭକ—ଅଜ୍ଞ ।

ଦେଖ, ନ ବଳାଅ କେବେ କଳହେ ବାସନା,
ମାତ୍ର ଯଦି ଦୈବବଶେ ଘଟେ ବିସମ୍ବାଦ
ଦିଅ ପ୍ରତିପକ୍ଷ ଜନେ ଶିକ୍ଷା ସମୁଚିତ,
ନ ହେବ ବିବାଦେ ଯେମନ୍ତେ ପ୍ରୟାସୀ ସେ ଅଜ ।
ଦେନ ଶ୍ରୁତିପଥେ ସଦା ଅନ୍ୟର ବଚନ
ଅବହିତ ଚିତ୍ତେ, ନ ବିସ୍ତର ନିଜ ବାକ୍ୟ
ନ କର ପ୍ରଦାନ, ଲୋକମତ ଅକୁଣ୍ଠିତେ
କର ଆହରଣ, ନ ଦିଅ ସହସା କିନ୍ତୁ
ଧୀର ଚିତ୍ତେ ନ ବିସ୍ତର ମନ୍ତବ୍ୟ ତୁମ୍ଭର ।

ହେଉ ଶକ୍ତି ଅନୁଯାୟୀ ମୂଲ୍ୟବାନ ତବ
ବେଶ ପରିଚ୍ଛଦ, ମାତ୍ର ବୃଥା ବୈଚିତ୍ର୍ୟେ
ନ କରୁ ପ୍ରକାଶ ତବ ବିଳାସିତା ତାହା,
ଯାହାର ଯା ରୀତି ଯେଣୁ ପରିଚ୍ଛଦୁଁ ତାର
ବହୁସ୍ଥଳେ ହୁଅଇ ସୂଚିତ, ଜାଣ ପୁଣି
ଅଛନ୍ତି ଫରାସୀ ଦେଶେ ଗଣ୍ୟ, ମାନ୍ୟ ଯେତେ
ଉଚ୍ଚବଂଶ ସମୁଦ୍ଭୂତ କୁଳୀନ ସମ୍ଭ୍ରାନ୍ତ,
ସୁରୁଚିସମ୍ପନ୍ନ ସର୍ବେ, ସମଧିକ ଦୃଷ୍ଟି
ବେଶ ପରିପାଟୀ ପ୍ରତି ଅଛି ତାହାଙ୍କର ।

ନ ଦିଅ କାହାକୁ ଋଣ, ନୁହିଁ ଅପେ ଋଣୀ,
ଘଟେ ଯେଣୁ ଋଣଦାନେ ଅର୍ଥ ନାଶ, ବନ୍ଧୁ
ମଧ୍ୟେ ବିରୋଧ ସର୍ବଥା, ଗ୍ରହଣେ ତା' ପୁଣି
ଶାଣୁଧାର ହୁଏ ସ୍ଥୂଳ ମିତବ୍ୟୟିତାର ।

ସର୍ବୋପରି ସ୍ମୃତିପଟେ ଲେଖି ସ୍ୱର୍ଣ୍ଣାକ୍ଷରେ
ରଖ ଏହି ସାରବାକ୍ୟଃ ନ କର କଦାପି
ଆପଣାକୁ ପ୍ରବଞ୍ଚିତ, ହୁଅ ସତ୍ୟନିଷ୍ଠ,
କର ଗତି ସତ୍ୟପଥେ ଦେଖିବ କିଣ୍ଠସ୍ୱ,
ହେବ ମଧୁମୟ ତବ ଅନ୍ତର, ବାହାର,
ଅନ୍ୟଠାରେ ଅବିଶ୍ୱାସୀ ନ ହୋଇବ କେବେ ।
ଦେଉଛି ମେଲାଣି, ନେଇ ଆଶୀର୍ବାଦ, ରଖ
ସ୍ମୃତି-ସୂତ୍ରେ ଗୁନ୍ଥି ଏହି ନୀତି-ରତ୍ନ-ମାଳା ।
ଲାର୍ଟିସ୍—ନେଉଛି ବିଦାୟ, ପିତଃ, ସବିନୟେ ମୁହିଁ ।
ପଲୋ—କାଳ ଅନୁକୂଳ ଏବେ, ଯାଅ, ଭୃତ୍ୟଗଣ
ରହିଛନ୍ତି ଗୃହିଁ ।
ଲାର୍ଟିସ୍—ଦେଉଛି ମେଲାଣି, ଭଗ୍ନି,
କହିଲି ତୁମ୍ଭଙ୍କୁ ଯାହା ରଖିଥିବ ମନେ ।
ଓଫି—ସ୍ମୃତି-କକ୍ଷେ ତାଲା କରି ରଖିଛି ମୁଁ ତାହା,
ଥାଉ ତୁମ୍ଭ ପାଶେ, ଭ୍ରାତଃ ସେ କକ୍ଷ-କୁଞ୍ଚିକା ।
ଲାର୍ଟିସ୍—ଦେଉଛି ମେଲାଣି ।

(ପ୍ରସ୍ଥାନ)

ପଲୋ—ଓଫେଲିଅ, କହିଛି ସେ
କି କଥା ତୁମ୍ଭଙ୍କୁ ?
ଓଫି—କିଛି ହ୍ୟାମ୍‌ଲେଟ୍ ସମ୍ବନ୍ଧେ ।
ପଲୋ—ଭଲ କଥା ପକାଇଲ ମନେଃ ଶୁଣିଛି ମୁଁ
ଅବସର କାଟିଲ ସେହି ଆସି ବହୁକ୍ଷଣ

ବସେ ତୁମ୍ଭ ପାଶେ, ତୁମ୍ଭେ ପୁଣି ଇଚ୍ଛାମତେ
ଅକୁଣ୍ଠିତଭାବେ କର ଆଳାପ ତା' ସଙ୍ଗ,
ଲୋକମୁଖୁଁ ଏ ବୃତ୍ତାନ୍ତ କରିଛି ଶ୍ରବଣ
ଯଥାର୍ଥ ଏ କଥା ଯେବେ କହୁଛି ତୁମ୍ଭଙ୍କୁ
ନ ଜାଣ ତନୟା କରି କି ଭଳି ବେଶର
ତୁମ୍ଭ ପକ୍ଷେ ଶୋଭନୀୟ ହେବ ଏ ବୟସେ ।
କହ ଫେଡ଼ି ତୁମ୍ଭ ମଧ୍ୟେ ହୋଇଛି କି କଥା,
ନ କର ଗୋପନ ।

ଓଫି— କହୁଛି ସମ୍ମତ, ପିତଃ,
ବନ୍ଧୁ ପ୍ରୀତି ନିଦର୍ଶନ ଅର୍ପଣ ସେ ମୋତେ ।

ପଲୋ—ପ୍ରୀତି ! ଦୁର୍ଗମ ସେ ପଥ; ସରଳା ବାଳିକା
ତୁମ୍ଭେ ନ ଜାଣ ତ ତହିଁ ଅଛି କି ବିପଦ ।
ମଣୁଛ କି ସତ ତାର ପ୍ରଣୟ-ପ୍ରସ୍ତାବ ?

ଓଫ—ଜାଣେ ନା ମୁଁ କି ଭାବେ ତା କରିବ ଗ୍ରହଣ ।

ପଲୋ—ତେବେ କହୁଛି ତୁମ୍ଭଙ୍କୁ; କ୍ଷୁଦ୍ର ଶିଶୁପରି
ଶ୍ୟାମ୍ପିକାକୁ କରିଛ ଗ୍ରହଣ ଭାବି ଗୁରୁ (୧)
ଚାମୀକର ! ତୁଚ୍ଛ ନିଜ ମର୍ଯ୍ୟାଦାର ମୂଲ୍ୟ (୨)
ଚଳ ସେହିଭାବେ, ନତୁବା ଏ ରୀତି ତବ
ଦେବ ପିତା ନିନ୍ଦା ମୋତେ ଜନ ସମାଜରେ ।

ଓଫି°— କରିଛି ସେ ପ୍ରଣୟ-ପ୍ରସ୍ତାବ ଭଦ୍ରୋଚିତ
ଗିରେ ।

---

(୧) ଶ୍ୟାମ୍ପିକା—ଭେଜାଲ ।
(୨) ଚାମୀକର—ସ୍ୱର୍ଣ୍ଣ ।

ପଲୋ— ଜାଣ ତାହା ମାତ୍ର, ପ୍ରବଞ୍ଚନା ପୂର୍ଣ୍ଣ ।
ଓଫି—ଧର୍ମସାକ୍ଷୀ କରି ସେହୁ ଦେଇଛନ୍ତି ଶପଥ ।
ପଲୋ—ବସାଇଛନ୍ତି ଜାଲ ଧରିବାକୁ ଧୂର୍ତ୍ତ ସେହୁ
ଚଟୁଳା ସଫରୀ । ଜାଣେ ମୁହିଁ ହୁଏ ଯେବେ
କାମର ପ୍ରଖର ତାପେ ଉତ୍ତପ୍ତ ଶୋଣିତ,
ଉଚ୍ଛୁଳି ପଡ଼ଇ ପ୍ରେମ, ରସନାର ପଥେ
କେତେ ଶପଥର ଧାରା, ଜାଣ ଲୋ ତନୟା
କାମାଗ୍ନି-ସମ୍ଭବା-ବହ୍ନି ଝଲସାଇ ଚକ୍ଷୁ
ମୁହୂର୍ତ୍ତିକେ ହୁଏ ପୁଣି ଅନ୍ତର୍ହିତ ତାହା
ନ ମଣ ତାହାକୁ ତୁମ୍ଭେ ନୟନ-ରଞ୍ଜିନୀ
ସ୍ନିଗ୍ଧ ଦୀପ ଶିଖା । ନବସ୍ତ ତରୁଣୀ ତୁମ୍ଭେ (୧)
ଆପଣା ମହତ୍ତ୍ୱ ବୁଝି ରହ ସଦାଦୂରେ,
ନ କର ଗ୍ରହଣ ଅଙ୍କଠାରୁ ତାର ପ୍ରୀତି—
ନିବେଦନ ନିର୍ବିକାରେ, ଅକୁଣ୍ଠିତ ପ୍ରାଣେ,
ନିମନ୍ତ୍ରଣରେ ନ କର ଗ୍ରହଣ ତୁମ୍ଭେ ତାର
ପ୍ରଣୟ ପ୍ରସ୍ତାବ । ଭାବି ଦେଖ ପ୍ରଭୁଷ ସେ
ବୟସେ ନବୀନ, ଚପଳ ତା ମତି, ଗତି
ସ୍ୱଚ୍ଛନ୍ଦ ଅବାଧ, ନୁହେଁ ସୀମାବଦ୍ଧ ଯଥା
ଗତିବିଧି ତବ, କହୁଛନ୍ତି ତୁମ୍ଭଙ୍କୁ ତେଣୁ
ନ କର ବିଶ୍ୱାସ ତାର ଶପଥ ବଚନେ;
ଘଟକର ଅନ୍ତର ବାହାର ଯଥା ନୁହେଁ

(୧) ନବସ୍ତ—କୁମାରୀ ।

ଏକାକାର, ବାକ୍ୟ ସହ କାର୍ଯ୍ୟର ସଂହତ (୧)
ନ ହୁଅଇ ଦୃଷ୍ଟ, ତେସନ ଶପଥ ତାର,
(୨) ମଳମ୍ଳା ଅମ୍ବରେ ବଣୁଦ୍ଧ କାଞ୍ଚନ ଭ୍ରମ (୩)
ହୋଇଛି ତୁମ୍ଭର, ମଣୁଛ ପବନ ଯାହା
ଜାଣ ତାହା ଆବରଣ ଛଳନା ପୂରିତ ।
କହୁଛ ତୁମ୍ଭଙ୍କୁ ଏବେ ସର୍ବଶେଷେ ମୁହିଁ
ସୁସ୍ପଷ୍ଟ ବଚନେ, ଅବସର କାଳ ତବ
ନ କରିବ ଅଛଠାରୁ ବୃଥା ଅପଚୟ
ପ୍ରେମାଳାପେ ହ୍ୟାମ୍‌ଲେଟ୍ ସହିତ, ନ ହୋଇବ
ଅଙ୍ଗୀକାର—ସ୍ନେହେ ପୁଣି ଅବଦ୍ଧ ତା ସହ ।
ଦେଖ, ନ ହେବ ଅନ୍ୟଥା ଯେଜ୍ଞେ ଏ ଅଦେଶ
ମୋର, ଅସ ଯିବ ମୋ ଗହଣେ ।

ଓଫି— ପିତା, ଅଜ୍ଞ

ତବ କରିବ ପାଳନ ।

( ଉଭୟଙ୍କର ପ୍ରସ୍ଥାନ )



(୧) ସଂହତ—ସଂଯୋଗ ।
(୨) ମଳମ୍ଳା—ମୂର୍ତ୍ତିପନ ।
(୩) ଅମ୍ବର—ବସନ ।

# ଚତୁର୍ଥ ଦୃଶ୍ୟ

[ ପହରା ମଞ୍ଚ ]

(ହ୍ୟାମ୍‌ଲେଟ, ହୋରେସିଓ ଓ ମାର୍ସେଲସ୍‌ର ପ୍ରବେଶ)

ହ୍ୟାମ୍—ଅହୋ ! ଅସହ୍ୟ ଏ ବାୟୁ, ତୀବ୍ରଭାବେ ମୋତେ
 କରୁଛ ଦଂଶନ, ପଡ଼ୁଛି କଠୋର ଶୀତ ।

ହୋରେ—ତୀକ୍ଷ୍ଣ ଛୁରୀ ସମ ଦେହେ ଯାଉଛି ତା' ଗଳି ।

ହ୍ୟାମ୍—ହୋଇଛି ସମୟ କେତେ ?

ହୋରେ— ମନେ ହୁଏ ବାଜି
 ନାହିଁ ଦ୍ୱାଦଶ ଘଟିକା ।

ମାର୍ସେ— ନାହିଁ, ବାଜିଲାଣି ।

ହୋରେ—ସତେ ? ଶୁଣିନାହିଁ ମୁହିଁ, ଆସିଲା ସମୟ,
 ଏକାଳେ ସେ ପ୍ରେତମୂର୍ତ୍ତି କରେ ବିଚରଣ ।

(ଅନ୍ତରାଳରେ ଦୁନ୍ଦୁଭି ଓ ତୋପଧ୍ୱନି )

 କି ହେତୁ ଏ ଶବ୍ଦ, ପ୍ରଭୁ ?

ହ୍ୟାମ୍— ରହି—ଜାଗରେ
 କରୁଛନ୍ତି ନୃପବର ବାରୁଣୀ ସେବନ,
 ପୁଣି ସ୍ୱାସ୍ଥ୍ୟ ମୋର, ଖେଳୁଛି ତାଣ୍ଡବ ଲୀଳା,
 ବାଜୁଛି ବିଜୟ ସ୍ୱନେ ପଟହ, ଦୁନ୍ଦୁଭି
 ସୁରାପାନ କାଳେ ।

ହୋରେ— ଅଛି କିଏ ରୀତି ଏଥି ?

ହ୍ୟାମ୍—ଅଛି: ଜନ୍ମ ମୋର ଏହି ଦେଶେ, ବାଲ୍ୟାବଧି
 ମୁହିଁ ଦେଖୁଛି ଏ ପ୍ରଥା; କିନ୍ତୁ ଜାଣ, ବନ୍ଧୋ,

ଅମ୍ଭ ଜାତି ପକ୍ଷେ ଅତି ଦୂଷଣୀୟ ଏହା,
ଅଛନ୍ତି ପଡ଼ାଚ୍ୟ, ପ୍ରାଚ୍ୟ ସଭ୍ୟ ଜାତି ଯେତେ,
କରନ୍ତି ଅମ୍ଭଙ୍କୁ ନିନ୍ଦା ସରବେ ସତତ
ଏହି ପାନୋତ୍ସବ ହେତୁ; କହନ୍ତି ମଦ୍ୟପ
ଦେଇଛନ୍ତି ଅମ୍ଭଙ୍କୁ ସେ ମଦାର ପଦବୀ,(୧)
ବସ୍ତୁତଃ ହେ ବନ୍ଧୋ, ଏହି କୀର୍ତ୍ତିନାଶା ଜଳେ, (୨)
କୀର୍ତ୍ତିଚୟ ତୃଣସମ ଯାଉଅଛି ଭସି,
ଶୌର୍ଯ୍ୟ, ବୀର୍ଯ୍ୟ, ଅଟେ ଯାହା ଜାତୀୟ ଭୂଷଣ
ହେଉଛି ମଳିନ ସିନା ସେ ସଲିଳ ସ୍ପର୍ଶେ ।
ଯଥା ଜାତି ପକ୍ଷେ ତଥା ବ୍ୟକ୍ତି ଭାବେ ପୁଣି
ହୁଏ ଦୃଷ୍ଟ ବହୁସ୍ଥଳେ ସ୍ୱଭାବଜ ଦୋଷେ,
ଲଭଇ ମାନବ ନିନ୍ଦା ଜନ ସମାଜରେ,
ଜନ୍ମଗତ ଦୋଷେ ନୁହେଁ ସ୍ୱୋପାର୍ଜ୍ଜିତ ଯାହା
ନାହିଁ ଯଥାର୍ଥତଃ ଯହିଁ କର୍ତ୍ତୃତ୍ୱ ତାହାର
ପ୍ରକୃତି ପିଧାନେ ତାର ଢାଙ୍କିଦଏ ଯେଣୁ, (୩)
ଅବା ଧାତୁ ଗୁଣେ ବାତ, ପିତ୍ତ, ଶୋଣିତାଦି
ପ୍ରାବଲ୍ୟ ଜନିତ ଘଟେ ଯଦି ବେଳେ ବେଳେ
ବଗ୍ଭର ମୂଢ଼ତା, ମଧୁର ଅଗ୍ଭର ଅବା
ହୁଏ କଳୁଷିତ, ସେହି ଏକମାତ୍ର ଦୋଷେ

---

(୧) ମଦାର—ଶୂକର ।
(୨) କୀର୍ତ୍ତିନାଶା—ଯାହା କୀର୍ତ୍ତି ନାଶ କରେ ।
(୩) ପିଧାନ—ଆବରଣ ।

( ହେଲେହେଁ ପ୍ରକୃତ ଅବା ଗୁଣିଗତ ତାହା )
ଅଶେଷ ନିନ୍ଦାର ଭାଗୀ ହୁଅଇ ସେ ନର,
ଥାଉ ପଛେ ଅନ୍ୟ ଗୁଣ ଅସଂଖ୍ୟ ତାହାର,
ବିଷର କଣିକା ଯୋଗେ ସୁଧାଖଣ୍ଡ ଯଥା
ହୁଏ ଛାରଖାର ।

ହୋରା— ଦେଖ, ପ୍ରଭୁ, ଅସଇ ସେ ।

( ପ୍ରେତର ପ୍ରବେଶ )

ହ୍ୟାମ୍— ହିଦିବ ନିବାସୀ ଅହେ ଦେବଦୂତ ବୃନ୍ଦ,
ଘୋଡ଼ାଇ ଆମ୍ଭଙ୍କୁ ରଖ ବାହୁଛାୟା ତଳେ !
ଅହେ ଅଶରୀରୀ ମୂର୍ତ୍ତି, ହେଉ ପବିତ୍ର ବା
ଅପବିତ୍ର ଏ କାୟା ତୁମ୍ଭର, ହୁଅ ତୁମ୍ଭେ
ବିମାନ-ବିହାରୀ ଅବା ଘୃଣିତ ନାରକୀ,
ଶୁଭ ବା ଅଶୁଭ ହେଉ ଉଦ୍ଦେଶ୍ୟ ତୁମ୍ଭର,
ଅସିଛ ଯେହେତୁ ତୁମ୍ଭେ ଧରି ରାଜବେଶ,
କରିବି ମୁଁ ତୁମ୍ଭ ସହ ଆଳାପ ନିଶ୍ଚୟ
ଡାକିବି ହ୍ୟାମ୍‌ଲେଟ୍, ରାଜା, ପିତା, ଦିନାମାର-
ମହୀପ-ଭୂଷଣ; କହ, କହ, ମୋତେ କଥା,
ଦିଅ ମୋ ଉତ୍ତର, ନ କର ଗୋପନ କିଛି;
କିପାଁ ତବ ବିଧିମତେ ସମାହିତ ଅସ୍ଥି,
ଦେଇଛି ସବଲେ ଫିଙ୍ଗି ଆଚ୍ଛାଦନ ତାର,
କି ହେତୁ କବର ଯହିଁ ଦେଖିଥିଲୁଁ ସୁଖେ
ଥିଲ ହେ ଶୟାନ ତୁମ୍ଭେ, କରି ଉନ୍ମୋଚନ

ସ୍ଫଟିକ ନିର୍ମିତ ଦୃଢ ତୋରଣ ତାହାର,
ଦେଇଛି ତୁମ୍ଭଙ୍କୁ ପେଶି ପୁଣି ମର୍ତ୍ତ୍ୟପୁରେ ।
କହ, ପ୍ରେତ, କି କାରଣେ ଆପାଦ ମସ୍ତକ
ହୋଇ କଞ୍ଚୁକେ ଆବୃତ ଆସିଛ ଏ ମଧ୍ୟ—
ରାତ୍ରେ, କ୍ଷୀଣ ଚନ୍ଦ୍ରାଲୋକେ, ଦ୍ୱିଗୁଣ-ଭୀଷଣ-
ତର କର ଏ ଯାମିନୀ; ଏ ମୂର୍ତ୍ତି ତୁମ୍ଭର
ଦେଖୁଛି ଥରଇ ଚିତ୍ତ, କ୍ଷୁଦ୍ରମତି ଆମ୍ଭେ,
କ୍ରୀଡ଼ନକ ମାତ୍ର ସିନା ପ୍ରକୃତିଦେବୀର,
କେମନ୍ତେ ବୁଝିବୁଁ କହ ମାୟାର ଏ ଲୀଳା ?
କହ କିପାଁ ଧରିଛ ଏ ବେଶ ? କହ ହେଲେ
କି ଭାବେ କରିବୁଁ ଆମ୍ଭେ ସାହାଯ୍ୟ ତୁମ୍ଭର ?

(ପ୍ରେତର ହ୍ୟାମ୍ଲେଟ୍ ପ୍ରତି ସଙ୍କେତ)

ହୋରା — ତୁମ୍ଭଙ୍କୁ ସେ କରୁଛି ସଙ୍କେତ ଯିବାପାଇଁ
ପଶ୍ଚାତେ ତାହାର, ହେଉଛି ପ୍ରତ୍ୟୟ ଯେସନ୍ତେ
କହିବ ନିଭୃତେ କିଛି ଗୋପନୀୟ କଥା ।

ମାର୍ସେ—ଦେଖ, କି ଭଳି ସେ ଭଦ୍ର ଭାବେ ତୁମ୍ଭ ପ୍ରତି
କରୁଛି ଇଙ୍ଗିତ ଯିବାପାଇଁ ଗୋପନୀୟ
ସ୍ଥଳେ । କିନ୍ତୁ ନ ଯାଅ ତା' ସହ ।

ହୋରା— ନାହିଁ, ତୁମ୍ଭେ
ନଯାଅ କଦାପି ।

ହ୍ୟାମ— ନ କହିଲେ କଥା କିବ
ପଶ୍ଚାତେ ତାହାର ।

ହୋରା— ନ ଯାଅ ହେ ଯୁବରାଜ !

ହ୍ୟାମ୍—କାହିଁ, ଅଛି କି ଭୟ ତହିଁରେ ? ନାହିଁ ଗଣେ
ଏ ତୁଚ୍ଛ ଜୀବନ ପ୍ରତି ମାୟା ମୋର ରତ୍ତେ;
ଅମର ଏ ଆତ୍ମା ମୋର, ଅଚ୍ଛେଦ୍ୟ, ଅଭେଦ୍ୟ,
କି କରିବ ତାର ସେହୁ ? କରୁଛି ସଙ୍କେତ
ପୁଣି ଯିବ ପଶ୍ଚାତେ ତାହାର ।

ହୋରା— କଣ ଯେବେ
ପ୍ରଲୋଭିତ ଡାକି ନିଏ ପୟୋଧି-କୂଳକେ
ଅବା ପ୍ରଭୁ ଭୟାବହ ତୁଙ୍ଗ ଗିରି ଶୃଙ୍ଗେ
ରହିଛି ଯା ନମ୍ରଦେଶୁଁ ଝୁଲି ସିନ୍ଧୁ ବକ୍ଷେ,
ଧରେ ଯଦି ତହିଁ ପୁଣି ବିକଟ ମୂରତି,
ଦେଖି ତାହା ବୁଦ୍ଧି ଭ୍ରଂଶ ଘଟେ ଯଦି ତବ,
କି ଦୁର୍ଦ୍ଦଶା ହେବ, ପ୍ରଭୁ, ଭାବି ଦେଖ ମନେ;
ଅହୋ କି ଭୀଷଣ ସେହି ଶିଖର ପ୍ରଦେଶ,
ନ ଥିଲେହେଁ ଅନ୍ୟ କିଛି ଭୟର କାରଣ,
କଲେ ମାତ୍ର ଦୃଷ୍ଟିକ୍ଷେପ ଊର୍ଦ୍ଧ୍ୱଦେଶୁଁ ତାର
ଚଳୋର୍ମି-ସଂକୁଳ-ନୀଳ-ସାଗର-ଗରଭେ
ପଶିଲେ ଶ୍ରବଣେ ଝରେ ସିନ୍ଧୁ-ଘୋର-ରବ,
ହୁଏ ଶିରଃ ଦର୍ଶକର ବିଘୂର୍ଣ୍ଣିତ କ୍ଷଣେ,
ଲୁଟିଲ କଳନା ଜାତ ହୁଏ କ୍ଷୁବ୍ଧ ଚିତ୍ତେ ।

ହ୍ୟାମ୍—କରୁଛି ସଙ୍କେତ ପୁଣି । ହୁଅ ଅଗ୍ରସର,
ଯିବି ମୁଁ ପଶ୍ଚାତେ ତବ ।

ମାର୍ସେ— ନ ଦେବୁଁ ତୁମ୍ଭଙ୍କୁ
ଛାଡ଼; ଯାଅ ନାହିଁ, ପ୍ରଭୁ !

ହ୍ୟାମ୍— ଛାଡ଼ ଦିଅ ମୋତେ ।

ହୋରା—ଶୁଣ ମୋ ବଚନ, ନ ଯାଅ ତା'ସଙ୍ଗ କେବେ ।

ହ୍ୟାମ୍—ଡାକଇ ଅଦୃଷ୍ଟ ମୋତେ, କରଛି ସୁଦୃଢ଼
କେଶରୀର ସ୍ନାୟୁସମ ସ୍ନାୟୁପୁଞ୍ଜ ମୋର ।
ଡାକଇ ସେ ମୋତେ । ଦିଅ ଛାଡ଼ ବନ୍ଧୁବର୍ଗ ।
କରିବ ଅକଟ ଯେହୁ ପେଷିବି ମୁଁ ତାକୁ
ଶମନ ଭବନେ, କହୁଛି ମୁଁ ଦିଅ ଛାଡ଼ ।
ହୁଅ ଅଗ୍ରସର, ଯିବି ମୁଁ ପଶ୍ଚାତେ ତବ ।

( ପ୍ରେତ ଓ ହ୍ୟାମ୍‌ଲେଟ୍‌ର ପ୍ରସ୍ଥାନ )

ହୋରା—ହୋଇଛି ଉନ୍ମତ୍ତ ସେହୁ ଉତ୍ତେଜନା ବଶେ ।
ମାର୍ସେ—ଚାଲ ଯିବା ତା ପଶ୍ଚାତେ; ନୁହଇ ଉଚିତ
ଏ କ୍ଷେତ୍ରେ ଆଦେଶ ତାର କରିବା ପାଳନ ।
ହୋରା—ଯିବା ଚାଲ । କହ ହେବ କି ଫଳ ଏହାର ।
ମାର୍ସେ—ରାଜ୍ୟର କଲ୍ୟାଣ ପକ୍ଷେ ନୁହେଁ ଅନୁକୂଳ ।
ହୋରା—କରିବେ ମଙ୍ଗଳମୟ ମଙ୍ଗଳ ବିଧାନ ।
ମାର୍ସେ—ତଥାପି ବିହିତ ଯିବା ପଶ୍ଚାତେ ତାହାର ।

( ସମସ୍ତଙ୍କର ପ୍ରସ୍ଥାନ )

## ପଞ୍ଚମ ଦୃଶ୍ୟ

[ମଞ୍ଚର ଅପର ଅଂଶ]

( ପ୍ରେତ ଓ ହ୍ୟାମ୍‌ଲେଟ୍‌ର ପ୍ରବେଶ )

ହ୍ୟାମ୍‌—କାହିଁ ନେବ ମୋତେ ? କହ; ନ ହେବ ମୁଁ ଆଉ
ଅଗ୍ରସର ।

ପ୍ରେତ— ଅବହିତେ ଶୁଣ ମୋ ବଚନ ।

ହ୍ୟାମ୍‌—ଶୁଣିବି ମୁଁ କହ ।

ପ୍ରେତ— ଆସିଲା ସମୟ ଏବେ,
ଯିବି ମୁଁ ବହ୍ନନ ଯହିଁ ଗନ୍ଧକର ତୀବ୍ର
ଗନ୍ଧେ ପ୍ରାଣ ସଦା ହୁଅଇ ଅକୁଳ, ନେତ୍ର
ହୁଏ ଅନ୍ଧୀଭୂତ ।

ହ୍ୟାମ୍‌— ହାୟ, ହତଭାଗ୍ୟ ପ୍ରେତ !

ପ୍ରେତ—ନ ହୁଅ ଦୁଃଖିତ, ଶୁଣ ସ୍ଥିର କର୍ଣ୍ଣେ ଯାହା
କହୁଛି ମୁଁ ଏବେ ।

ହ୍ୟାମ୍‌— କହ, ଆଗତ ମୁଁ ଏଥି
ଶୁଣିବାକୁ ବଚନ ତୁମ୍ଭର ।

ପ୍ରେତ— ଶୁଣିଲେ ତା'
ପ୍ରଜ୍ୱଳିତ ହେବ କର୍ଣ୍ଣେ ପ୍ରତିହିଂସା-ବହ୍ନି ।

ହ୍ୟାମ୍‌—କି କହିଲ ?

ପ୍ରେତ— ଅଟଇ ମୁଁ ତବ ପିତାଙ୍କର
ପ୍ରେତମୂର୍ତ୍ତି, କର୍ମଦୋଷେ କରଇ ଭ୍ରମଣ

ନିଶା ଭ୍ରମେ ଏହିଭାବେ ଅବନୀ ମଣ୍ଡଳେ,
ଦିବସେ ଆବଦ୍ଧ ରହେ ନିରଶନେ ମୁହିଁ
ଅଗ୍ନିକୁଣ୍ଡେ ନିରନ୍ତର; ଯାବତ ମୋ' ପାପ—
ସର୍ବ କରିଥିଲି ଯାହା ଜୀବିତ କାଳରେ
ବୈଶ୍ୱାନର ତୀବ୍ର ତାପେ ନ ହେବ ବିଦଗ୍ଧ,
ନୋହିବ ଖଣ୍ଡନ କେବେ ଏ କ୍ଲେଶ ମୋହର ।

ମାନା ପ୍ରେତପୁର-ବାର୍ତ୍ତା ଅତି ଗୋପନୀୟ,
ନିଷିଦ୍ଧ ମୋ ପକ୍ଷେ ତାହା କରିବା ପ୍ରକାଶ,
ନତୁବା କହନ୍ତି ମୁହିଁ ଅପୂର୍ବ କଥାଏ,
ଶୁଣି ପ୍ରତି ବର୍ଣ୍ଣ ଯାର ମର୍ମସ୍ଥଳ ତବ
ହୁଅନ୍ତା ବିଦୀର୍ଣ୍ଣ, ତରୁଣ ଶୋଣିତ-ଧାର
ଭୟେ ଧମନୀରେ ତବ ରହନ୍ତା ଅଟକି

ହୋଇ ଘନୀଭୂତ, ତୀର ବେଗେ ତାରାସମ
ପଡ଼ନ୍ତା ଛିଟିକି ଦୂରେ ଅକ୍ଷି ଗୋଲକରୁ
ନୟନ ଯୁଗଳ, ସୁଦୃଢ଼ ବେଣୀ ବନ୍ଧନ
ସହସା ବିଚ୍ଛିନ୍ନ ହୋଇ ପ୍ରତି କେଶ-ଅଗ୍ର
କୁପିତ ଶଲ୍ଲକୀ ପୃଷ୍ଠେ ଶଳାକା ସଦୃଶ,

ଉଭା ହୋଇ ଶିରୋଦେଶେ ରହନ୍ତା ତୁମ୍ଭର:
ମର୍ତ୍ତ୍ୟର ମାନବ ପକ୍ଷେ ଅମର୍ତ୍ତ୍ୟ ଏ ବାଣୀ,
କରିବା ଶ୍ରବଣ କିନ୍ତୁ ନୁହେଁ ସମୀଚୀନ ।
ଶୁଣ, ଶୁଣ କର୍ଣ୍ଣଦେଇ, ଥିଲା ଯଦି ପିତୃ—
ସ୍ନେହ ହୃଦୟେ ତୁମ୍ଭର—

ହ୍ୟାମ୍‌— ଜାଣନ୍ତି ତା' ପ୍ରଭୁ ।

ପ୍ରେତ— କର ବୈର-ନିର୍ଯାତନ ତବ ପିତା ଯେଣୁ
ପୈଶାଚିକ ଭାବେ ହୋଇଛନ୍ତି ହତ ।

ହ୍ୟାମ୍‌— ହତ !

ପ୍ରେତ— ଜାଣ ହତ୍ୟା ସର୍ବକାଳେ ଅତୀବ ଗର୍ହିତ,
ମାତ୍ର ଏହା ଗର୍ହିତ, ବିସ୍ମୟକର, ଅତି
ଅସ୍ୱାଭାବ ।

ହ୍ୟାମ୍‌— କହ ଶୀଘ୍ର ବୃତ୍ତାନ୍ତ ଏହାର,
ପ୍ରଭଞ୍ଜନ ବେଗେ ଯାଇ ତ୍ୱରିତ ଗତିରେ
ନେବି ପ୍ରତିଶୋଧ ମୁହିଁ ।

ପ୍ରେତ— ଦେଖୁଛି ତୁମ୍ଭକୁ
ଉପଯୁକ୍ତ ଏ କାର୍ଯ୍ୟ ସାଧନେ; ଏହି କାର୍ଯ୍ୟେ
ଅଗ୍ରସର ନ ହୋଇବ ଯେବେ, ଜାଣିବି ମୁଁ
ତୁମ୍ଭେ ମାତ୍ର କୁତ୍ସିତର ଘୃଣିତ କୁକୁର ।
ଶୁଣ ହେ ହ୍ୟାମ୍‌ଲେଟ୍ ଏବେ: ହୋଇଛି ପ୍ରଚାର
ଥିଲି ମୁଁ ସୁପ୍ତ ଯେବେ ପୁଷ୍ପବାଟିକାରେ
ଆଶୀବିଷ ଆସି ମୋତେ କରିଲା ଦଂଶନ,
କୈତବ ଏ ଗିରେ ହୋଇଛନ୍ତି ପ୍ରତାରିତ (୧)
ଡେନ୍‌ମାର୍କ ନିବାସୀ: କିନ୍ତୁ ଜାଣ ହେ ଯୁବକ,
ଯେଉଁ ସର୍ପ ପିତୃ-ପ୍ରାଣ ହରିଛି ତୁମ୍ଭର,
ଶୋଭଇ ମୁକୁଟ ଏବେ ତାର ଶୀର୍ଷଦେଶେ ।

(୧) କୈତବ—ଛଳନାପୂର୍ଣ୍ଣ ।

ଶ୍ୟାମ୍—ଏଭଳି ଷଣପୂ ଶତେ ହୋଇଥିଲେ ଜାତ
ଖୁଲ୍ଲତାତ ମୋର !

ପ୍ରେତ— ସେହୁ ନରାଧମ ପଣ୍ଡ,
ବୁଦ୍ଧିବଳେ ମାୟାଜାଲ କରିଣ ବିସ୍ତାର
କି କୌଶଳେ ହରିନେଲା, ନାସି-ଶତ୍ରୁ-ଶ୍ରେଷ୍ଠ,
ତୃଷିତ କାମ-ପିପାସା ମେଣ୍ଟାଇବା ଆଶେ
ପ୍ରଣୟିନୀ ଶତ୍ରୁ ମୋର ମଣିଥିଲି ଯାକୁ
ରମଣୀ-ସୀମନ୍ତ-ମଣି, ସତୀ, ପତିବ୍ରତା !
ଅହୋ କି ପତନ ଥରେ ଭାବି ଦେଖ ଶତ୍ରୁ,
ଧର୍ମବେଦୀ ପରେ ବସି ଧର୍ମ ସାକ୍ଷୀ କରି
ଯେଉଁ ମନ୍ତ୍ରେ କରିଥିଲି ତା' ପାଣିପୀଡ଼ନ,
ଅନୁସରି ସେହୁ ବାକ୍ୟ ପ୍ରେମର ଶୃଙ୍ଖଳେ
ରଖିଥିଲି ବାନ୍ଧି ତାକୁ ଯତନେ ହୃଦୟେ
ଗଣିଧନ ପରି, ସେହୁ ପୁଣି ତେଜି ମୋତେ
ବିଶ୍ୱାସଘାତିନୀ କରିଲା ବରଣ ହେଲେ
ଦୁରାଚାରେ ପତିରୂପେ, ରୂପେ ଗୁଣେ ଯେହୁ
ସମକକ୍ଷ ନୋହିବ ମୋ ସହ !
ସତ୍ୟ ଏହା,
ସତୀ କେବେ ନ ଠଳିବ କାମୀ-ଦୃଷ୍ଟି-ଗେରେ
ଭଲେହେଁ ପ୍ରସ୍ତାବ ଆସି ଆପେ ସୁରେଶ୍ୱର,
ହେଲେହେଁ ଦେବେନ୍ଦ୍ର-ବାଞ୍ଛା ବଢ଼ଶୀ ଭେଷନ,
ମଣି ତୁଚ୍ଛ ସ୍ୱର୍ଗସୁଖ ସନ୍ତାପ-ହାରିଣୀ

ସ୍ୱର୍ଣ୍ଣ ସୈକତେ ବସି ଶମ୍ବାଳପୂରିତ (୧)
ପଙ୍କିଳ-କାସାର-ତୀରେ ବଳାଇବ ମନ ।
ନାହିଁ ରେ ସମୟ ଆଉ ମନ୍ଦ ଗନ୍ଧବହ
ଉଷାର ଆଗମ-ବାର୍ତ୍ତା କରୁଛି ପ୍ରଚାର,
କହିବି ସମାସେ ଶୁଣ ସମସ୍ତ ବୃତ୍ତାନ୍ତ । (୨)
ଥିଲି ମୁଁ ନିଦ୍ରିତ ଯେବେ ଅପରାହ୍ଣ କାଳେ
ଯଥା ନିତ୍ୟ-ପ୍ରଚଳନ ଉପବନେ ମୋର,
ପଶି ତହିଁ ଅଲକ୍ଷିତେ ଖଳଶିରୋମଣି
ଖୁଲ୍ଲତାତ ତବ ଦେଲା ବିଷାକ୍ତ ନିର୍ଯ୍ୟାସ,
ଢାଳି ଶ୍ରବଣ କୁହରେ; କିବା ତା' ଶତ୍ରୁତା
ଅଛି ନରରକ୍ତ ସହ, ଚକିତେ ପାରଦ
ପରି ଭେଦଯାଏ ଗାତ୍ରେ ଶିରା, ପ୍ରଶିରାରେ,
ଦେଖୁଁ ଦେଖୁଁ କରିଦିଏ ତରଳ ଶୋଣିତେ
ପରିଣତ ଘନେ,ଦୁଗ୍ଧେ ଅମ୍ଳରସ ଯଥା;
କଲା ସେ ତଦ୍ରୂପ ମୋର; ନିମେଷେ ଉଦ୍ଭେଦ—
ରାଶି ସର୍ବାଙ୍ଗ ମୋହର ପକାଇଲା ଛାଇ,
ମହାବ୍ୟାଧି ଘୋଟିଲା ଶରୀରେ, ହେଲା ଚର୍ମ
ସୁଚିକ୍କଣ କଦାକାର ବଳ୍କଳ ସଦୃଶ ।
ଏହିଭାବେ ସୁଖେ ନିଦ୍ରା ଭଜୁଥିଲି ଯେବେ
ଚକିତେ ଅନୁଜ ଆସି ତସ୍କରର ବେଶେ

---

(୧) ଶମ୍ବାଳ—ଶୈବାଳ ।
(୨) ସମାସେ—ସଂକ୍ଷିପ୍ତ ଭାବରେ ।

ହରନେଲ ଅଚମ୍ବିତେ ମୋ ପ୍ରାଣ-ବହଙ୍ଗ,
ସୁବର୍ଣ୍ଣ ମୁକୁଟ ପୁଣି ହୃଦୟର ରାଣୀ ।
ନ ଦେଲ ସମୟ, ଅହା, କ୍ରୂର କାଳ-ଭ୍ରାତା,
ପେଶିଦେଲ ଅତର୍କିତେ କୃତାନ୍ତ ନିଳୟେ,
କଳୁଷ ଦୁର୍ବହଭାର ଥୋଇ ମୋ ମସ୍ତକେ,
ନ ପାରିଲି ନିବେଦ ମୁଁ ଦୁଃଖ ଜ୍ୱାଳା ମୋର
ପ୍ରଭୁ ପରମେଶ ପଦେ, ପୂତ ତୈଳେ ଗାତ୍ର
ମୋର ନ ହେଲ ମାର୍ଜିତ, ଶମ୍ଭୁଙ୍କ ପବତ୍ର
ନାମ ନ ପାରିଲି ଘୋଷି ପ୍ରୟାଣ କାଳରେ;
ଆସିଲି ମୁଁ ରିକ୍ତ ହସ୍ତେ, ନାହିଁ ରେ ସମ୍ବଳ
କି ଭାବେ ହୋଇବ ଉଦ୍ଧା ବିଚାର ଦିବସେ,
କେମନ୍ତେ ମୋ ପାପଭାର ହୋଇବ ଲାଘବ ।

ଅହୋ, ଭୟାବହ ଅତି ଏ ନୃଶଂସ ହତ୍ୟା,
ଥାଏ ଯଦି ସ୍ନେହ, ମାୟା, ମମତା ତୁମର
କରିବ ଅଲସ୍ୟ ଆଶୁ ଯେନ ପ୍ରତିଶୋଧ;
ଦନାମାର-ରାଜ-ଶଯ୍ୟା ବିଳାସ-ତଳପ
ନ ହେଉ ସେ ନରହନ୍ତା ପାପୀ ଲମ୍ପଟର ।

କିନ୍ତୁ ବୈର ନିର୍ଯାତନ ବଳବତୀ ସ୍ପୃହା,
ନ କରୁ ବିଦ୍ୱେଷ ଜାତ ମନୋମଧ୍ୟେ ତବ
ଜନନୀର ପ୍ରତି, ଅଥବା ସେହେତୁ କେବେ
ନ ହେଉ ଅନିଷ୍ଟ ଚିନ୍ତା ଉଦିତ ହୃଦୟେ
ତାଙ୍କ ପ୍ରତି ତବ, ଭୁଞ୍ଜିବେ ସେ କର୍ମଫଳ

ଦେବେ ତାଙ୍କୁ ପରମେଶ ଶାସ୍ତି ସମୁଚିତ
ଦୋଷାଦୋଷ ସୂକ୍ଷ୍ମରୂପେ କରିଣ ବିଚାର,
ବିବେକର ଶତମୁଖୀ-ତୀବ୍ର-କଣ୍ଟକାଗ୍ର
କରିବ ସତତ ବିଦ୍ଧ ତାଙ୍କ ମର୍ମସ୍ଥଳ ।
ଦେଉଛି ମେଲାଣି ଆଉ ନ ପାରିବା ରହି,
ଖଦ୍ୟୋତର ଜ୍ୟୋତିଃ କ୍ରମେ ହେଉଛି ନିଷ୍ପ୍ରଭ
ଉଷାର ରକ୍ତିମ-ଛଟା ଦିଶେ ପ୍ରାଚୀମୂଳେ;
ଦେଉଛି ମେଲାଣି ବତ୍ସ, ରଖିଥିବ ମନେ ।

( ପ୍ରେତର ପ୍ରସ୍ଥାନ )

ହ୍ୟାମ୍—ତ୍ରିଦିବବନବାସୀ ଅହେ ବିବୁଧ ନିଚୟ,
ମାତଃ ବସୁନ୍ଧରେ ! କରିବି କାହାକୁ ଆଉ
ସମ୍ବୋଧନ ମୁହିଁ ? ଡାକିବି କି ଯମଲୋକେ ?
ଛି, ଛି, କି ଶୁଣିଲି ଆଜି, ସତ୍ୟ କି ଏ କଥା ?
ନ ହୁଅ କାତର ଚିତ୍ତ ତହୁଁ ଧୈର୍ଯ୍ୟ ଧରି,
ସ୍ନାୟୁପୁଞ୍ଜ ନ ହୁଅ ଶିଥିଳ, ଦୃଢ଼ବନ୍ଧେ
ଋଜୁଭାବେ ରଖ ମୋତେ ଟେକି । ରଖିବି ମୁଁ
ତୁମ୍ଭ କଥା ମନେ ! ଯାବତ ଏ ଶିରେ ମୋର
ସ୍ମୃତିର ଆସନ ଥିବ ଅଚଳ, ଅଟଳ
ନ ଭୁଲିବି ତୁମ୍ଭ କଥା, ହତଭାଗ୍ୟ ପ୍ରେତ !
ରଖିବି ମୁଁ ମନେ ! ଦେବି ପୋଛି ସ୍ମୃତି ପଟୁଁ
ଅନ୍ୟ ଯେତେ କଥା, ନୀତି କିମ୍ବା ଜ୍ଞାନ ଯାହା
କରିଥିଲି ଉପାର୍ଜନ କୈଶୋରେ, ଯୌବନେ

ଅନ୍ୟ ମୂର୍ତ୍ତି, ଅନ୍ୟ ଭାବ, ନ ରହିବ ତହିଁ,
ମସ୍ତିଷ୍କ-ପୁସ୍ତକେ ମୋର ରହିବ କେବଳ
ଲେଖା ତୁମ୍ଭର ଆଦେଶ ଜ୍ୱଳନ୍ତ ଅକ୍ଷରେ ।
ଅରେ ପତିତା ରମଣୀ, ଏହି କାର୍ଯ୍ୟ ତୋର !
ଅରେ ତୁହି ଦୁରାଚାର, ଅଧରେ ମଧୁର
ହାସ ଖେଳାଇ ନିରତେ ରଖିଛୁ ଗୁପତେ
ହୃଦେ ଶାଣିତ ଛୁରିକା ! ତାହିଁ ଟିପା-ବହି—
ରଖିବ ମୁଁ ଲେଖି ଏହା ବିଶଦ ଅକ୍ଷରେ;
"ମନ୍ଦ ହାସ ନୁହେଁ ସଦା ସଜ୍ଜନର ଚିହ୍ନ
'ବିଷ କୁମ୍ଭ ପୟୋମୁଖ' ଡେନ୍‌ମାର୍କ-ସଜ୍ଜନ" (ଲେଖନ)
ରଖିଲି ପିତୃବ୍ୟ ତବ ଚରିତ୍ର ମୁଁ ଲେଖି ।
ପିତାଙ୍କର ବାକ୍ୟ ଏବେ କରିବି ସ୍ମରଣ,
'ଦେଉଛି ମେଲାଣି, ବତ୍ସ, ରଖିଥିବ ମନେ'
ଦେଉଛି ଶପଥ ଏହା ନ ଭୁଲିବ କେବେ ।

ମାର୍ସେ }
ହୋରା } —(ଅନ୍ତରାଳରୁ) ଯୁବରାଜ, ଯୁବରାଜ !

ମାର୍ସେ—(ଅନ୍ତରାଳରୁ) ପ୍ରଭୁ ହ୍ୟାମଲେଟ୍—
ହୋରା—(ଅନ୍ତରାଳରୁ) ପ୍ରଭୁ ତାଙ୍କୁ ରଖନ୍ତୁ କୁଶଳେ ।
ହ୍ୟାମ୍— ହେଉ ତାହା ।
ହୋରା—(ଅନ୍ତରାଳରୁ) ପ୍ରଭୁ, ପ୍ରଭୁ, ଯୁବରାଜ ।
ହ୍ୟାମ୍— ଅସ ଏହି ଠାବେ ।

(ହୋରାସିଓ ଓ ମାର୍ସେଲସ୍‌ର ପ୍ରବେଶ)

ମାର୍ସେ—କି ସମ୍ବାଦ ପ୍ରଭୁ ?

ହୋରସ୍—                    କହ କି ବାରତା, ପ୍ରଭୁ ?

ହ୍ୟାମ୍—ଅତୀବ ବିସ୍ମୟକର !

ହୋରସ୍—                    କହ ଦୟା ବହି ।

ହ୍ୟାମ୍—ନାହିଁ, ତୁମ୍ଭେ କରିବ ପ୍ରକାଶ ।

ହୋରସ୍—                    ଜାଣ, ପ୍ରଭୁ
କାହାକୁ ମୁଁ ନ କହିବ ଏହା !

ମାର୍ସେ—                    ମୁହିଁ ମଧ୍ୟ
ରଖିବ ଗୋପନେ ।

ହ୍ୟାମ୍—                    କହ, କି ମତ ତୁମ୍ଭର
ପାରେ କି ପ୍ରବେଶି କେବେ ଏଭଳି ଧାରଣା
ମନୁଷ୍ୟ ହୃଦୟେ ? କିନ୍ତୁ, ରଖିବ ଗୋପନେ ?

ହୋରସ୍ }
ମାର୍ସେ } —ରଖିବୁଁ ଗୋପନେ, ପ୍ରଭୁ, କରୁଛୁଁ ଶପଥ ।

ହ୍ୟାମ୍—ନାହିଁ ଏଭଳି ପାମର ଦନାମାର ଦେଶେ
ନୁହେଁ ଯେହୁ ପ୍ରବଞ୍ଚକ ଶଠଶିରୋମଣି ।

ହୋରସ୍—ଜାଣନ୍ତି ସରବେ ଏହା, ନାହିଁ ପ୍ରୟୋଜନ
ପ୍ରେତପୁରୁଁ ଆସି, ପ୍ରଭୁ, ଦେବା ଏ ବାରତା
ପ୍ରେତପକ୍ଷେ ।

ହ୍ୟାମ୍—                    ସତ୍ୟ ଯା କହିଲ ତୁମ୍ଭେ, ସତ୍ୟ
ଏ ବାଣୀ ତୁମ୍ଭର; ଅସ ଯିବା ଏହି ସ୍ଥଳୁଁ,
ବୃଥା କାଳ କ୍ଷୟେ ଅଉ ନାହିଁ ପ୍ରୟୋଜନ,

ଯାଅ ତୁମ୍ଭେ ନିଜ କାର୍ଯ୍ୟେ ଯଥା ଅଭିରୁଚି,
କର୍ମ୍ମ-ସୂତ୍ରେ ଯେଣୁ ନର ଅବଦ୍ଧ ସତତ,
ଯିବି ମୁହିଁ ଏହୁକ୍ଷଣି ପ୍ରାର୍ଥନା-ମନ୍ଦିରେ ।

ହୋରା—ପ୍ରମତ୍ତ ପ୍ରଳାପ ସମ ଏ ବାକ୍ୟ ତୁମ୍ଭର
ଅସଙ୍ଗତ, ପ୍ରଭୁ !

ହ୍ୟାମ୍—ଲଭିଲ ଆଘାତ ପ୍ରାଣେ
ଶୁଣି ବାକ୍ୟ ମୋର—କର ଦୋଷ କ୍ଷମା ।

ହୋରା—ନାହିଁ
କିଛି ଦୋଷ ତହିଁ ।

ହ୍ୟାମ୍—ଅଛି, ହୋରାସିଓ, ଅଛି
ଗୁରୁତର ଦୋଷ, କହୁଛି ଶପଥ କରି ।
ଦେଖିଲୁ ଯେ ଦୃଶ୍ୟ ଏବେ ସେହି ପ୍ରେତମୂର୍ତ୍ତି,
ଜାଣ, ବନ୍ଧୋ, ଅଯଥାର୍ଥ ନୁହେ ବାକ୍ୟ ତାର,
ଘଟିଲା ଯା ଆମ୍ଭମଧ୍ୟ ନ ପାରିବ କହି,
କୁତୁହଳ କର ସମ୍ବରଣ । ବନ୍ଧୁବର୍ଗ,
ତୁମ୍ଭେ ସଖା ମୋର ପୁଣି ଶିକ୍ଷିତ ସୈନିକ,
ରଖ ତୁଚ୍ଛ ମିନତି ମୋହର ।

ହୋରା—କି ମିନତି,
ପ୍ରଭୁ, ରଖିବୁଁ କହିବ ଯାହା ।

ହ୍ୟାମ୍—ଶୁଣ ତେବେ
ନ କର ପ୍ରକାଶ କେବେ ଦେଖିଲ ଯା ତୁମ୍ଭେ
ଅଦ୍ୟ ରଜନୀରେ ।

ହୋରା }
ମାର୍ସେ } —ରଖିବୁଁ ଗୋପନେ, ପ୍ରଭୁ ।

ହ୍ୟାମ୍—ନାହିଁ, କର ଶପଥ ଗ୍ରହଣ ।

ହୋରା—                    ଯୁବରାଜ,
ଖେଳନ୍ତୁ ଶପଥ, ରଖିବ ଗୋପନେ ମୁହିଁ ।

ମାର୍ସେ—ଯୁବରାଜ, ମୁହିଁ ମଧ ଖେଳନ୍ତୁ ଶପଥ,
ରଖିବ ଗୋପନେ ।

ହ୍ୟାମ—                    କର ସ୍ପର୍ଶ ଅସି ମୋର ।

ମାର୍ସେ—ଖେଳନ୍ତୁଁ ଶପଥ, ପ୍ରଭୁ ।

ହ୍ୟାମ—                    ଦେଖାଅ କାର୍ଯ୍ୟତଃ
ଛୁଇଁ କରବାଳ ମୋର ।

ପ୍ରେତ—(ତଳ ଦେଶରୁ)        ଖେଳ ପଣ ।

ହ୍ୟାମ—                    ହଃ, ହ ।
କହୁଛୁ ଏ କଥା ତୁହ ? ଅଛୁକି ରେ ତହିଁ ?
ଶୁଣୁଛ ତ ଅଛି ସେହ ତଳ ଦେଶେ, ଆସ
କର ଶପଥ ଗ୍ରହଣ ।

ହୋରା—                    କି ଶପଥ, ପ୍ରଭୁ, ?

ହ୍ୟାମ—ଦେଖିଲ ଯା ନ କହିବ କେବେ । ଖେଳ ପଣ
ଛୁଇଁ କରବାଳ ମୋର ।

ପ୍ରେତ—(ତଳ ଦେଶରୁ)            ଖେଳ ପଣ ।

ହ୍ୟାମ—                    ଅଟୁ
କି ରେ ସର୍ବବ୍ୟାପୀ ? ଆସ ଯିବା ଏହୁ ସ୍ଥଳୁ ।

ଅସ ଏଥି, ବନ୍ଧୁବର୍ଗ, ତୁଇଁ ଅସି କର
ପୁନଃ ଶପଥ ଗ୍ରହଣ, କଲ ଯା ଶ୍ରବଣ
ତୁମ୍ଭେ ନ କହିବ କେବେ, ଯେନ ପଣ ତୁଇଁ
କରବାଲ ମୋର ।

ପ୍ରେତ—(ତଳ ଦେଶରୁ) କର ଶପଥ ଗ୍ରହଣ ।

ହ୍ୟାମ—କହିଲୁ ଯଥାର୍ଥ ତୁହି, ଅରେ ଗନ୍ଧ ମୂଷା ।
କି ବେଗେ ତୁ ଭେଦ ପାରୁ କଠିନ ମୃତ୍ତିକା ।
ବନ୍ଧୁବର୍ଗ, ଅସ ଦୂରେ ଯିବା ଏହି ସ୍ଥଳୁ ।

ହୋର—ଅହେ ନକ୍ଷତ୍ରଦେବ ! ଏ ଭଳି ଅଦ୍ଭୁତ ଦୃଶ୍ୟ
ଦେଖିଛ କି କେବେ ?

ହ୍ୟାମ— ହେଉଛି ବିସ୍ମିତ, ବନ୍ଧୋ,
ପାରୁ ନାହିଁ ବୁଝି ! ଜାଣ ନା କି, ହୋରସିଓ,
ଅନନ୍ତ, ବୈଚିତ୍ର୍ୟମୟ, ବିଶ୍ୱଗନ୍ତାଘରେ
ଅଦ୍ଭୁତ ବସ୍ତୁସ୍ତବର ଅଛ କେତେ ବସ୍ତୁ
କିବା ଶକ୍ତ ଦର୍ଶନର ପାରିବ ତା କଳି ।
ଶୁଣ ତେବେ, ବନ୍ଧୁବର୍ଗ ଅଜ୍ଞଠାରୁ ମୁହିଁ
ଧରିବି ଅଦ୍ଭୁତ ବେଶ, ଅସ୍ଥିର ବେଭାର
ନ ରହିବ ପୂର୍ବପରି ମୋର, ଦେଖି କିନ୍ତୁ
ତୁମ୍ଭେ ତାହା, ଏହି ଭାବେ ଛନ୍ଦି ଭୁଜେ ଭୁଜ
ଅବା ବାଙ୍କବ୍ୟକ୍ତି ସମ ହଲାଇ ମସ୍ତକ
ନ କରିବ ଉଚ୍ଚାରଣ ଶ୍ଳେଷ-ଗିର, ଯଥା,
'ଥାଉ, ଥାଉ, ଜାଣୁଁ ଅମ୍ଭେ,' ଅବା 'ଜାଣୁଁ ଅମ୍ଭେ

କହୁଲେ କ ହେବ' ଅବା 'କହୁପାରୁ ହେଲେ
ଇଚ୍ଛା,' ଅବା ଏ ଭଳି ବଚନ ଶୁଣି ଯାହା
କରିବେ ସନ୍ଦେହ ଲୋକେ ଜାଣ ତୁମ୍ଭେ କିଛି
କ ହେତୁ ବକ୍ଷୁତ ମୋର, ହୋଇଛ ଅଗ୍ରର,
ଧର୍ମ ସାକ୍ଷୀ କରି ତୁମ୍ଭେ ଘେନ ହେ ଶପଥ
କେବେ ନ କହୁବ ଏହା ।

ପ୍ରେତ—(ତଳ ଦେଶରୁ) ଘେନ ଏ ଶପଥ ।

ହ୍ୟାମ୍‌—ନ ହୁଅ ଅସ୍ଥିର, ପ୍ରେତ, ରହ ଧୈର୍ଯ୍ୟ ଧରି ।

(ସେମାନଙ୍କର ଶପଥ ଗ୍ରହଣ)

ଦେଖିଛି ହେ ବନ୍ଧୁ ଏବେ ସନ୍ଦେହ ମେଲ୍ଲଣି
ହେଲେହେଁ ସମ୍ବଳହୀନ କଲେ କୃପାବଧି
ଏ ପ୍ରୀତି ଏ ବନ୍ଧୁତାର କାର୍ଯ୍ୟତଃ ପ୍ରମାଣ
ଦେଖାଇବ ଦିନେ ସଖା ହ୍ୟାମ୍‌ଲେଟ୍‌ ନିଶ୍ଚୟ ।
ଆସ ଯିବା ଏକତ୍ରେ ସରବେ, କିନ୍ତୁ ମୁହିଁ
କରୁଛି ମିନତି ଏହା ରଖିବ ଗୋପନେ ।
ବିଚଳ ଏ କାଳ ଭଗ୍ନ ସନ୍ଧିସ୍ଥଳ ତାର,
ଅହୋ, କି ଦୁର୍ଭାଗ୍ୟ ମୋର ଏକାଳେ ଜନମ
ଲଭିଛି ମୁଁ କରିବାକୁ ସଂସ୍କାର ତାହାର
ହେବ କି ଉଦ୍ଧାର କାର୍ଯ୍ୟ ଏହି କ୍ଷୀଣ ହସ୍ତେ ।
ରହ ଯିବା ଏକତ୍ରେ ସରବେ ।

(ସମସ୍ତଙ୍କର ପ୍ରସ୍ଥାନ)



## ଦ୍ୱିତୀୟ ଅଙ୍କ



### ପ୍ରଥମ ଦୃଶ୍ୟ

[ ପଲ୍ଲେନଅସ୍‌ର ଗୃହମଧ୍ୟସ୍ଥ ଗୋଟିଏ ପ୍ରକୋଷ୍ଠ ]

(ପଲ୍ଲେନଅସ୍ ଓ ରେନାଲ୍ଡୋର ପ୍ରବେଶ)

ପଲ୍ଲେ—ଦେବ ତାକୁ ଏହି ଅର୍ଥ, ପୁଣି ଏହି ନାନା—
ପତ୍ରାବଳୀ ଦେଇଛି ମୁଁ ଯାହା ।

ରେନା— ଦେବି, ପ୍ରଭୁ ।

ପଲ୍ଲେ—ଦେଖ, ରହି ଦୂରେ, ନ କରି ସାକ୍ଷାତ, ଅଗ୍ରେ
କମୂତ ଚରିତ ତାର ଦେବ ଏ ବାରତା
ବୁଦ୍ଧିମତ୍ତା ପରିଚୟ ଲଭିବ ମୁଁ ତେବେ ।

ରେନା—ପ୍ରଭୁ, ଥିଲା ଏ ଉଦ୍ଦେଶ୍ୟ ମୋର ।

ପଲ୍ଲେ— ଯଥାର୍ଥ ଏ
କଥା, ଅତି ସୁଯୁକ୍ତ । ଦେଖ ହେ ରେନାଲ୍ଡୋ
ନେବ ଏ ବାରତା ଅଗ୍ରେ ପ୍ୟାରି ନଗରରେ,
କି ଭଳି ଏ ଦେଶବାସୀ କରନ୍ତି ନିବାସ,
କି ଭାବେ ସେ କରିଥାନ୍ତି ଜୀବିକା ନିର୍ବାହ,
କାହିଁ କିରୂପେ ସେ କଟାନ୍ତି ସମୟ, କିବା
ଗୋଷ୍ଠୀ ତାହାଙ୍କର, ବଳାସେ ବ୍ୟସନେ କେତେ

କରିଥାନ୍ତି ବାସ୍ତୁ; ଏହିରୂପେ ସୁକୌଶଳେ
ପୁଛି ପ୍ରଶ୍ନପୁଞ୍ଜ, ଜାଣିବ ଜାଣନ୍ତି ସେହି
ତନୟେ ମୋହର, ତେଜ ଚକ୍ର ବକ୍ର-ବାଟ,
ନାଡ଼-ବଙ୍କ ଋଜୁମାର୍ଗେ ହେବ ଅଗ୍ରସର,
ଯଥା, 'ଜାଣେ ମୁଁ ପିତାଙ୍କୁ ତାଙ୍କର, ତାଙ୍କ
ବନ୍ଧୁଗଣେ, ଅଛି ମୋର କିଞ୍ଚିତେ ଆଳାପ
ତାଙ୍କ ସହ' ଶୁଣୁଛ ରେନାଲ୍‌ଡୋ ?

ରେନା — ଶୁଣୁଛି ମୁଁ
ସାବଧାନେ, ପ୍ରଭୁ ।

ପଲୋ— କହିବ ଏ କଥା ତୁମ୍ଭେ
'ଜାଣେ ମୁଁ ସାମାନ୍ୟ ତାଙ୍କୁ, ନାହିଁ କିନ୍ତୁ ମୋର
ବିଶେଷ ଅଳାପ, ତେବେ ଯଦ ହୋଇଥାନ୍ତି
ସେହି ବ୍ୟକ୍ତି କହୁଛି ମୁଁ ବିଷୟ ଯାଙ୍କର,
ଅଟନ୍ତି ସେ ଉଚ୍ଛୃଙ୍ଖଳ ଅତି, ମତି ତାଙ୍କ
ଅତିବ ଚଞ୍ଚଳ, ଅଛି ଏହି ଦୋଷମାନ'
କହିବ କଳ୍ପିତ-ଦୋଷ ଆରୋପ ଏଠାରେ
ଇଚ୍ଛାମତେ ତବ, କିନ୍ତୁ ଦେଖ ନ ହୋଇବ
ଯେତେକ ତାହା ଅମର୍ଯ୍ୟାଦାକର; ସ୍ବୈର ଦୋଷେ (୧)
ହୁଅଇ ସଚରାଚର ଲକ୍ଷିତ ଯେ କୃତି
ଚପଳ ଯୌବନେ ମାତ୍ର କହିବ ତେସନ ।

ରେନାଲ୍ଡୋ—ଯଥା ଦ୍ୟୁତକ୍ରୀଡ଼ା, ପ୍ରଭୁ !

---

(୧) ସ୍ବୈର—ସ୍ୱେଚ୍ଛାଧୀନତା

ପଲ୍ଲେ— ଦ୍ୟୂତ, ସୁରାପାନ,
ଅବା ସ୍ୱାମୃରକ୍ଷା, ଶପଥ, କଳହ, ଭ୍ରମେ
କହୁପାର ଏହା ।

ରେନା— କିନ୍ତୁ କହୁଲେ ଏସନ
ହେବ ମର୍ଯ୍ୟାଦା ଲଘବ ।

ପଲ୍ଲେ— ନାହିଁ; ହେବ କିପାଁ ?
ଦର୍ଶାଇ କାରଣ ଦୋଷ କରିବ ଆରୋପ
ମୃଦୁଭାବେ, ବ୍ୟଭିଚାର ଦୋଷେ କିନ୍ତୁ କେବେ
କଳୁଷିତ ନ କରିବ ଚରିତ୍ର ତାହାର,
ନୁହେଁ ମୋର ସେ ଭଳି ଉଦ୍ଦେଶ୍ୟ, ସ୍ୱୈର ଦୋଷେ
ଯୁବାକାଳେ ଯେଉଁ ତ୍ରୁଟି ଉଠଇ ଝଲସି
କ୍ଷଣପ୍ରଭା ପ୍ରଭାସମ ଉତ୍ତେଜନା ବଶେ
ବେଳେ ବେଳେ, ପୁଣି କ୍ଷଣେ ହୁଅଇ ମ୍ଳାନ,
ହୁଏ ଯାହା ଦୃଷ୍ଟ ସର୍ବଜନେ, ସେହି ଦୋଷ
ସୁକୌଶଳେ କରିବ ଆରୋପ ।

ରେନା— କିନ୍ତୁ, ପ୍ରଭୁ—

ପଲ୍ଲେ—କରିବ କି ହେତୁ ?

ରେନା— ଜାଣିବ ମୁଁ ତାହା, ପ୍ରଭୁ,
କହନ୍ତୁ ବୁଝାଇ ।

ପଲ୍ଲେ— ତେବେ କହୁଛି ମୁଁ ଶୁଣ;
ଏ ଷଡ଼ଯନ୍ତ୍ରେ ଧୂର୍ତ୍ତଜନେ ପଣ୍ଡଆନ୍ତି ଧରା ।
କର-ସ୍ପର୍ଶେ ହୁଏ ଯଥା ନୂତନ ଦ୍ରବ୍ୟର

କାନ୍ତଭ୍ରଷ୍ଟ କଣ୍ଠରେ, ପୁତ୍ରର ଚରିତ୍ର
ତେସନ ଏ ଦୋଷାରୋପେ କରି କଳୁଷିତ,
ହେବ ଏ ପ୍ରସଙ୍ଗେ ତବ ଆଳାପ ଯା' ସହ
କବା ମନୋଭବ ତାର ପାରିବ ତା ଜାଣି,
ବୁଝୁଛ ତ ? ଦେଖିଥିଲେ ନୁହି ସେନ୍ଥ ସେହି
ଯୁବକର, ତୁମ୍ଭ ବାକ୍ୟ କର ସମର୍ଥନ
କହିବ ନିଶ୍ଚୟ 'ଭଦ୍ର, ମହାଶୟ, ବନ୍ଧୁ'
ଯେଉଁ ସମ୍ବୋଧନ ସ୍ୱତ ଥିବ ସେହି ଦେଶେ ।

ରେନା—ହେଉ ତେବେ, ପ୍ରଭୁ ।

ପଲେ— ତହୁଁ, କହୁଥିଲି କସ ?
ଯାଉଛୁ ପାସୋରେ; କାହିଁ ଛାଡ଼ିଲି ସେ କଥା ?

ରେନା—'କହିବ ସେ କର ସମର୍ଥନ', 'ଭଦ୍ର, ବନ୍ଧୁ,
ଅବା ମହାଶୟ' ।

ପଲେ— ଏବେ ପଡ଼ିଲା ମୋ ମନେ,
କହିବ ସେ ଏହି ଭାବେ କର ସମର୍ଥନ;
'ଜାଣେ ମୁଁ ତାହାଙ୍କୁ; ତାଙ୍କୁ ଦେଖିଥିଲି କାଲି,
ଅଥବା ସେ ଦିନ, ଅବା କିଛିଦିନ ପୂର୍ବେ,
କତିପୟ ବନ୍ଧୁ ଥିଲେ ତାଙ୍କସହ; ତହୁଁ
କରୁଥିଲେ ଦ୍ୟୁତକ୍ରୀଡ଼ା, କହିଲି ଯେ ଭାବେ;
ତହୁଁ ଥିଲେ ପାନମତ୍ତ, କନ୍ଦୁକ ଖେଳାରେ
ତହୁଁ କରିଥିଲେ କଳି ।' ବୁଝିଲିତ ଏବେ,

ସତ୍ୟ-ମୀନ ଧରିବାକୁ ଏ ମାୟା କ୍ଷେପଣୀ; (୧)
ଜ୍ଞାନବୃଦ୍ଧ ବହୁଦର୍ଶୀ ବିଜ୍ଞ ବ୍ୟକ୍ତିଗଣ,
ସହଜ ସରଣୀ ତେଜି ସତ୍ୟର ସନ୍ଧାନେ,
ଏହିଭଳି ବକ୍ରପଥେ କରନ୍ତି ଗମନ;
ତୁମ୍ଭେ ମଧ୍ୟ ଅନୁସରି ଏହି ଉପଦେଶ
ବୁଝିବ ତେସନ ମୋର ତନୟର ଭାବ ।
ବାକ୍ୟ ମୋର ବୁଝିଲ ତ ଏବେ ?

ରେନା— ବୁଝିଲି ମୁଁ,
ପ୍ରଭୁ ।

ପଲୋ— ଯାଅ, ଦେଉଛି ମେଲାଣି ।

ରେନା— ହେଉ, ପ୍ରଭୁ ।

ପଲୋ—ଅଗ୍ରେ, ଦେଖିବ ତାର ଦେଖିବ ସ୍ୱନେତ୍ରେ ।

ରେନା—ଦେଖିବି ମୁଁ ପ୍ରଭୁ ।

ପଲୋ— ନ ଦେବ ତାହାକୁ ବାଧା,
କରୁ ଯଥା ଅଭିରୁଚି ତାର ।

ରେନା — ହେଉ ପ୍ରଭୁ ।

ପଲୋ —ଯାଅ, ଦେଉଛି ମେଲାଣି । (ରେନାଲ୍‌ଡୋର ପ୍ରସ୍ଥାନ)

( ଓଫିଲିଆର ପ୍ରବେଶ )

ଓଫିଲିଆ, କହ
କି ସମ୍ବାଦ ତବ ?

ଓଫି— ପିତା, ପିତା, ଭୟେ ମୁହିଁ
ହୋଇଛି ବିହ୍ୱଳା ।

---

(୧) କ୍ଷେପଣୀ—ଜାଲ ।

ପଲେ— କହ କି ହେଲୁ ତନୟା ?

ଓଫି—ସୀବନେ ବ୍ୟାପୃତା ଯେବେ ଥିଲି ମୋ ପ୍ରକୋଷ୍ଠେ,
ଆସିଲେ ହ୍ୟାମଲେଟ୍‌ ତହିଁ ବିପର୍ଯ୍ୟସ୍ତ ବେଶେ ।
ମୁକ୍ତ ଅଙ୍ଗରକ୍ଷା, ଶିର ଶିରସ୍ତ୍ର ବିହୀନ,
ଅଯତ୍ନ ପାଦତ୍ରାଣ ଧୂଳି ଧୂସରିତ
ଥିଲା ଚୁମ୍ବି ପାଦଗ୍ରନ୍ଥି, ବାତାହତ ରମ୍ଭା—
ପତ୍ରପରି ଥରୁଥିଲା ଜାନୁ ସନ୍ଧି ଦ୍ୱୟ
ନୟନେ ନିର୍ବେଦରେଖା ରହିଥିଲା ଫୁଟି,
ଦେଖି ସେ ଅଦ୍ଭୁତ ମୂର୍ତ୍ତି ପ୍ରତୀତ ହେଲା ମୋର
ଆସିଲେ କି ପ୍ରେତ ପୁରୁ ଦେବାକୁ ବାରତା
ଭୀମହର୍ଷକର ।

ପଲେ— ଉନ୍ମତ୍ତ ତୁମ୍ଭର ପ୍ରେମେ ?

ଓଫି—ଜାଣେ ନାଁ ମୁଁ ପିତା, କିନ୍ତୁ ଦେଖି ତାହା ଭୟେ
ମୁହିଁ ହୋଇଛି ବିହ୍ୱଳା ।

ପଲେ— କହିଲେ ସେ କିସ ?

ଓଫି—ଧରିଲେ ଆକର୍ଷି ଦୃଢ଼େ ମଣିବନ୍ଧ ମୋର,
ଗଲେ ତହୁଁ ଅପସରି ହସ୍ତ ପରିମିତ,
ଦକ୍ଷେତର ଭୁଜ ରଖି ଲଲାଟେ ଏସନ,
ରହିଲେ ଏ ଭାବେ ଚାହିଁ ମୁଖ ପ୍ରତି ମୋର,
ପ୍ରତୀତ ହେଲା ସତେ କି ସେ କରିବେ ଅଙ୍କନ
ମୁଖଛବି । ଏହି ଭାବେ ଗଲା ବହୁକ୍ଷଣ;
ଅବଶେଷେ ବାହୁ ମୋର ହଲାଇ ଅଳପେ,

ହିବାର ଅପଣା ଶିର କରି ବକ୍ରମିତ
ଅଧ ଊର୍ଦ୍ଧ୍ୱେ, ତୋଳିଲେ ଏ ଭଳି ଶ୍ୱାସ ଘୂରୁ,
ମର୍ମନ୍ତୁଦ, ଭାବିଲି ମୁଁ ପଞ୍ଜରାସ୍ଥି ହେଲା
ଭଙ୍ଗ ପରା, ପ୍ରାଣବାୟୁ ହେଲା ବହିର୍ଗତ;
ତହୁଁ କର କରି ବିମୋଚନ ଗଲେ ଗୃହ
ଗ୍ରୀବାଭଙ୍ଗି ଅନାଇ ପଶ୍ଚାତେ, ବିନା ନେତ୍ରେ
କରି ମାର୍ଗ ଅନ୍ୱେଷଣ, ସ୍ଥିର ଭାବେ ଦୃଷ୍ଟି
ରଖି ମୋ ଉପରେ ।

ସଖେ— ଆସ, ଯିବ ମୋ ସହିତ,
ନୃପତିଙ୍କ ଅନ୍ୱେଷଣେ ଯିବା ଏହିକ୍ଷଣି ।
ପ୍ରେମୋନ୍ମାଦ ଏହା; ଷଡରିପୁ ମଧ୍ୟେ କାମ
ଗରିଷ୍ଠ ଅରରୁ, ନିଜ ତେଜେ ନିଜେ ଏହା (୧)
ହୁଅଇ ବିଦଗ୍ଧ, କୋଟରାଗ୍ନି କରେ ଯଥା
ବୃକ୍ଷେ ଭସ୍ମସାତ, ବୋଲଏ ଅନଙ୍ଗ ତେଣୁ
ମଦ-ଜଳ-କଣ୍ଠ ସମ ଦୁର୍ବାର ଏ ରିପୁ
ଘଟାଏ ବିପ୍ଳବ ପଶି ଅକ୍ଷ-ଅବ୍ଜ-ବନେ (୨)
କେତେମତେ, ଅଘଟନ ଘଟନେ ନିପୁଣ ।
ହେଲି ମୁଁ ଦୁଃଖିତ ଅତି ଶୁଣି ଏ ବାରତା;
ଦେଲ କି କର୍କଶ ଗିରେ ବ୍ୟଥା ତା ହୃଦୟେ ?

---

(୧) ଅରରୁ—ରିପୁ ।
(୨) ଅକ୍ଷ—ଇନ୍ଦ୍ରିୟ ।

ଓଫି—ନାହିଁ ପିତା; ଅନୁସରି ଆଦେଶ ତୁମ୍ଭର
ଫେରି ଦେଲି ଦୂରେ ତାର ପ୍ରଣୟ-ଲିପିକା,
ସାକ୍ଷାତେ ନ ହେଲି ସମ୍ମତ ।

ପଲୋ—                    ଅହୋ, ସେହେତୁ
ହୋଇଛି ଉନ୍ମତ୍ତ ସେହୁ, ନକଲି କୃପାଇଁ
ଲକ୍ଷ୍ୟ ଗଢବଧ୍ୟ ତାର ଧୀର ଭାବେ ମୁହିଁ ।
ଭାବଥିଲି କରୁଛି କୌତୁକ କୁଟବୁଦ୍ଧି
ଶାଣିତ କୁଠାରେ ସତୀତ୍ୱ ପାଦପ ତବ
କାଟିବ ସମୂଳେ, ଧିକ ଏ ବିଭ୍ରମ ମୋର ।
ଦୂର-ଦୃଷ୍ଟି-ଦର୍ପେ-ଦୃପ୍ତ ପଳିତ ମସ୍ତକ
ନ ପାରଇ ଚିହ୍ନି ତାର ଅନ୍ତର ପ୍ରତିମା,
ତରୁଣ ନୟନ ତଥା, ନ ପାରଇ ଭେଦ
ସ୍ପଷ୍ଟ ଯବନିକା ଥିଲେ ବିତସ୍ତି ପ୍ରମାଣେ ।
ଚାଲ ଯିବା ରାଜାଙ୍କ ସମ୍ମୁଖରେ, ଜଣାଇବା
ତାଙ୍କୁ ଏ ବାରତା, ରଖିଲେ ଗୋପନେ ନୃପ
ହୋଇବେ ବିମୁଖ ।

(ଉଭୟଙ୍କର ପ୍ରସ୍ଥାନ)



## ଦ୍ୱିତୀୟ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ଗୋଟିଏ ପ୍ରକୋଷ୍ଠ । ]

( ରାଜା, ରାଣୀ, ରୋଜେନ୍‌କ୍ରାନ୍ଜ୍, ଗିଲ୍‌ଡେନ୍‌ଷ୍ଟାର୍ଣ୍ଣ ଏବଂ ଅନୁଚର ବୃନ୍ଦ ])

ରାଜା—ସ୍ୱାଗତ ହେ ରୋଜେନ୍‌କ୍ରାନ୍‌ସ, ଗିଡେନ୍‌ଷ୍ଟାର୍ଣ୍ଣ ପ୍ରିୟ,
ଦର୍ଶନେ ବାସନା ଥିଲା ବଳବତୀ ଅତି
ତୁମ୍ଭ ଦୁଇ ଜଣେ, ପୁଣି ସହସା ସାହାଯ୍ୟ
ଲୋଡ଼ା ହୋଇଲା ତୁମ୍ଭର; ପେଶିଲୁଁ ସଦେଶ-
ବହ ତୁମ୍ଭର ସକାଶେ ତେଣୁ । ଶୁଣିଛ ତ
ହ୍ୟାମ୍‌ଲେଟ୍‌ର ବାରତା, ବିକୃତ ହୋଇଛି
ଶିର, ଗିର ତାର ନାହିଁ ପୂର୍ବପର, ସବୁ
ଯାଇଛି ବଦଳି, ଅନ୍ତର ବାହାର; କେଉଁ
ଦୋଷେ ଘଟିଲା ଏସନ, ନ ପାରଇ ବୁଝି ।
ବିଧୁର ହୋଇଛି ସେହୁ ପିଅର ବିୟୋଗେ
ବିଦିତ ଅଛି ମୁଁ ତାହା, କିନ୍ତୁ ଅନ୍ୟ ହେତୁ
କିବା ଅଛଇ ନିହିତ ଅନାତ୍ମଜ୍ଞାନ ଏ (୧)
ଆତ୍ମ-ବିସ୍ମରଣ ମୂଳେ, ନ ଜାଣଇ କିଛି ।
ଶୈଶବୁଁ ଏକଠେ ଯେଣୁ ହୋଇଛ ପାଳିତ,
ଅବିଦିତ ନାହିଁ କିଛି ମତି ଗତି ତାର,
ତୁମ୍ଭର ନିକଟେ; ତେଣୁ କରୁଛି ମିନତି
ଅବସ୍ଥିତି କିଛିକାଳ କର ମୋର ରାଜ—

---

(୧) ଅନାତ୍ମଜ୍ଞାନ—ଯାନିଷ୍ଟଜନକ ।

ଦରବାରେ । ରଖି ତାକୁ ତୁମ୍ଭରି ଗହଣେ,
କର ଚିତ୍ତ ବିନୋଦନ ଅମୋଦ ପ୍ରମୋଦେ ।
କି ପ୍ରମାଦେ ପଡ଼ି ସେହୁ ହୋଇଛି ଉନ୍ମତ୍ତ,
ଅଗଜ-ଗଜ ସଦୃଶ ବୁଲଇ ନିରତେ (୧)
ଅଗ୍ରଜ-ଅଙ୍ଗଜ, ମୋର ଅଙ୍ଗଜ ପ୍ରଥମ,
ତେଜି ଗୃହ ସୁଖ ପୁଣି ସାମ୍ରାଜ୍ୟ ସମ୍ପଦ,
ନ ପାରଇ ଭେଦ ମୋର ନେତ୍ର ଏ ଲୁହେଲି,
ପ୍ରହେଳୀ-ପ୍ରାକାର-ଦ୍ୱାର କର ଉଦ୍‌ଘାଟନ
ଦେଖାଅ କି ଗୁପ୍ତ ତତ୍ତ୍ୱ ଅଛି ଅନ୍ତଃପୁରେ;
ଫେଡ଼ ମୋ ସଂଶୟ, ଆମୟର ହେତୁ ତାର
କର ନିରୂପଣ, ଅବସର ଅନୁସରି,
ବିଗୃହ ନିଦାନ ।

ରାଣୀ— ବହୁବାର ବେଳନାମ
ଶୁଣିଛି ତା ମୁଖେ, ଅହେ ପ୍ରିୟ ଭଦ୍ରଗଣ,
ଅଟେ ସେହୁ ତୁମ୍ଭ ପ୍ରତି ଅତି ଅନୁରକ୍ତ,
ଦୃଢ଼ ବିଶ୍ୱାସ ମୋହର । ଆମ୍ଭର ଗହଣେ
ବସ୍ତି ବହୁ କିଛିକାଳ କର ଅବସ୍ଥାନ,
ତନୟର ବନ୍ଧୁ ଯେଣୁ ପ୍ରିୟ ବେଳଜନ,
ଭରସା ଆମ୍ଭର ପୁଣି ଏ ବିପତ୍ତିକାଳେ,
ବିପଦର ବନ୍ଧୁ ପିନା ଯଥାର୍ଥ ସୁହୃଦ,

(୧) ଅଗଜ—ଶୈଳଜାତ ।

ନ ଭୁଲିବୁଁ ମନୁ କେବେ ତୁମ୍ଭର ସୌଜନ୍ୟ
ସ୍ୱକୋଶଳ ପ୍ରତିଦାନ ଲଭିବ କର୍ତ୍ତବ୍ୟ ।

ରୋଜେନ୍—ଅସ୍ମଜନେ ଅନୁରୋଧ କିବା ପ୍ରୟୋଜନ,
ପ୍ରସାଦ ଭିଖାରୀ ଅମ୍ଭେ ନରନାଥଙ୍କର,
ଶିରୋଧାର୍ଯ୍ୟ ଅଟେ ସଦା ସ୍ୱମୁଙ୍କ ଆଦେଶ ।

ଗିଲ୍ଡେନ୍—ନତଶିରେ ଶ୍ରୀଚରଣଙ୍କ ପାଳିବୁଁ ଆଦେଶ,
ପଦାମ୍ବୁଜଙ୍କ ଦେହପ୍ରାଣ କଲୁଁ ସମର୍ପଣ,
କି ଆଜ୍ଞା ହେଉଛି ପ୍ରଭୁ କହନ୍ତୁ ବଚନ ।

ରାଜା—ରୋଜେନ୍କାନ୍ସ, ଗିଲ୍ଡେନ୍ଷ୍ଟାର୍ଣ୍ଣ ଘେନ ଧନ୍ୟବାଦ ।

ରାଣୀ—ଗିଲ୍ଡେନ୍ଷ୍ଟାର୍ଣ୍ଣ, ରୋଜେନ୍କାନ୍ସ ଘେନ ଧନ୍ୟବାଦ ।
ରଖ ମୋ ମିନତି ଶୀଘ୍ରଗତି ଯାଅ ଯହିଁ
ଅଛି ମୋର ହୃଦୟ-ପ୍ରସୂନ; ଅହା ନାହିଁ
ଆଉ ପୂର୍ବ ତେଜ ତାର, ଯାଇଛି ମଉଳି ।
ଯାଅ ଅନୁଚର ବୃନ୍ଦ ଦେଖାଅ ବହନ
ବନ୍ଧୁଗଣେ ଅଛି କାହିଁ ତନୟ ମୋହର ।

ଗିଲ୍ଡେନ୍—ଦୟାମୟୀ ମନୋବାଞ୍ଛା କରନ୍ତୁ ପୂରଣ,
ଦଅନ୍ତୁ ସୁମତି ତାଙ୍କୁ ପ୍ରଭୁ ପରମେଶ,
ଲଭନ୍ତୁ ସଂପ୍ରୀତି ସେହୁ ଆମ୍ଭର ଗହଣେ
ଭୁଲି ପୂର୍ବ ଶୋକ ।

ରାଣୀ— ହେଉ ତାହା ।

(ରୋଜେନ୍କାନ୍ସ ଗିଲ୍ଡେନ୍ଷ୍ଟାର୍ଣ୍ଣ ଏବଂ କତିପୟ ଅନୁଚରଙ୍କର ପ୍ରସ୍ଥାନ)

(ପଲୋନିଅସ୍‌ର ପ୍ରବେଶ)

ପଲୋ—ଦିବ୍ୟ ଅବଧାନେ ଅସ୍ତୁ ଅହେ ନରମଣି,
ଶୁଭେ ପ୍ରତ୍ୟାଗତ ଏବେ ବେନି ରାଜଦୂତ
ନରୱେରୁ ସାଷ୍ଟାହୁଁ ।

ରାଜା— ସୁବାର୍ତ୍ତା ଜନକ ତୁମ୍ଭେ
ଅଟ ସର୍ବକାଳେ ।

ପଲୋ— ସତ୍ୟ କି ଏ କଥା ପ୍ରଭୁ ?
କହୁଛି ନିଶ୍ଚିତ କର୍ତ୍ତବ୍ୟ ରହୁଛି ବନ୍ଧା
ଛାମୁଙ୍କ ନିକଟେ, ପରମେଷ୍ଠୀ ପଦେ ଲକ୍ଷ୍ୟ
ଲଗାଇ ସତତ । କି ହେତୁ ଉନ୍ମାଦଗ୍ରସ୍ତ
ହୋଇଛି ହ୍ୟାମ୍‌ଲେଟ୍, ତତ୍ତ୍ୱ ତାର ନିରୂପଣ
କରିଛି ମୁଁ ଏବେ, ହୋଇଲେ ଅନ୍ୟଥା ବୃଥା
ରାଜଦରବାରେ ମୋର ଏ ଉଚ୍ଚ ଆସନ,
ଅଯୋଗ୍ୟ ଧାରଣେ ମୁହିଁ ସଚିବ-ପଦବୀ ।

ରାଜା—କହ ଶୀଘ୍ର ଉଦ୍‌ବିଗ୍ନ ମୁଁ ଶୁଣିବାକୁ ତାହା ।

ପଲୋ—ରାଜଦୂତେ ସ୍ୱଦେଶ-ସମ୍ପୃକ୍ତ ସହିତେ
ରହିଛନ୍ତି ଉଭାହୋଇ ଶୁଦ୍ଧ ପ୍ରସାଦନେ
କରନ୍ତୁ ସନ୍ତୁଷ୍ଟ ଆଗେ ବୁଝନ୍ତୁ ଶ୍ରବଣେ
ସେ ସମ୍ବାଦ ହେଲେ, ଶୁଣାଇବି ଶେଷେ ମୋର
ସନ୍ଦେଶ, ସନ୍ଦେଶ ଯଥା ଭୋଜନାନ୍ତକାଳେ ।

ରାଜା—ସାଦରେ ସମ୍ଭାଷି ତାଙ୍କୁ ଆଣ ମୋ ଛାମୁରେ ।

(ପଲୋନିଅସ୍‌ର ପ୍ରସ୍ଥାନ)

ପ୍ରତ୍ୟେ କାର୍ଟରୁଣ୍ କହଇ ସେ ବ୍ୟାଧି ତତ୍ତ୍ୱ
ବୁଝିଛି ସନ୍ଧାନେ ତନୟର ତବ ।

ରାଣୀ—ପିତାଙ୍କ ବିୟୋଗ ପୁଣି ଅଳ୍ପକାଳ ପରେ
ଉଦ୍ୱାହ ଅମ୍ଭର ଘଟାଇଛି ପ୍ରତେ ହୁଏ
ଏ ଚିତ୍ତ-ବୈକଲ୍ୟ ।

ରାଜା— ଅଚ୍ଛା, ବୁଝିବା ପଶ୍ଚର
ତାକୁ ।

(ଭଲ୍‌ମଣ୍ଡ୍ ଓ କର୍ଣ୍ଣିଲିଅସ୍‌ର ସହିତ ପଲୋନିଅସ୍‌ର ପୁନଃ ପ୍ରବେଶ)

ସ୍ୱାଗତ ହେ ପ୍ରିୟବନ୍ଧୁଗଣ, କହ
ନରଓଏ ନୃପତି ପାଶୁଁ ଆଣିଛ କି ବାର୍ତ୍ତା,
କହ ଭଲ୍‌ମଣ୍ଡ୍ ।

ଭଲ୍‌— ବିନୟ-ସୌଜନ୍ୟ-ମିଶ୍ର
ସୁମିଷ୍ଟ ବଚନେ ପୁଚ୍ଛିଲେ କୁଶଳ ପ୍ରଶ୍ନ
ନରନାଥଙ୍କର । ଶୁଣି ବାର୍ତ୍ତା ଅମ୍ଭ ମୁଖୁଁ,
ଦେଲେ ସେ ଶାସନେ ବ୍ରତୀ ପେଶିଲେ ଆଦେଶ
ଭ୍ରାତୁଷ୍ପୁତ୍ର ସୈନ୍ୟ ଆଶୁ ଦମନ ମାନସେ,
ଭାବିଥିଲେ ରଣସାଜେ ହେଉଛି ସଜ୍ଜିତ
ପୋଲକ-ପ୍ରତ୍ୟରି-ଦର୍ପ ଦଳନ ପ୍ରୟାସେ
ଜାଣିଲେ ଅଚିରେ କିନ୍ତୁ ସନ୍ଧାନେ ନୃପତି
କରୁଥିଲା ସୈନ୍ୟ ଠୁଳ ଛାମୁଙ୍କ ବିପକ୍ଷେ
ହେଲେ ସେ ଦୁଃଖିତ ଅତି ଜାଣିତା ଈହିତ । (୧)

(୧) ଈହିତ—ଚେଷ୍ଟା ।

ବାର୍ଦ୍ଧକ୍ୟ ବ୍ୟାଧିର ଗ୍ରାସେ ହୋଇଣ ପତିତ
ବହୁକାଳ ହୀନବଳ ହୋଇଥିଲେ ସେହୁ,
ସେ ସୁଯୋଗେ ଭ୍ରାତୁଷ୍ପୁତ୍ର ଏଡ଼ିଲା ଶାସନ,
ଜାଣି, ତାକୁ ଉପଯୁକ୍ତ ଶାସ୍ତି ଦେବାପାଇଁ
ଦହୁଲେ ଆଦେଶ ଫେରେ ଆଣିବାକୁ ବାନ୍ଧି
ବନ୍ଦୀରୂପେ ସମ୍ମୁଖେ ତାଙ୍କର; ପାଳିଲା ସେ
ଆଜ୍ଞା; ହୋଇଲା ଅଗତ ଅନତ ଆନନେ
ମ୍ରିୟମାଣ ମନ୍ତ୍ରବଳେ ମହୋରଗ ଯଥା,
ଶୁଣିଲା ଧିକ୍କାର କେତେ ଖୁଲ୍ଲତାତ ମୁଖୁଁ,
କଲା ପଣ ପରଶେଷେ ନ କରିବ ପୁଣି
ସମର-ସମ୍ଭାର କେବେ ଛମୁଙ୍କ ବିପକ୍ଷେ,
ସନ୍ତୁଷ୍ଟ ହୋଇଲେ ତହୁଁ ଖୁଡୁତା ତାହାର,
ତ୍ରିଗୁଣ-ସହସ୍ର-ମୁଦ୍ରା କଲେ ନିର୍ଦ୍ଧାରିତ
ବାର୍ଷିକ ବେତନ ରୂପେ, ବାନ୍ଧଦେଲେ ଶାଢ଼ୀ
ଶିରେ, କରିଲେ ବରଣ ଚମୂପତି ପଦେ,
ଅଭିଯାନେ ଯିବାପାଇଁ ପୋଲକ ବିଜୟେ,
ଅନୀକିନୀ ସହ । ଦେଇ ଏ ବିନୟ-ଲେଖି,
କହିଲେ ବିନୟେ, ଦହୁବେ ନୃମଣି ଆଜ୍ଞା,
ସାମ୍ରାଜ୍ୟର ପଥେ ବାହିନୀ ତାଙ୍କର ଯିବେ
ସମର-ପ୍ରାଙ୍ଗଣେ, ନ କରି ଅଟକ ତାଙ୍କୁ
ମାର୍ଗ ଦେବେ ଛାଡ଼ି ।

ରାଜା— ହୋଇଲୁ ସନ୍ତୁଷ୍ଟ ମୁହିଁ
ଶୁଣି ଏ ସୁବାର୍ତ୍ତା, ଉତ୍କଣ୍ଠା ହୋଇଲା ଦୂର,

ଅବସର ବୁଝି ମୁହିଁ ପଢ଼ିବି ଏ ଲେଖ,
କି ଭାବେ ଉତ୍ତର ଦେବ ଦେଖିବି ବିଚାରି ।
ଭଲେ ସାଧି ରାଜକାର୍ଯ୍ୟ କରିଛ ସମ୍ପନ୍ନ,
ଦେଉଛି ମେଲାଣି ଏବେ ଦେଇ ଧନ୍ୟବାଦ,
ବିଶ୍ରାମ-ଆଗାରେ ସୁଖେ କର ଶ୍ରମ ଦୂର,
ଶର୍ବରୀ ଆଗମେ ସର୍ବେ ହୋଇ ଏକତ୍ରିତ
କରିବା ଭୋଜନ, କର ସ୍ୱପୁରେ ପ୍ରସ୍ଥାନ,

( ଭଲ୍‌ଟିମଣ୍ଡ୍ ଓ କର୍ଣ୍ଣିଲିଅସ୍‌ର ପ୍ରସ୍ଥାନ )

ପଲୋ—ଶୁଭେ ସାଙ୍ଗ ହେଲା ଏବେ ଏହି ରାଜକାର୍ଯ୍ୟ
ନରେଶ୍ୱର, ନରେଶ୍ୱରି ! କି ହେବ କହିଲେ ?
ବୃଥା ବାକ୍ୟବ୍ୟୟ ସିନା, ନିଷ୍ଫଳ ବର୍ଣ୍ଣନା,
କି ବର୍ଣ୍ଣ ଧାରଣ କରେ, ଧରେ କି ଶକତି
ଦିବ୍ୟ ରାଜଦଣ୍ଡ, କିବା କର୍ତ୍ତବ୍ୟ ଲକ୍ଷଣ,
କି ହେତୁ ଦିବସ ଦିବା, ରଜନୀ ରଜନୀ,
କାଳନାମେ କାଳ କିମ୍ପା ହୁଏ ଅଭିହିତ,
ବୃଥା ଆଲୋଚନ ସିନା ବୃଥା କାଳ କ୍ଷୟ
ପଣ୍ଡ ଶ୍ରମ, ବୃଥା ଅହୋରାତ୍ର ନିଷ୍ପେଷଣ ।
ସାର ସୂକ୍ଷ୍ମେ ସୂକ୍ଷ୍ମା ଯେଣୁ ଜ୍ଞାନର ଗରିମା,
ଆଡମ୍ବର ଲୋଡ଼ା ମାତ୍ର ଅଙ୍ଗ ବିବର୍ଦ୍ଧନେ,
ଶୋଭା ବିବର୍ଦ୍ଧନେ ଯଥା ଲୋଡ଼ା ଆଭରଣ,
କହିବି ସଂକ୍ଷେପେ ବାତୁଳ ତନୟ ତବ
କହିଲି ବାତୁଳ, ଯେଣୁ ବାତୁଳ ସେ ଜନ,

କରେ ଯେ ବାତୁଳ ସମ ସଦା ବ୍ୟବହାର ।
ଥାଉ ଏତିକି ଏ କଥା, ନାହିଁ ପ୍ରୟୋଜନ
କହିବା ବିସ୍ତାର ।

ରାଣୀ— ଛାଡ଼ ବୃଥା ଆଡମ୍ବର,
ସରଳ ଭାଷାରେ କହ ଅଛ ଯା ବଦତ ।

ପଲୋ—ନୁହେ ଭଦ୍ରେ ଅସାର ମୋ ଗିର, ନୁହେଁ ତାହା
ଛଳନା ପୂରିତ । ସତ୍ୟ ଏହା ପୁତ୍ର ତବ
ହୋଇଛି ବାତୁଳ, ନାହିଁ ସଂଶୟ ତହିଁରେ
କହିଲି ଅପ୍ରିୟ ସତ୍ୟ କ୍ଷମ ଅପରାଧ,
ମନୋହାରୀ ସତ୍ୟ ବାକ୍ୟ ଦୁର୍ଲଭ ଜଗତେ ।
ବୃଥା ବାକ୍ୟ-ବ୍ୟୟେ ଆଉ ନାହିଁ ପ୍ରୟୋଜନ,
ବାତୁଳ ତନୟ ତବ ସିଦ୍ଧାନ୍ତ ମୋହର,
କାରଣ ବିହୀନେ କାର୍ଯ୍ୟ ନୁହଇ ସମ୍ଭବ,
କି କାରଣେ ଫଳିଲା ଏ ଅପ୍ରାକୃତ ଫଳ,
ସେ ତତ୍ତ୍ୱ ମାର୍ଗଣେ ଏବେ ହେବା ଅଗ୍ରସର,
ଅହେତୁକ ନୁହେଁ ଯେଣୁ ଏ ଚିତ୍ତ ବିକାର ।
ଶୁଣନ୍ତୁ ଏ ବାକ୍ୟ ମୋର ଅବହିତ ଚିତ୍ତେ :
ଅଛି କନ୍ୟାଟିଏ ମୋର—ଅଛି ବର୍ତ୍ତିମାନା
ଯେତେକାଳ ଅଧୀନେ ମୋହର ବର୍ତ୍ତିମାନ
କାଳ କରଇ ପ୍ରୟୋଗ—ଆଦେଶ ବର୍ତ୍ତିନୀ
ସଦା କର୍ତ୍ତବ୍ୟ ନିରତା, ପାଳି ମୋ ଆଦେଶ
ଦେଇଛି ଏ ଲିପି ମୋତେ କରୁଛି ପଠନ

ଶୁଣି ଭଦ୍ରେ ମର୍ମ ତାର ବୁଝନ୍ତୁ ବଗୃର । (ଲିପିକା ପଠନ)
'ହେ ବରବର୍ଣ୍ଣିନି ! ମୋର ହୃଦୟ ଦେବତା,
ରମାଣୀ-କୁଳ-ମଣ୍ଡନା, ଗୃରୁ ଓଫେଲିଆ,
କର କୃପା ଅଙ୍କଅନେ, ଶୁଣ ମୋ ଜଣାଣ'

ରାଣୀ—ଓଫେଲିଆ ପ୍ରତି ତାର ଏହୁ ସମ୍ବୋଧନ ?

ପଲେ—ନରେଶ୍ୱର, ଧୈର୍ଯ୍ୟ ଧରି କରନ୍ତୁ ଶ୍ରବଣ,
କରୁଛି ପଠନ ମୁହିଁ ଯଥାଯଥ ଭାବେ । (ଲିପିକା ପଠନ)
'ସ୍ୱଦପାରେ ଧନ ସୁଧାଂଶୁ-ସଙ୍ଗୀନୀ (୧)
ଶୀତଳ ହୁହନ ପର,
ନତ୍ୟ ବବର୍ତ୍ତିନ— ରତ ବବସ୍ଥାନ
ଅଚଳ ଯେସନ ଗିର;
ସତ୍ୟ ଅଜ ମୃଷା ଦବସ ତମିସ୍ରା
ବେନ ବସ୍ତୁ ଏକାକାର,
ମାତ୍ର ସୁଲୋଚନେ ନ ଭାବ ଗୋ ମନେ
ଅସାର ପ୍ରଣୟ ମୋର ।'

'ପ୍ରିୟେ ଓଫେଲିଆ, ପଦ୍ୟ ରଚନାରେ ମୁଁ ନତାନ୍ତ ଅପଟୁ; ମୋର ହୃଦୟର ବେଦନା ଅତଳ ଓ ଅନନ୍ତ, ଛନ୍ଦାକାରରେ ତାହା ପ୍ରକାଶ କରିବାର ଶକ୍ତି ମୋର ନାହିଁ; କିନ୍ତୁ ମୁଁ ଯେ ତୁମ୍ଭଙ୍କୁ ଅତ୍ୟନ୍ତ

---

(୧) ସୁଧାଂଶୁ-ସଙ୍ଗୀନୀ—ନକ୍ଷତ୍ର

ଭଲ ପାଏଁ, ତୁମ୍ଭେ ଯେ ମୋର ହୃଦୟର ଉପାସ୍ୟ ଦେବତା, ଏହା ବିଶ୍ୱାସ କର । ଇମଧ୍ୟକମିଡ ।

ତୁମ୍ଭର ଚିର ଅନୁଗତ
ହ୍ୟାମ୍‌ଲେଟ୍‌ ।

ଦେଖାଇଛି ଏହି ଲିପି ତନୟା ମୋହର
ଆଜ୍ଞା ବହି ଶିରେ, ପୁଣି କହିଛି ବିସ୍ତାର
ତାର ପ୍ରଣୟ କାହାଣୀ, ଯହିଁ, ଯେଉଁ ଭାବେ,
ଯେ ସମୟେ ହୋଇଥିଲା ସଙ୍ଘଟିତ ତାହା ।
ରାଜା—କି ଭାବେ ପ୍ରଣୟ ସୂତ୍ରେ ହେଲେ ସେ ଆବଦ୍ଧ,
କହ ମୋତେ ଫେଡ଼ି ।
ପଲୋ— କି ଭଳି ଚରିତ୍ର ମୋର
ଜାଣନ୍ତି ରାଜନ ?
ରାଜା— ବିଶ୍ୱସ୍ତ, ସଦ୍‌ବଂଶଜାତ
ବ୍ୟକ୍ତିର ଯେସନ ।
ପଲୋ — ପ୍ରମାଣ କରିବ ତାହା ।
ଦେଖିଲି ମୁଁ ଯେବେ କପୋତ କପୋତୀ ସମ
ତରୁଣୀ ତନୟା ସହ ନୃପତି ଅଙ୍ଗଜ,
କରୁଛନ୍ତି ବସି ସୁଖେ ବିଶ୍ରମ୍ଭ ଆଳାପ,
ବୁଝିଲି ମନୋଜ ତାର ଅଜେୟ ପ୍ରତାପ
ପ୍ରସାରିତ କରଅଛି ଯୁଗଳ ହୃଦୟେ,
ବାନ୍ଧିବାକୁ ବେନି ପ୍ରାଣ ପ୍ରଣୟ ନିଗଡ଼େ,

ଭାବିଲି ରାଜକୁଞ୍ଜରେ ପୁଣି ରାଜେଶ୍ୱରୀ
କି ଭାବିବେ ମନେ, ଜାଣି ଏ ବୃତ୍ତାନ୍ତ ଯଦି
ରହେ ମୂକ ପରି ମୌନ ଭାବେ ମୁହିଁ ଅବା
ବିବେକର ବେକ ମୋଡ଼ି ଦିଏ ବଳିଦାନ
ସ୍ୱାର୍ଥବେଦୀ ପରେ, ଅବା ହୋଇ ଚକ୍ଷୁଷ୍ମାନ
ଅନ୍ଧଜନ ପରି ଯଦି କରେ ଆଚରଣ,
ନୃପଗଣ ପୁଣି ପ୍ରଜା କି ଭାବିବେ ମନେ ?

ବିହିତ ବିଧାନେ ତହୁଁ ବଳାଇଲି ମନ,
କହିଲି ଏସନ ଡାକି ତନୟାକୁ ପାଶେ:
"ରାଜବଂଶ ଅବତଂସ ନୃପତି କୁମାର,
ରୂପେ ଗୁଣେ କୁମାର ପ୍ରତିମ, ଯକ୍ଷପତି
ସମ ସେ ବିଭବେ, କେଉଁ ଗୁଣେ ସରି ତୁହି
ତାଙ୍କ କୁଳେ ? ନିଖର୍ବା ତୁ ବିଧିର ବିଧାନେ,
ମୋହ ମଦେ ଲୋଡ଼ୁଅଛୁ ପ୍ରାଂଶୁ-ଲଭ୍ୟ-ଫଳେ,
ବୃଥା ଏ ପ୍ରୟାସ, ପ୍ରାସ ଲଭିବୁ କେବଳ,
ନ ଜାଣି ପିଚ୍ଛିଳ ପଥେ କଲେ ବିଚରଣ ।"

ଉପଦେଶ ଛଳେ ପୁଣି କହିଲି ତାହାକୁ,
ରହୁ ଅବରୋଧ ମଧ୍ୟେ, ବିବିକ୍ତ ପ୍ରଦେଶେ,
ବିବକ୍ଷୁ କୁମାର ଗତି କରିବ ବାରଣ,
ନ କରିବ ସମ୍ଭାଷଣ ଯୁବରାଜ ସହ,
ନ ଘେନିବ ପ୍ରୀତି ନିଦର୍ଶନ, ଅବା ଯେଉଁ
ପ୍ରେମ ପତ୍ର ଦୂତ ହସ୍ତେ କରିବେ ପ୍ରେରଣ ।

ବହି ମୋ ଆଦେଶ ଶିରେ, ଆଦେଶ ବର୍ତ୍ତିନୀ
ଉପାଂଶୁ ବାସିନୀ ମୋର ହୋଇଲା ତନୁଜା, (୧)
ରାଜପୁତ୍ର ପ୍ରତିହତ ଦେଖି ତାଙ୍କ ଗତି,
ବିଷାଦେ ହୋଇଲେ ମଗ୍ନ, କରିଲେ ଧାରଣ
ଅନଶନ ବ୍ରତ, ଯାମିନୀ ଯାପନ କଲେ
ରହି ଜାଗରେ, ଶରୀର ହୋଇଲା କୃଶ,
ହ୍ରାସ ହେଲା ବଳ, ମସ୍ତିଷ୍କ ବିକାର ତହୁଁ;
ଘଟିଲା ତାଙ୍କର, ଅବତର ଏହି ଭାବେ
ପାଉଛି ବିବର୍ଦ୍ଧି, ଉନ୍ମାଦ ଅବସ୍ଥା ଶେଷେ;
ଲଭିଲେ କୁମାର, ହୋଇଛି ବିକୃତ ତାଙ୍କ
ମତି ଗତି ତେଣୁ, ଦେଖି ଯାହା ଆମ୍ଭେ ସର୍ବେ
କରୁଛୁଁ ଆକ୍ଷେପ ।

ରାଜା— ଭାବୁଛ କି ଏହି ହେତୁ
ତାର ?

ରାଣୀ— ସମ୍ଭବତଃ ହୋଇପାରେ ତାହା ।

ପଲୋ— ପ୍ରଭୁ,
ହୋଇଛି ଅନ୍ୟଥା କେବେ ବଚନ ମୋହର
କହିଛି ସଦମ୍ଭେ ଯେବେ 'ଏହାହିଁ କାରଣ ?'
କହନ୍ତୁ ସୁମରି ।

ରାଜା— ବିଦିତ ନୁହେଁ ମୁଁ ତାହା ।

ପଲୋ— (ମସ୍ତିଷ୍କ ଏବଂ ସ୍କନ୍ଧ ଦେଖାଇ)
ହୋଇଲେ ଅନ୍ୟଥା ପ୍ରଭୁ, ଅଂସ ଦେଶୁ ଶିର

(୧) ଉପାଂଶୁ-ନିର୍ଦ୍ଦିଷ୍ଟ ସ୍ଥାନ ।

କରିବେ ବର୍ଜିତ, ଲଭିଲେ ଘଟନା ସୂତ୍ର,
ଅଣିବ ଓଟାରି ବଳେ ଗୁପ୍ତ ସତ୍ୟ ଧନ;
ଥିଲେ ମଧ୍ୟ ଲୁପ୍ତ ତାହା ବସୁଧା ଗରଭେ ।

ରାଜା—ଅନ୍ୟ କି ଉପାୟେ ଏହା କରିବା ପରୀକ୍ଷା ?

ପଲୋ – ଜାଣନ୍ତି ନରେଶ, କରନ୍ତି ସେ ବେଳେବେଳେ
ବିଚରଣ ବହୁକ୍ଷଣ ସଭାଗୃହ କକ୍ଷେ ।

ରାଣୀ—ବସ୍ତୁତଃ ସେ ବହୁକ୍ଷଣ କରେ ବିଚରଣ ।

ପଲୋ—ସେହିକାଳେ ତନୟାକୁ ଛାଡ଼ ଦେବି ମୋର
ତାଙ୍କର ଗହଣେ, ରହି ପ୍ରଚ୍ଛଦ ପଶ୍ଚାତେ
ଦେଖିବା ଉଭୟେ ମିଳି ମିଳନ ତାଙ୍କର,
ତନୁଜା ପ୍ରଣୟ ପ୍ରାର୍ଥୀ ନୋହିଲେ କୁମାର;
ମତିଭ୍ରଂଶ ହେତୁ ତାହା ନ ହୋଇଲେ ପୁଣି;
ସାମ୍ରାଜ୍ୟ ସଚିବ ପଦ କରି ପରିହାର;
କୃଷୀବଳ ରୂପେ କାଳ କଟାଇବି ମୁହିଁ ।

ରାଜା—କରିବା ପରୀକ୍ଷା ।

ରାଣୀ— ଦେଖ, ସେହି ହତଭାଗ୍ୟ
ଆସଇ କି ଭଲ କରି ଅଧ୍ୟୟନ କରି ।

ପଲୋ—କରନ୍ତୁ ପ୍ରସ୍ଥାନ ଖରେ କରୁଛି ମିନତି,
ରହନ୍ତୁ ଗୁପତେ, ତାଙ୍କ ସହ ବାକ୍ୟାଳାପ
କରିବି ମୁଁ ଏବେ ।

(ରାଜା, ରାଣୀ ଓ ଅନୁଚର-ବୃନ୍ଦଙ୍କ ପ୍ରସ୍ଥାନ)

(ପଢ଼ୁଁ ପଢ଼ୁଁ ହ୍ୟାମଲେଟ୍‌ର ପ୍ରବେଶ)

କ୍ଷମ ଅପରାଧ ମୋର

ପ୍ରଭୁ ହ୍ୟାମ୍‌ଲେଟ୍‌, ମଙ୍ଗଳ ତ ତବ ?

ହ୍ୟାମ୍—                                    ଅଛି ଭଲେ

ପ୍ରଭୁଙ୍କ କୃପାରୁ ।

ପଲୋ—                    ମତେ ଚିହ୍ନୁଛ କି ପ୍ରଭୁ ?

ହ୍ୟାମ୍—ଅତ୍ୟୁତ୍ତମ ରୂପେ, ତୁମ୍ଭେ ଜଣେ ମତ୍ସ୍ୟଜୀବୀ ।

ପଲୋ—ମୁଁ ତାହା ନୁହେଁ ପ୍ରଭୁ ।

ହ୍ୟାମ୍—ତାହା ହେଲେ ତୁମ୍ଭେ ଜଣେ ସତ୍ୟନିଷ୍ଠ ଲୋକ ହେଲେ ଭଲ ହୁଅନ୍ତା ।

ପଲୋ—ସତ୍ୟନିଷ୍ଠ ପ୍ରଭୁ !

ହ୍ୟାମ୍—ହଁ ମହାଭାଗ, ଆଜିକାଲି ଦୁନିଆର ଗତି ଯେପରି, ସେଥିରେ ସତ୍ୟନିଷ୍ଠ ଲୋକ ଦଶହଜାରରେ ଜଣେ ମିଳିବା କଠିନ ।

ପଲୋ—ବଡ଼ ଠିକ କଥା ପ୍ରଭୁ !

ହ୍ୟାମ୍—କାରଣ ସୌର-କର ଲାଗି ଯେତେବେଳେ କୁକ୍କୁରର ମୃତ ଦେହରେ କୃମି କୀଟ ଜାତ ହେଉଅଛି, ସ୍ୱୟଂ ସବିତା ଯେତେବେଳେ ପୂତି ଗନ୍ଧ ବିଶିଷ୍ଟ ମାଂସ ସ୍ପର୍ଶ କରୁ ଅଛନ୍ତି-- ତୁମ୍ଭର ଗୋଟିଏ କନ୍ୟା ଅଛି ନା ?

ପଲୋ—ଅଛି, ପ୍ରଭୁ !

ହ୍ୟାମ୍—ତାକୁ ସୌର-କର ସ୍ପର୍ଶ କରିବାକୁ ଦେବ ନାହିଁ, ଦୈବାନୁଗ୍ରହରୁ ଗର୍ଭ-ସଞ୍ଚାର ହୋଇଥାଏ; କିନ୍ତୁ ତୁମ୍ଭର କନ୍ୟାର ଯଦି ଗୋଟାଏ କିଛି ହୋଇପଡ଼େ, ତା' ହେଲେ ସେଟା ଭଲ ହେବନାହିଁ । ଦେଖ, ବନ୍ଧୁ, ସାବଧାନ ।

ପଲ୍ଲେ—(ସ୍ୱଗତ) କଣ ପଢୁଛ କହ ଦେଖି ? ମୋ କଥାଟା ଠିକ କି ନା ? ସବୁବେଳେ ମୋର କନ୍ୟାର କଥା, ଅଥଚ ପ୍ରଥମେ ମୋତେ ଚିହ୍ନି ପାରିଲ ନାହିଁ, କହିଲ ମୁଁ ଜଣେ ଧୀବର, ବହୁଦୂର ଗୃଲି ଗଲାଣି, ଅନେକ ତଳକୁ ଖସି ଗଲାଣି; ବାସ୍ତବିକ ମୋର ଯୌବନାବସ୍ଥାରେ ମୁଁ ମଧ୍ୟ ପ୍ରେମ ପାଇଁ ଅନେକ ଯାତନା କ୍ଳେଶ କରିଥିଲି—ପ୍ରାୟ ଏ ରକମ କହିଲେ ଚଳେ । ମୁଁ ଫେର ତାର ସହିତ ଆଳାପ କରିବି । (ପ୍ରକାଶ୍ୟେ) କଣ ପଢୁଛ ପ୍ରଭୁ ?

ହ୍ୟାମ୍—ଶବ୍ଦ, ଶବ୍ଦ, ଶବ୍ଦ ।

ପଲ୍ଲେ—କେଉଁ ବିଷୟ ପ୍ରଭୁ ?

ହ୍ୟାମ୍—କାହା ମଧ୍ୟରେ ?

ପଲ୍ଲେ—ମୁଁ କହୁଛି କେଉଁ ବିଷୟ ପଢୁଛ ।

ହ୍ୟାମ୍—କେବଳ ଦୁଷ୍ଟା ମହାଶୟ: କାରଣ, ସେହି ବ୍ୟଙ୍ଗକର୍ତ୍ତା କୌତୁକ କରି ଏଥିରେ ଲେଖିଛି, ବୃଦ୍ଧ ଲୋକଙ୍କର ଶ୍ମଶ୍ରୁ ପଳିତ, ଆନନ ବଳିଯୁକ୍ତ, ନୟନରୁ ଗାଢ଼, ଅଠାଳିଆ ଶ୍ଳେଷ୍ମା ନିର୍ଗତ ହୁଏ, ଏବଂ ସେମାନଙ୍କର ବୁଦ୍ଧି ଗହ୍ୱରରେ ବିଲୁପ୍ତ ହୋଇଯାଏ, ଜାନୁଦ୍ୱୟ ଅତିଶୟ ଦୁର୍ବଳ ହୋଇପଡ଼େ । ଏ କଥାଗୁଡ଼ାକ ଯଦିଚ ମୁଁ ଖୁବ୍ ବିଶ୍ୱାସ କରେ ଏବଂ ଏଥିରେ ମୋର ଲବମାତ୍ର ସଂଶୟ ନାହିଁ, ତଥାପି, ଏପରି ଲେଖିବାଟା ଆଦୌ ସମୀଚୀନ ବୋଲି ମୁଁ ମନେ କରେ ନା, କାରଣ ମୋ ପରି ତୁମ୍ଭେ ମଧ୍ୟ ଦନ୍ତେ କୁଳୀର ସଦୃଶ ପଛଘୁଞ୍ଚା ଦେଇ ପାରିଲେ ବାର୍ଦ୍ଧକ୍ୟରେ ଉପନୀତ ହେବ ।

ପଲୋ—(ସ୍ୱଗତ) ଏହା ପାଗଳର ପ୍ରଳାପ ହେଲେ ମଧ୍ୟ ଏଥିରେ ଗୋଟାଏ ପଦ୍ଧତି ଅଛି । (ପ୍ରକାଶ୍ୟେ) ନିର୍ମୁକ୍ତ ସ୍ଥାନକୁ ବୁଲିବାକୁ ଯିବ କି ପ୍ରଭୁ ?

ହ୍ୟାମ୍—ଯମାଳୟକୁ ?

ପଲୋ—ବାସ୍ତବିକ୍ ତାହା ବାୟୁମୁକ୍ତ । (ସ୍ୱଗତ) ସମୟ ସମୟରେ ତାର ଉତ୍ତରଗୁଡ଼ାକ କେଡ଼େ ସୁସଙ୍ଗତ ହୋଇଥାଏ ! ପାଗଳମାନେ ବେଳେ ବେଳେ ଏପରି ସାରଗର୍ଭକ ସୁନ୍ଦର କଥା କହନ୍ତି ଯେ ମତିମାନ୍ ଲୋକ ତାଙ୍କ ନିକଟରେ ପରାସ୍ତ ହୋଇଯିବେ । ବର୍ତ୍ତମାନ ମୁଁ ତାହା ପାଖରୁ ଅନ୍ତରିତ ହୋଇ ମୋର କନ୍ୟାର ସହିତ ତାର ମିଳନର ଗୋଟିଏ ବ୍ୟବସ୍ଥା କରିବି । ( ପ୍ରକାଶ୍ୟେ ) ପୂଜନୀୟ ମହାଭାଗ, ବିନୀତ ଭାବରେ ତୁମ୍ଭ ନିକଟରୁ ମୁଁ ମେଲାଣି ମାଗୁଛି ।

ହ୍ୟାମ୍—ମହାଶୟ, ଏହା ଛଡ଼ା ଅନ୍ୟ କୌଣସି ବସ୍ତୁ ଏତେ ସହଜରେ ମୋଠାରୁ ପାଇ ପାରିବ ନାହିଁ । ପ୍ରାଣର କଥା ସ୍ୱତନ୍ତ୍ର, ତାହା ଅଦାନ ପ୍ରଦାନର ଗଣ୍ଡିର ବାହାରେ ।

ପଲୋ—ତେବେ ବିଦାୟ ନେଉଛି, ପ୍ରଭୁ ।

ହ୍ୟାମ୍—ଏହି ନିର୍ବୋଧ ବୁଢ଼ାଗୁଡ଼ାକ ବୃଥାରେ ବକ୍ ବକ୍ କରି ମଣିଷକୁ ବିରକ୍ତ କରିଥାନ୍ତି !

( ରୋଜେନ୍‌କ୍ରାନ୍‌ସ ଓ ଗିଲ୍‌ଡେନ୍ ଷ୍ଟାର୍ଣ୍ଣର ପ୍ରବେଶ )

ପଲୋ—ତୁମ୍ଭେମାନେ ଯୁବରାଜ ହ୍ୟାମ୍‌ଲେଟ୍‌ଙ୍କୁ ଖୋଜଅଛ—ସେ ସେଇଠି ଅଛନ୍ତି ।

ରୋଜେନ୍—(ପଲୋନିଅସ୍ ପ୍ରତି) ଭଗବାନ ଆପଣଙ୍କୁ ରକ୍ଷା କରନ୍ତୁ ମହାଶୟ ।

( ପଲୋନିଅସ୍‌ର ପ୍ରସ୍ଥାନ )

ଗିଲ୍‌ଡେନ—ପୂଜନୀୟ ମହାଭାଗ ।

ରୋଜେନ୍—ପ୍ରିୟତମ ଯୁବରାଜ !

ହ୍ୟାମ୍—ମୋର ପ୍ରିୟତମ ବନ୍ଧୁଦ୍ୱୟ । ଗିଲଡେନ ଷ୍ଟାର୍ଣ୍ଣ, ତୁମେ କିପରି ଅଛ ? ତୁମେ ରୋଜେନ୍‌କ୍ରାନ୍‌ସ । ମୋର ପ୍ରିୟ ସାଥୀଦ୍ୱୟ, ତୁମ୍ଭେମାନେ କିପରି ଅଛ ?

ରୋଜେନ୍—ଏକ ରକମ ସୁଖେ ଦୁଃଖେ ସମୟ କଟି ଯାଉଅଛି ।

ଗିଲ୍‌ଡେନ—ସୁଖର ଆତିଶଯ୍ୟ ନ ଥିବାରୁ ଅମ୍ଭେମାନେ ସୁଖୀ, ସୌଭାଗ୍ୟ ଶିଖରରେ ବସି ନ ଥିବାରୁ ଆମ୍ଭମାନଙ୍କର ପତନର ଆଶଙ୍କା ଅଳ୍ପ ।

ହ୍ୟାମ୍—ତାର ପାଦଦେଶରେ ବସି ନାହଁନ୍ତି ?

ରୋଜେନ୍—ଉପରେ ନୁହେଁ କି ତଳେ ବି ନୁହେଁ ।

ହ୍ୟାମ୍—ଖବର କଣ ?

ରୋଜେନ୍—ଏଇ ପୃଥିବୀଟା ସତ୍ୟରେ ଅତଯାତ ହେଉଅଛି । ତା ଛଡା ଅନ୍ୟ କିଛି ଖବର ନାହିଁ ପ୍ରଭୁ ।

ହ୍ୟାମ୍—ତାହାହେଲେ ତ ପ୍ରଳୟ ସନ୍ନିକଟ ବୋଲିବାକୁ ହେବ, କିନ୍ତୁ ତୁମର ଖବରଟା ଯେ ଠିକ୍ ନୁହେଁ । ମୁଁ ତୁମ୍ଭଙ୍କୁ ଦୁଇଟା ଗୋଟାଏ କଥା ପଚାରିବି: ଭାଗ୍ୟ ଏତେ ପ୍ରତିକୂଳା ହୋଇ ତୁମ୍ଭମାନଙ୍କୁ କାହିଁକି ଏ କାରାଗାରକୁ ପଠାଇ ଦେଇଛି ?

ଗିଲ୍‌ଡେନ୍—କାରାଗାର ଯୁବରାଜ !

ହ୍ୟାମ୍—ଡେନ୍‌ମାର୍କ ଗୋଟାଏ କାରାଗାର ।

ରୋଜେନ୍—ତା'ହେଲେ ଏହି ପୃଥିବୀ ମଧ୍ୟ ଗୋଟାଏ କାରାଗାର ।

ହ୍ୟାମ୍—ଗୋଟାଏ ସୁବୃହତ୍ କାରାଗାର; ଏହା ଭିତରେ ଅନେକ ପାଗଳାଖାନା, କ୍ଷୁଦ୍ର କ୍ଷୁଦ୍ର କୋଠରି ଓ ଅନ୍ଧକାରମୟ ଗୁମ୍ଫା ଅଛି; ତନ୍ମଧ୍ୟରେ ଡେନମାର୍କ ଅତି ନିକୃଷ୍ଟ ଶ୍ରେଣୀର ଗୋଟିଏ ଗହ୍ୱର ।

ରୋଜେନ୍—ଆମ୍ଭେମାନେ କିନ୍ତୁ ତାହା ମନେ କରୁ ନା ଯୁବରାଜ ।

ହ୍ୟାମ୍—ତାହାହେଲେ ତୁମ୍ଭମାନଙ୍କ ପକ୍ଷରେ ଏହା ସେପରି କିଛି ନୁହେଁ; କାରଣ, ପୃଥିବୀରେ କୌଣସି ବସ୍ତୁ 'ସୁ' କିମ୍ବା 'କୁ' ନୁହେଁ, ଯେ ଯେପରି ଭାବେ ତା ପକ୍ଷରେ ତଦ୍ରୂପ ପ୍ରତିଭାତ ହୁଏ; ମୋ ପକ୍ଷରେ ଏହା ଗୋଟିଏ କାରାଗାର ।

ରୋଜେନ୍—ତା' ହେଲେ ତୁମ୍ଭର ଦୁର୍ବାର ଲାଳସା ଏହାକୁ କାରାଗାରରେ ପରିଣତ କରିଛି । ସେଥିପାଇଁ ତୁମ୍ଭ ପକ୍ଷରେ ଏହା ନିତାନ୍ତ ସଙ୍କୀର୍ଣ୍ଣ ବୋଲି ମନେ ହେଉଛି ।

ହ୍ୟାମ୍—ମୁଁ ନିତାନ୍ତ କ୍ଷୁଦ୍ର ପରିସର ମଧ୍ୟରେ ରହି ମୁଦ୍ଧା ନିଜକୁ ସସାଗରା ପୃଥିବୀର ଅଧୀଶ୍ୱର ବୋଲି ମନେ କରିପାରେ; କିନ୍ତୁ ମୋତେ ଦୁଃସ୍ୱପ୍ନ ଗୁଡ଼ାକ ବ୍ୟତିବ୍ୟସ୍ତ କରି ଦେଉଅଛି ।

ଗିଲ୍‌ଡେନ୍—ସେହି ସ୍ୱପ୍ନଗୁଡ଼ାକ ତ ତୁମ୍ଭର ଉଚ୍ଚାକାଙ୍‌କ୍ଷାର ପରିପୋଷକ ଅହାର୍ଯ୍ୟ ସାମଗ୍ରୀ; ବସ୍ତୁତଃ ଯେଉଁମାନେ ଲାଳସାର ବଶବର୍ତ୍ତୀ, ସେମାନେ ସ୍ୱପ୍ନର ଛାୟା ଅବଲମ୍ବନ କରି ଜୀବନ ଧାରଣ କରନ୍ତି ।

ହ୍ୟାମ୍—ସ୍ୱପ୍ନ ତ କହେଇ ଗୋଟାଏ ଅବାସ୍ତବ ପଦାର୍ଥ ।

ରୋଜେନ୍—ତାହା ଠିକ୍; ଜଲସାକୁ ମୁଁ ଏପରି ଗୋଟାଏ ଅସ୍ଥାୟୀ ଓ ଅବାସ୍ତବ ପଦାର୍ଥ ବୋଲି ମନେ କରେ ଯେ, ତାହା ଛାୟାର ଛାୟା ଛଡ଼ା ଆଉ କଛି ନୁହେଁ ।

ହ୍ୟାମ୍—ତା'ହେଲେ ଭକ୍ଷୁକମାନେହିଁ ଜଗତର ସାର ବସ୍ତୁ ଏବଂ ଚକ୍ରବର୍ତ୍ତୀ ଓ ଜଗଦ୍ବରେଣ୍ୟ ବୀରମଣ୍ଡଳୀ ସେମାନଙ୍କର ଛାୟା ବୋଲି କହିବାକୁ ହେବ । ରାଜ-ଦରବାରକୁ ଯିବ କି ? କାରଣ ମୁଁ ଆଉ ତୁମ୍ଭମାନଙ୍କ ସହିତ ଯୁକ୍ତି କରି ପାରିବ ନାହିଁ ।

ରୋଜେନ୍ }
ଗିଲ୍ଡେନ୍ } —ଅମ୍ଭେମାନେ ତୁମ୍ଭର ଅନୁଗୃସୀ ହେବୁଁ ।

ହ୍ୟାମ୍—ନା, ତାହା ହେବ ନାହିଁ; ମୁଁ ତୁମ୍ଭମାନଙ୍କୁ ମୋର ଅନୁଚର ଦଳଭୁକ୍ତ କରିବ ନାହିଁ । କାରଣ, ପ୍ରକୃତ କଥା କହିବାକୁ ଗଲେ ମୁଁ ସର୍ବଦା ମୋର ଅନୁଚରମାନଙ୍କ ଦ୍ୱାରା ଏପରି ଭାବରେ ପରିବୃତ ହୋଇ ରହିଅଛି ଯେ ମୋର କଛି ସ୍ୱାତନ୍ତ୍ୟ ଥିବାପରି ବୋଧ ହେଉନାହିଁ । ବର୍ତ୍ତମାନ ମୁଁ ତୁମ୍ଭମାନଙ୍କୁ ବନ୍ଧୁଭାବରେ ପଚାରୁଅଛି, କିହେତୁ ତୁମ୍ଭେମାନେ ଏଲ୍‌ସିନୋରକୁ ଆସିଅଛ ?

ରୋଜେନ୍—ତୁମ୍ଭର ସହିତ ସାକ୍ଷାତ କରିବାକୁ, ଯୁବରାଜ; ଅନ୍ୟ କଛି କାରଣ ନାହିଁ ।

ହ୍ୟାମ୍—ମୁଁ ଏତେଦୂର ନିଃସ୍ୱ ହୋଇ ପଡଛି ଯେ ଧନ୍ୟବାଦ ଦେବାର ଶକ୍ତି ମଧ୍ୟ ମୋର ନାହିଁ । ତଥାପି ଧନ୍ୟବାଦ ଦେଉଛି,

ଯଦଚ ତାହାର ଜଡ଼ାକର ମୂଲ୍ୟ ନାହିଁ । ଅଚ୍ଛା ସତ କର କହ ତ ତୁମ୍ଭର ନିଜର ଖୋଲପଣ ଇଚ୍ଛାରେ ଅସିଛ, ନା ତୁମ୍ଭମାନଙ୍କୁ ଅସିବାପାଇଁ ଅନୁରୋଧ କରା ହୋଇଥିଲା ? କିଛି ଗୋପନ କରନାହିଁ, ସତ କଥା କହି ପକାଅ ।

ଗିଲ୍‌ଡେନ୍—କଣ କହିବୁଁ ଯୁବରାଜ ?

ହ୍ୟାମ୍—କାହିଁକି ଯାହା ମନକୁ ଅସେ; ଯାହା ପଚ୍ଚାରିଲି ତାହାର ଉତ୍ତର । ତୁମ୍ଭମାନଙ୍କୁ ଅସିବା ପାଇଁ ଅନୁରୋଧ କରା ହୋଇଥିଲା; ତୁମ୍ଭମାନଙ୍କର ମୁଖଛବି ମୋର ପ୍ରଶ୍ନର ଉତ୍ତର ବେଶ କହି ଦେଉଛି, ତୁମ୍ଭମାନଙ୍କର ସରଳ ପ୍ରକୃତି ତାହା ଗୋପନ କରିବାକୁ ଅକ୍ଷମ । ମୁଁ ଜାଣେ ସଦାଶୟ ରାଜା ଓ ରାଣୀ ତୁମ୍ଭମାନଙ୍କୁ ଅସିବା ପାଇଁ ଅନୁରୋଧ କରିଥିଲେ ।

ରୋଜେନ୍—କି ଉଦ୍ଦେଶ୍ୟରେ ଯୁବରାଜ ?

ହ୍ୟାମ୍—ସେଟା ସିନା ତୁମ୍ଭଙ୍କୁ ଜଣା, ମୁଁ କହିବି କିପରି ? ଦେଖ, ଅମ୍ଭେମାନେ ଅବାଲ୍ୟରୁ ଏକଜେ ଲାଳିତ ପାଳିତ ହୋଇଥିବାରୁ କହିଦିନୁ ଅମ୍ଭମାନଙ୍କ ମଧ୍ୟରେ ଗୋଟାଏ ଘନିଷ୍ଠ ବନ୍ଧୁତା ଅଛି । ଅମ୍ଭେମାନେ ପରସ୍ପର ସହିତ ବହୁକାଳରୁ ସ୍ନେହସୂତ୍ରରେ ଅବଦ୍ଧ, ଏହିସବୁ କାରଣରୁ ଏବଂ ଅମ୍ଭମାନଙ୍କ ମଧ୍ୟରେ ଅନ୍ୟ ଯେଉଁ ପବିତ୍ର ବନ୍ଧନ ଅଛି, ତାହାର ବଳରେ ମୁଁ ତୁମ୍ଭମାନଙ୍କୁ ଅନୁରୋଧ କରୁଅଛି, ମୋତେ ସରଳ ସତ୍ୟ ଭାଷାରେ କହ, ତୁମ୍ଭମାନଙ୍କୁ ଅସିବାପାଇଁ ଅନୁରୋଧ କରା ହୋଇଥିଲା କି ନାହିଁ ?

ବେଲ୍ଜେନ୍—(ଗିଲ୍ଡେନ୍ ଷ୍ଟାର୍ଣ୍ଣଙ୍କୁ ଅନ୍ତରାଳକୁ ଡାକି ନେଇ) କଣ କହୁଛ ?

ହ୍ୟାମ୍—(ସ୍ୱଗତ) ମୋ ଆଖିରେ ତୁମ୍ଭେମାନେ ଧୂଳି ଦେଇ ପାରିବ ନାହିଁ, ତୁମ୍ଭେମାନେ ଯେତେବେଳେ ଅନ୍ତରାଳରେ କଥୋପକଥନ କରୁଅଛ, ତହିଁରୁ ମୁଁ ବେଶ ବୁଝି ପାରୁଅଛି ଯେ ତୁମ୍ଭେମାନେ ମୋଠାରେ କିଛି ଗୋପନ ରଖିବାକୁ ଇଚ୍ଛାକର । ( ପ୍ରକାଶ୍ୟେ ) ତୁମ୍ଭମାନଙ୍କର ବାସ୍ତବିକ୍ ମୋ ପ୍ରତି ଯଦି ସ୍ନେହ ଥାଏ, ତାହା ହେଲେ ପ୍ରକୃତ କଥା କହିଦିଅ ।

ଗିଲ୍ଡେନ୍—ଆମ୍ଭମାନଙ୍କୁ ଆସିବା ପାଇଁ ଅନୁରୋଧ କରା ହୋଇଥିଲା ।

ହ୍ୟାମ୍—କାହିଁକି, ତାର କାରଣ ବର୍ତ୍ତମାନ ମୁଁ କହୁଛି; ତା'ହେଲେ ତୁମ୍ଭେମାନେ ବିଶ୍ୱାସଘାତୀ ହେବ ନାହିଁ, କିମ୍ବା ରାଜା ରାଣୀଙ୍କ ନିକଟରେ ଯେଉଁ ବିଷୟ ଗୋପନ ରଖିବାକୁ ଅଙ୍ଗୀକାର କରିଅଛ, ତହିଁରୁ ମଧ୍ୟ ଭ୍ରଷ୍ଟ ହେବ ନାହିଁ । ମୁଁ କେତେକ ଦିନ ହେଲା, କେ ଜାଣି କାହିଁକି, ଆମୋଦ, ପ୍ରମୋଦ, କ୍ରୀଡ଼ା, ବ୍ୟାୟାମାଦି ତ୍ୟାଗ କରିଛି, ଏବଂ ଏପରି ଗୋଟାଏ ନୈରାଶ୍ୟ ମୋର ମନକୁ ଅଧିକାର କରିଛି ଯେ ଏହି ସୁଶ୍ୟାମଳା ଧରଣୀ ମୋତେ ଊଷର ମରୁଭୂମି ତୁଲ୍ୟ ପ୍ରତୀୟମାନ ହେଉଅଛି; ପୃଥିବୀର ଆବରଣ ସ୍ୱରୂପ ଏହି ବାୟୁମଣ୍ଡଳ, ହୈମକର-ଉଦ୍ଭାସିତ ଚନ୍ଦ୍ରାତପ-ସନ୍ନିଭ ଅନନ୍ତ ନକ୍ଷତ୍ରମଣ୍ଡଳ କେବଳ ପୁଞ୍ଜୀଭୂତ ପୂତି-ଗନ୍ଧ-ବିଶିଷ୍ଟ ବାଷ୍ପର ସମଷ୍ଟି ବ୍ୟତୀତ ଆଉ କିଛି ମନେ ହେଉ ନାହିଁ । ଏହି ମାନବ, ବିଶ୍ୱସ୍ରଷ୍ଟାଙ୍କର ଅଦ୍ଭୁତ ସୃଷ୍ଟି କୌଶଳର କି ଚମତ୍କାର ନିଦର୍ଶନ ! ଜ୍ଞାନରେ କି

ମହାନ୍ ! ଅସୀମ ଗୁଣରାଜିର କି ସୁଦୃଢ଼ ଆଧାର ! ଗଠନ କି ସୌଷ୍ଠବପୂର୍ଣ୍ଣ ! ଗତିବିଧି କି ମନୋହର ! କାର୍ଯ୍ୟକଳାପ ଓ ବୁଦ୍ଧି ବୃତ୍ତି କି ଦେବୋପମ ! ଜଗତର ଅନନ୍ତ ସୌନ୍ଦର୍ଯ୍ୟାବଳୀର କି ଅପୂର୍ବ ଲୀଳା-ଭୂମି ! ପ୍ରାଣୀ-ଜଗତର ସର୍ବଶ୍ରେଷ୍ଠ ଅଳଙ୍କାର ! ଅଥଚ ଜଗତର ସାର-ମତ୍ତ୍ୱ ଏହି ମାନବ, ମୋର ନୟନରଞ୍ଜକ ନୁହେଁ; କମନୀୟ-କାନ୍ତି-ବିଶିଷ୍ଟା କାମିନୀ ମଧ୍ୟ ମୋର ଚିତ୍ତ ଆକର୍ଷଣ କରିବାକୁ ଅକ୍ଷମ ! ତୁମ୍ଭମାନଙ୍କର ସ୍ମିତ ହାସ୍ୟ ମୋର କଥାର ପୋଷକତା କରୁଅଛି ବୋଲି ମନେ ହୁଏ ।

ରୋଜେନ୍—ଯୁବରାଜ, ମୋର ମନରେ ସେପରି କିଛି ଭାବ ନାହିଁ ।

ହ୍ୟାମ୍—ତାହେଲେ ମୁଁ ଯେତେବେଳେ କହିଲି "ମାନବ ମୋର ନୟନ-ରଞ୍ଜକ ନୁହେଁ" ତୁମ୍ଭେ ହସିଲ କାହିଁକି ?

ରୋଜେନ୍—ଯୁବରାଜ, ତୁମ୍ଭର ଯଦି ଜନପ୍ରୀତି ନ ଥାଏ, ତାହାହେଲେ ଅଭିନେତାମାନେ ତୁମ୍ଭଠାରୁ କିପରି ସମାଦର ଲାଭ କରିବେ, ଏହା ଭାବି ମୁଁ ହସିଲି; ଆମ୍ଭେମାନେ ସେମାନଙ୍କୁ ରାସ୍ତାରେ ଦେଖି ଆସିଲୁଁ । ସେମାନେ ତୁମ୍ଭର ଚିତ୍ତବିନୋଦନ ନିମିତ୍ତ ଏଠାକୁ ଆସୁଅଛନ୍ତି ।

ହ୍ୟାମ୍—ଯେଉଁ ଅଭିନେତା ରାଜାଙ୍କର ଅଭିନୟ ଦେଖାଇବ ସେ ତଦ୍ରୂପ ସମାଦର ଲାଭ କରିବ; ଶୂର ତାର ଶୌର୍ଯ୍ୟ ପ୍ରଦର୍ଶନ କରିବାର ସୁଯୋଗ ପାଇବ, ପ୍ରେମିକ ତାର କରୁଣ ପ୍ରେମ ରସର ଅଭିନୟ ଦେଖାଇ ସମୁଚିତ ପୁରସ୍କାର ପ୍ରାପ୍ତ ହେବ; ଅମର୍ଷୀ ରୋଷ-କଷାୟିତ ନେତ୍ରରେ ନିର୍ବିଘ୍ନେ ତାର ଅଭିନୟ ସମାପ୍ତ କରିବ;

ବିଦୂଷକ ହାସ୍ୟ-ତରଙ୍ଗରେ ରସିକର ଚିତ୍ତ-ବେଳା ପ୍ଲାବିତ କରିବ ଏବଂ ପ୍ରେମିକା ତାର ପ୍ରେମଗାଥା ନାଃଣଙ୍କ ଚିତ୍ତରେ ଛନ୍ଦାକାରରେ ଗାନ କରିବ, ତହିଁରେ ଯଦି କିଛି ତ୍ରୁଟି ଲକ୍ଷିତ ହୁଏ, ତାହା ହେଲେ ସେଠା ଅମିତାକ୍ଷର ଛନ୍ଦର ତ୍ରୁଟି ବୋଲି କହିବାକୁ ହେବ । ସେମାନେ କେଉଁଠିକାର ଅଭିନେତା ?

ବ୍ରେଜେନ୍—ସେମାନେ ସହରର ଶୋକାତ୍ମକ ନାଟକର ଅଭିନେତା, ସେମାନଙ୍କର ଅଭିନୟ ଦେଖି ତୁମ୍ଭେ ସର୍ବଦା ଆନନ୍ଦ ଅନୁଭବ କରୁଥିଲ ।

ହ୍ୟାମ୍—ସେମାନେ ସହର ଛାଡ଼ି ଏପରି ପର୍ଯ୍ୟଟନ କରୁଅଛନ୍ତି କାହିଁକି ? ସହରରେ ରହିଲେ ତ ସେମାନଙ୍କର ଅର୍ଥ ଓ ସୁଖ୍ୟାତି ଅର୍ଜନ ପକ୍ଷରେ ସୁବିଧା ହୁଅନ୍ତା ।

ବ୍ରେଜେନ୍—ମୁଁ ମନେ କରୁଛି ସମ୍ପ୍ରତି ଯେଉଁ ନୂତନ ନିୟମ ପ୍ରଚଳିତ ହୋଇଅଛି ତଦ୍ୱାରା ସେମାନଙ୍କର ସହରରେ ଅଭିନୟ ଦେଖାଇବାର ରହିତ କରା ହୋଇଅଛି ।

ହ୍ୟାମ୍—ମୁଁ ଯେତେବେଳେ ସହରରେ ଥିଲି ସେ ସମୟରେ ଲୋକେ ଯେପରି ସେମାନଙ୍କୁ ସମାଦର କରୁଥିଲେ, ବର୍ତ୍ତମାନ ମଧ୍ୟ କ'ଣ ସେହିପରି କରନ୍ତି ? ସେମାନଙ୍କର କଣ ସେହିପରି ପ୍ରତିଷ୍ଠା ଅଛି ?

ବ୍ରେଜେନ୍—ନା, ଲୋକମାନଙ୍କର ଆଜି ସେପରି ଆଗ୍ରହ ନାହିଁ ।

ହ୍ୟାମ୍—କାହିଁକି ଏପରି ହେଲା ? ସେମାନଙ୍କର ଅଭିନୟ କଣ ଆଜି ପୂର୍ବପରି ଚିତ୍ତାକର୍ଷକ ନୁହେଁ ?

ରୋଜେନ୍—ସେମାନଙ୍କର ଅଭିନୟ ପୂର୍ବବତ୍ ଅକ୍ଷୁଣ୍ଣ ରହିଛି, କିନ୍ତୁ ଦଳେ ଅର୍ଭକ (୧) ଅଭିନେତାଙ୍କ ସୃଷ୍ଟି ହୋଇଅଛି ଯେଉଁମାନେ ତାର ସ୍ୱରରେ ଚିତ୍କାର କରି ରଙ୍ଗମଞ୍ଚକୁ ଫଟାଇ ଦେଉଅଛନ୍ତି ଏବଂ ଶ୍ରୋତୃବର୍ଗ ମଧ୍ୟ ସେମାନଙ୍କର ଅଭିନୟରେ ପ୍ରୀତ ହୋଇ କରତାଳି ଧ୍ୱନିରେ ନାଟ୍ୟଶାଳାକୁ ବିକମ୍ପିତ କରୁ ଅଛନ୍ତି; ଏହି ଅର୍ଭକମାନେହିଁ ବର୍ତ୍ତମାନ ରଙ୍ଗମଞ୍ଚର ଅଭିନେତା ଏବଂ ସେମାନେ ପ୍ରବୀଣ ଓ ବୟସ୍କ ଅଭିନେତାମାନଙ୍କୁ ଏପରି ବିଦ୍ରୂପ କରୁଅଛନ୍ତି ଯେ ସେମାନେ ଭୟରେ ଆଉ ରଙ୍ଗାଳୟକୁ ଆସୁ ନାହାନ୍ତି ।

ହ୍ୟାମ୍—କଣ, ସେମାନେ ଅର୍ଭକ ? ସେମାନଙ୍କର ଗଠନକର୍ତ୍ତା କିଏ ? କିଏ ସେମାନଙ୍କର ବ୍ୟୟ ନିର୍ବାହ କରେ ? ସେମାନଙ୍କର କଣ୍ଠ ବିକୃତ ହେବା ପରେ ଆଉ କଣ ସେମାନେ ଅଭିନେତାର କାର୍ଯ୍ୟ କରିବେ ନାହିଁ ? ସେମାନେ ବୟଃପ୍ରାପ୍ତ ହେଲେ ଜୀବିକା ଉପାର୍ଜନର ଅନ୍ୟ କୌଣସି ପ୍ରକୃଷ୍ଟ ପନ୍ଥା ଅଭାବରୁ ଯଦି ସାଧାରଣ ଅଭିନେତା ଶ୍ରେଣୀଭୁକ୍ତ ହୁଅନ୍ତି, ସେତେବେଳେ ଯେଉଁ ନାଟ୍ୟକାରମାନେ ବର୍ତ୍ତମାନ ସେମାନଙ୍କୁ କୁଭାଷା ଶିଖାଇ ସେମାନଙ୍କ ମୁଖରେ ସମବ୍ୟବସାୟୀଙ୍କର ଏପରି କୁତ୍ସା ଘୋଷଣା କରାଉ ଅଛନ୍ତି, ସେମାନଙ୍କ ପ୍ରତି ଏହି ଶିଶୁ ଅଭିନେତା-ମାନଙ୍କର କିଭଳି ଭାବ ଜାତ ହେବ ?

---

(୧) ଅର୍ଭକ—ଶିଶୁ ।

ଗ୍ରେଞ୍ଜେନ୍—ବାସ୍ତବିକ ଉଭୟ ପକ୍ଷରେ ଯଥେଷ୍ଟ ଦୋଷ ଅଛି ଏବଂ ସମାଜ ମଧ୍ୟ ସେମାନଙ୍କୁ ଏପରି କନ୍ଦଳରେ ପ୍ରବୃତ୍ତ ହେବାପାଇଁ ଉତ୍ତେଜିତ କରୁଅଛି । ବସ୍ତୁତଃ କିଛିକାଳ ଏପରି ହେଲା ଯେ ରଙ୍ଗମଞ୍ଚର କର୍ତ୍ତୃପକ୍ଷମାନେ ନାଟକର ଦୃଶ୍ୟାବଳୀ ମଧ୍ୟରେ ପ୍ରବୀଣ ଅଭିନେତାମାନଙ୍କ ବିରୁଦ୍ଧରେ ବିଦ୍ରୂପାତ୍ମକ ବିଷୟ ନଥିଲେ ନାଟ୍ୟକାରମାନଙ୍କୁ ଅର୍ଥ ଦେଉ ନ ଥିଲେ ।

ହ୍ୟାମ୍—ଏହା କଣ ସମ୍ଭବ ?

ଗିଲ୍ଡେନ୍—ଏହି ସମ୍ପର୍କରେ ଅନେକ ବାଦାନୁବାଦ ହୋଇଯାଇଛି ।

ହ୍ୟାମ୍—ଏହି ଅର୍ଭକମାନେ କଣ ଜୟୀ ହୋଇ ଅଛନ୍ତି ?

ଗ୍ରେଞ୍ଜେନ୍—ମହାଭାଗ, ସେମାନେ ପରିଣତ ଅଭିନେତାମାନଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କରି ଅଛନ୍ତି ।

ହ୍ୟାମ୍—ଏହା ବିଚିତ୍ର ନୁହେଁ; ମୋର ପିତୃବ୍ୟ ବର୍ତ୍ତମାନ ଡେନ୍‌ମାର୍କର ଭୂପତି, ମୋର ପିତାଙ୍କର ଜୀବିତାବସ୍ଥାରେ ଯେଉଁମାନେ ତାଙ୍କୁ ଦେଖିଲେ ମୁଖଭଙ୍ଗି କରୁଥିଲେ ସେମାନେ ବର୍ତ୍ତମାନ ତାଙ୍କର ଖଣ୍ଡିଏ କ୍ଷୁଦ୍ର ପ୍ରତିକୃତି ପାଇଁ କୋଡିଏ, ଚାଳିଶ, ପଞ୍ଚାଶ ଓ ଏକଶତ ମୁଦ୍ରା ଦେଉଅଛନ୍ତି । ଏହା କ'ଣ ଅନୈସର୍ଗିକ ନୁହେଁ ? ଦର୍ଶନର କି ସାଧ୍ୟ ଏହାର ତତ୍ତ୍ୱ ନିରୂପଣ କରିବ ।

(ଅନ୍ତରାଳରେ ଦୁନ୍ଦୁଭି ଧ୍ୱନି)

ଗିଲ୍ଡେନ୍—ଏଇ, ଅଭିନେତାଦଳ ଆସୁଛନ୍ତି ।

ହ୍ୟାମ୍—ଭଦ୍ର ମହୋଦୟଗଣ, ମୁଁ ତୁମ୍ଭମାନଙ୍କୁ ଏଲ୍‌ସିନୋରକୁ ଆସିବାପାଇଁ ସାଦରେ ଅଭ୍ୟର୍ଥନା କରୁଛି । ତୁମ୍ଭମାନଙ୍କର

କର ପ୍ରସାରିତ କର, ମୋ ସହିତ କର ମର୍ଦ୍ଦନ କରିବାକୁ କୁଣ୍ଠିତ ହୁଅ ନାହିଁ; ଦେଶର ପ୍ରଥା ଅନୁଯାୟୀ ଭଦ୍ରତା ଦେଖାଇବା ଅଭ୍ୟର୍ଥନାର ପ୍ରଧାନ ଅଙ୍ଗ; କର ମର୍ଦ୍ଦନ କରି ତୁମ୍ଭମାନଙ୍କ ପ୍ରତି ସଦାଗ୍ରହ ପ୍ରଦର୍ଶନ କରିବାକୁ ଦିଅ, ନଚେତ୍ ଯେତେବେଳେ ଅଭିନେତୃଦଳ ଆସିବେ ସେମାନଙ୍କର କର-ମର୍ଦ୍ଦନ କରି ଅଭ୍ୟର୍ଥନା କଲେ ତୁମ୍ଭେମାନେ ହୁଏତ ଭାବିପାର ତୁମ୍ଭମାନଙ୍କ ଅପେକ୍ଷା ସେମାନଙ୍କ ପ୍ରତି ମୁଁ ଅଧିକ ସମାଦର ଦେଖାଇଲି । ତୁମ୍ଭମାନଙ୍କୁ ମୁଁ ଅଭ୍ୟର୍ଥନା କରୁଛି; କିନ୍ତୁ ମୋର ପିତୃବ୍ୟ-ପିତା ଓ ପିତୃବ୍ୟ-ପତ୍ନୀ-ମାତା ପ୍ରତାରିତ ହୋଇଅଛନ୍ତି ।

ଗିଲ୍‌ଡେନ୍—କେଉଁ ବିଷୟରେ ଯୁବରାଜ ?

ହ୍ୟାମ୍—ମୋର ମାନସିକ ବିଚ୍ୟୁତି କେବଳ ମାତ୍ର ଉତ୍ତର-ଉତ୍ତର-ପଶ୍ଚିମ କୋଣରେ ବିକଳ ହୋଇଅଛି; ବାୟୁ ଯେତେବେଳେ ଦକ୍ଷିଣଦିଗରୁ ପ୍ରବାହିତ ହୁଏ ଶ୍ୟେନ ଓ ସାରସର ପାର୍ଥକ୍ୟ ମୁଁ ବେଶ୍ ବୁଝିପାରେ ।

(ପଲୋନିଅସ୍‌ର ପୁନଃ ପ୍ରବେଶ)

ପଲୋ—ଭଦ୍ରମହୋଦୟଗଣ, ତୁମ୍ଭମାନଙ୍କର କୁଶଳ ହେଉ ।

ହ୍ୟାମ୍—ଶୁଣ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣ, ରୋଜେନ୍‌କ୍ରାନ୍ସ ତୁମ୍ଭେ ମଧ୍ୟ ଶୁଣ, ପ୍ରତ୍ୟେକେ ବେଶ୍ ମନ ଦେଇ ଶୁଣ, ଅଦୂରେ ଏହି ଯେ ବିଶାଳ ଶିଶୁଟିକୁ ଦେଖୁଅଛ, ଏପର୍ଯ୍ୟନ୍ତ ତାହାର ଦୁଧଦାନ୍ତ ବାହାରି ନାହିଁ ।

ସ୍ୱେଡେନ୍—ବୋଧହୁଏ ଦ୍ୱିତୀୟବାର ସେ ଏ ଅବସ୍ଥାରେ ଉପନୀତ ହୋଇଅଛି, ସେହି ହେତୁରୁ ଅତିଶୟ ବାର୍ଦ୍ଧକ୍ୟାବସ୍ଥାକୁ ଲୋକେ ଦ୍ୱିତୀୟ ଶୈଶବାବସ୍ଥା କହୁଥାନ୍ତି ।

ହ୍ୟାମ୍—ମୁଁ ପୂର୍ବରୁ କହୁଛି ସେ ଆମ୍ଭମାନଙ୍କୁ ଅଭିନେତାମାନଙ୍କ ବିଷୟରେ କହିବାକୁ ଆସୁଅଛି, ମୋର କଥାକୁ ଭଲକରି ଲକ୍ଷ୍ୟ କର । ତୁମ୍ଭେ ଯାହା କହିଲ ତାହା ଠିକ୍, ସୋମବାରଦିନ ପ୍ରାତଃକାଳରେ ଏହା ଘଟିଥିଲା ।

ପଲୋ—ଯୁବରାଜ, ତୁମ୍ଭଙ୍କୁ ଗୋଟାଏ ସମ୍ବାଦ ଦେବାକୁ ଅସିଅଛି ।

ହ୍ୟାମ୍—ମନ୍ତ୍ରିବର, ତୁମ୍ଭଙ୍କୁ ଗୋଟାଏ ସମ୍ବାଦ ଦେବାର ଅଛି । ରୋସିଅସ୍ ଯେତେବେଳେ ରୋମର (୧) ଅଭିନେତା ଥିଲେ,—

ପଲୋ—ଅଭିନେତାମାନେ ଏଠାକୁ ଅସୁଅଛନ୍ତି ଯୁବରାଜ ।

ହ୍ୟାମ୍—ଅସମ୍ଭବ, ଅସମ୍ଭବ ।

ପଲୋ—ମୁଁ ଶପଥ କରି କହୁଛି,—

ହ୍ୟାମ୍—ପ୍ରତ୍ୟେକ ଅଭିନେତା ଗ୍ରସଭ ବାହନରେ ଅସିଥିଲେ,—

ପଲୋ—ସେମାନେ ବିଶ୍ୱ-ବିଶ୍ରୁତ ଅଭିନେତା; ବିୟୋଗାନ୍ତକ, ହାସ୍ୟୋଦ୍ଦୀପକ, ଐତିହାସିକ, ପଲ୍ଲୀବିଷୟକ, ଗ୍ରାମ୍ୟ ହାସ୍ୟୋଦ୍ଦୀପକ, ଗ୍ରାମ୍ୟଐତିହାସିକ, ଐତିହାସିକ-ବିୟୋଗାନ୍ତକ, ଗ୍ରାମ୍ୟ-ଐତିହାସିକ-ହାସ୍ୟୋଦ୍ଦୀପକ-ବିୟୋଗାନ୍ତକ, ଉତ୍କୃଷ୍ଟ, ଅପକୃଷ୍ଟ ସର୍ବପ୍ରକାର ନାଟକ ଅଭିନୟ କରିବାରେ ସେମାନେ ସିଦ୍ଧହସ୍ତ ।

ହ୍ୟାମ୍—ଅହେ ଇଜରାଏଲ୍‌ର ବିଚାରକ ଜେପ୍‌ଥା ତୁମ୍ଭେ କି ଅମୂଲ୍ୟନିଧିର ଅଧିକାରୀ ଥିଲ ।

---

(୧) ରୋସିଅସ୍—ରୋମର ସୁନାମଖ୍ୟାତ ପ୍ରହସନ ନାଟକର ଅଭିନେତା ।

ପଲେ—ତାଙ୍କର କ ଅମ୍ଳାନନିଧି ଥିଲା, ଯୁବରାଜ ?

ହ୍ୟାମ୍—କାହିଁକି,

କନ୍ୟାଟିଏ ଥିଲା　　　　　　　　　　　ଅପୂର୍ବ ସୁନ୍ଦରୀ

ନ ଥିଲା ତ ଆଉ କିଛି,

ଛଳେ ନ ଦେଖିଲେ　　　　　　　　　　　ମଣିଷ ଥିଲେ ସୁଖ

ପାରୁ ନ ଥିଲେ ମରୁଛି ।

ପଲେ—(ସ୍ୱଗତ) ଅଦ୍ୟାପି ମୋର କନ୍ୟାର କଥା କହୁଛି ।

ହ୍ୟାମ୍—ବୃଦ୍ଧ ଜେପ୍‌ଥା, ମୋର କଥା ଠିକ୍ କି ନା ?

ପଲେ—ଯୁବରାଜ, ତୁମ୍ଭେ ଯଦି ମୋତେ ଜେପ୍‌ଥା ବୋଲି ମନେ କରୁଛ, ତାହେଲେ ତାଙ୍କ ପରି ମୋର ଗୋଟିଏ କନ୍ୟା ଅଛି ଏବଂ ମୁଁ ତାକୁ ଅତ୍ୟନ୍ତ ଭଲ ପାଏଁ ।

ହ୍ୟାମ୍—ନା, ସେ ଠିକ୍ ହେଲା ନାହିଁ ।

ପଲେ—ତା ହେଲେ କଣ ଠିକ୍ ହେବ, ଯୁବରାଜ ?

ହ୍ୟାମ୍—କାହିଁକି,

ଭାଗ୍ୟ ବଶେ ପୁଣି　　　　　　　　　　　ବିଧିର ବିଧାନେ

ଘଟୁଛି ଘଟିଲା ଯାହା,

ଧର୍ମ ସଙ୍ଗୀତର ପ୍ରଥମ ପଦ୍ୟ ପାଠ କଲେ ତୁମ୍ଭେ ଏ ବିଷୟରେ ଅଧିକ ଜାଣି ପାରିବ । ଏଇ ଦେଖ ବନ୍ଧୁ ଉପସ୍ଥିତ ହେଲେଣି, ମୋର କଥା ଏଇଠାରେ ବନ୍ଦ କରିବାକୁ ହେବ ।

(ଚାରି ପାଞ୍ଚଜଣ ଅଭିନେତାଙ୍କ ପ୍ରବେଶ)

ଆଇ ନେତୃବୃନ୍ଦ, ମୁଁ ତୁମ୍ଭମାନଙ୍କୁ ଅଭିବାଦନ କରୁଛି, ସମସ୍ତଙ୍କୁ ମୋର ଅଭିବାଦନ ଜଣାଉଅଛି । ମୁଁ ତୁମ୍ଭମାନଙ୍କୁ

ସୁସ୍ଥ ଶରୀରରେ ଦେଖି ଆନନ୍ଦିତ ହେଲି । ସ୍ୱାଗତ ପ୍ରିୟ ବନ୍ଧୁବର୍ଗ ! ଏଇ ଯେ ମୋର ପୁରାତନ ବନ୍ଧୁ ! ବହୁକାଳ ପରେ ତୁମ୍ଭ ସହିତ ସାକ୍ଷାତ ହେଉଛି, ତୁମ୍ଭର ମୁଖ ତ ଶ୍ମଶ୍ରୁ-ବିମଣ୍ଡିତ ହେଲାଣି, ମୋତେ କଣ ଦାଢ଼ିରେ ପରାସ୍ତ କରିବାକୁ ଡେନ୍‌ମାର୍କକୁ ଆସିଅଛ ? ଏ କଣ ମୋର ସେହି ଯୁବତୀ ମହିଳା ! ଗତବାର ଅପେକ୍ଷା ଏଥର ଦେଖୁଛି ତୁମ୍ଭେ ଗଗନର ଅଜ ଅନ୍ତତଃ ଆଠ ଦଶ ଇଞ୍ଚ ନିକଟବର୍ତ୍ତିନୀ ହେଲଣି; ଆଶାକରେ ଅବ୍ୟବହାର୍ଯ୍ୟ ମୁଦ୍ରାପରି ତୁମ୍ଭର କଣ୍ଠସ୍ୱର ନିତାନ୍ତ ବିକୃତ ହୋଇନାହିଁ । ଅଭିନେତୃବୃନ୍ଦ, ତୁମ୍ଭମାନଙ୍କୁ ମୁଁ ଅଭ୍ୟର୍ଥନା କରୁଅଛି । ବର୍ତ୍ତମାନ ଯେ କୌଣସି ଗୋଟାଏ ଅଭିନୟ ଦେଖାଇ ଆମ୍ଭମାନଙ୍କ ଚିତ୍ତବିନୋଦନ କର, ଗୋଟାଏ ବକ୍ତୃତା ଶୁଣାଅ, ତୁମ୍ଭେମାନେ କିପରି ପଟୁତା ଅର୍ଜ୍ଜନ କରିଅଛ ତାର ପରିଚୟ ଦିଅ, ଗୋଟାଏ ହୃଦୟସ୍ପର୍ଶୀ ବକ୍ତୃତା ଶୁଣାଅ ।

ପ୍ରଥମ ଅଭିନେତା—କେଉଁ ବକ୍ତୃତା ପ୍ରଭୁ ?

ହ୍ୟାମ୍—ଥରେ ଗୋଟାଏ ବକ୍ତୃତା ତୁମ୍ଭଠାରୁ ଶୁଣିଥିଲି ବଟେ ତାହା କେବେହେଁ ଅଭିନୀତ ହୋଇ ନାହିଁ, କିମ୍ବା ଯଦି ହୋଇଥାଏ ଥରକରୁ ବେଶୀ ହୋଇ ନଥିବ; କାରଣ ଉକ୍ତ ଅଭିନୟ ଜନସାଧାରଣଙ୍କର ରୁଚି-ସଙ୍ଗତ ହୋଇ ନ ଥିଲା, ଯଦିଓ ମୋର ଏବଂ ମୋଠାରୁ ଯେଉଁମାନଙ୍କ ଜ୍ଞାନ ଓ ରୁଚି ଅଧିକ ମାର୍ଜ୍ଜିତ ଓ ଉନ୍ନତ, ସେମାନଙ୍କ ମତରେ ତାହା ଅତି ସୁନ୍ଦର ନାଟକ ବୋଲି ବିବେଚିତ ହୋଇଥିଲା । ତାହାର ଦୃଶ୍ୟାବଳୀ ଅତି

ସୁନ୍ଦର ଭାବରେ ସଜ୍ଜିତ ହୋଇଥିଲା ଏବଂ ବିଷୟଗୁଡ଼ିକ ଯଥାଯଥ ଭାବରେ ଓ ଦକ୍ଷତାର ସହିତ ରଚିତ ହୋଇଥିଲା । କୌଣସି ବ୍ୟକ୍ତିଙ୍କ ମୁଖରୁ ମୁଁ ଶୁଣିଛି ଯେ ଉକ୍ତ ରଚନାରେ ଅଶ୍ଳୀଳତାର ଗନ୍ଧ ନ ଥିଲା ଏବଂ ଭାଷା ଏପରି ପ୍ରାଞ୍ଜଳ ଓ ସରଳ ହୋଇଥିଲା ଯେ ତହିଁରେ ଅସ୍ୱାଭାବିକତାର ସନ୍ଦେହ ମାତ୍ର ନ ଥିଲା, ଭାବ ଓ ଭାଷାର ଅତି ମଧୁର ଓ ମନୋହର ସମାବେଶ ହୋଇଥିଲା, ଆଡ଼ମ୍ବର ଅପେକ୍ଷା ନୈସର୍ଗିକ ସୌନ୍ଦର୍ଯ୍ୟ ଅଧିକ ମାତ୍ରାରେ ଥିଲା । ନାଟକର ଗୋଟିଏ ବକ୍ତୃତା ଇନିଅସ୍ (୧) ଡାଇଡୋ (୨) ଙ୍କୁ ଯେଉଁ ବିବୃତ୍ତି ଶୁଣାଇ ଥିଲେ ତାହା ମୋତେ ବଡ଼ ଭଲ (୩) ଲାଗିଥିଲା, ତନ୍ମଧ୍ୟରେ ବିଶେଷତଃ ପ୍ରାୟାମଙ୍କ ବଧ ସମ୍ବନ୍ଧରେ ସେ ଯେଉଁ ବର୍ଣ୍ଣନା କରିଥିଲେ ତାହା ମୋତେ ବଡ଼ ମନୋହର ବୋଧ ହୋଇଥିଲା । ତୁମ୍ଭର ଯଦି ସ୍ମରଣ ଥାଏ ଏହିଠାରୁ ଆରମ୍ଭ କରି ଦେବେଁ, ମୁଁ ଚେଷ୍ଟା କରି ଦେଖେଁ—

'ବର୍ବର ବର୍ମା ପାଇରସ ଶାର୍ଦ୍ଦୂଳ ସଙ୍କାଶ'—(୪) ନା ଠିକ ହେଲା ନାହିଁ—ପାଇରସ ଠାରୁ ଆରମ୍ଭ କରିବାକୁ ହେବ—

---

(୧) ଇନିଅସ—ଏ ଜଣେ ଟ୍ରୋଜେନ୍ ପକ୍ଷୀୟ ବଡ଼ ଯୋଦ୍ଧା ଥିଲେ । ରୋମର ପ୍ରସିଦ୍ଧ କବି ଭର୍ଜିଲଙ୍କର ଇନିଡ୍ ନାମକ ଗ୍ରନ୍ଥରେ ଏହାଙ୍କର ବିଷୟ ବର୍ଣ୍ଣିତ ହୋଇଅଛି ।

(୨) ଡାଇଡୋ—ଏ ଆଫ୍ରିକାର ଉତ୍ତରପଶ୍ଚିମସ୍ଥ କାର୍ଥେଜ ରାଜ୍ୟର ରାଣୀ ଥିଲେ । ଇନିଅସ୍ ସହିତ ଏହାଙ୍କର ପ୍ରଣୟୋପାଖ୍ୟାନ ଇନିଡ୍ ଗ୍ରନ୍ଥରେ ବର୍ଣ୍ଣିତ ହୋଇଅଛି ।

(୩ ଓ ୪) ପ୍ରାୟାମ ଏସିଆ ମାଇନରର ଟ୍ରୟ ନାମକ ପ୍ରସିଦ୍ଧ ନଗରର ରାଜା ଥିଲେ । ଗ୍ରୀକ୍ ଯୋଦ୍ଧା ପାଇରସଙ୍କ ଦ୍ୱାରା ଏହାଙ୍କ ହତ୍ୟା ବିଷୟ ଗ୍ରୀକ୍ କବି ହୋମରଙ୍କ ଇଲିଅଡ୍ ନାମକ ମହାକାବ୍ୟରେ ବର୍ଣ୍ଣିତ ଅଛି ।

"କ୍ରୂର-ମତି ପାଇରସ, କନ୍ଦିସ୍ଥା ନରତ,
ଅସିତ-ଶଟଂଶ୍ର ସମ ଅସିତ-କଞ୍ଚୁକେ
ଅଘୋର ଥିଲା ସେ ଗାଢ଼ ଅଙ୍କ ଯେବେ ଲୁଚି
ନଶାଭ୍ରଗେ, ବ୍ୟାଜ-ବାଜି-ଗର୍ଭେ; ଭୟାବହ (*)
ମସିବର୍ଣ୍ଣ ତାର, କରିଛି ରଞ୍ଜିତ ଏବେ
ଭୀଷଣ ଲୋହିତେ, କେତେ ଜନକ ଜନନୀ
ସୁତ ସୁତା ରକ୍ତେ ବୋଳି ହୋଇଛି ଶରୀର,
ଦିଶଇ ସେ ଅଖଣ୍ଡିତ ରକ୍ତ-ପିଣ୍ଡ ସମ;
ନଶାର ତାମସ ଭେଦ ଉଠେ ଅଗ୍ନିଶିଖା
ଅନମ୍ବର ହେତେ, ହୁହୁସ୍ୱରେ ଗୃହସବୁ
ଯାଉଅଛି ଜଳି, ପୁରମାର୍ଗ ହୋଇଅଛି
ଆଲୋକେ ପୂରିତ, ସେ ସୁଯୋଗେ ଶତ୍ରୁସୈନ୍ୟ
ମାତି ରଣମଦେ, ନୃଶଂସ ସଂହାର-ଲୀଳା
କରଛନ୍ତି ସୃଷ୍ଟି; ଭସ୍ମ ହୋଇ ବହ୍ନି ତେଜେ,
ଜଳ କୋଧାନଳେ, ଅଦ୍ରବ ଶୋଣିତେ ତନୁ
ବୋଳି ସେ ପାମର, ଜ୍ୱଳନ୍ତ ଆରକ୍ତ ନେତ୍ର
ଖୋଜଇ ଅଧୀରେ, ତାହାଁ ଛନ୍ତି ପିତାମହ
ନୃପତି ପ୍ରାୟାମ ।"
ଏହିଠାରୁ ତୁମ୍ଭେ ଆରମ୍ଭ କର ।

ପଲୋ—ଯୁବରାଜ; ଅତି ମନୋହର ଭାବରେ ତୁମ୍ଭେ ଏହାର ଆବୃତ୍ତି
କଲ; ତୁମ୍ଭର ଉଚ୍ଚାରଣ ଅତି ସୁନ୍ଦର ।

---

*) ବ୍ୟାଜ-ବାଜ—କୃତ୍ରିମ ଘୋଡ଼ା—( କାଠଘୋଡ଼ା )

ପ୍ର; ଅଭି— "ତାଙ୍କୁ ଭେଟିଲା ସତ୍ବରେ
ଦେଖିଲା ଅକ୍ଷମ ବୃଦ୍ଧ ଅସି ସଞ୍ଚାଳନେ,
କ୍ଷୀଣବଳ ବାହୁ ଆଉ ନ ପାରଇ ତୋଳି
ପୁରାତନ କରବାଳ; ରହଇ ଅଟଳ
ଯହିଁ ପଡ଼ଇ ସେ ଅସି, ନ ମାନେ ଶାସନ ।
ଏମନ ଅଥର୍ବ ବୃଦ୍ଧ ପ୍ରାୟାମ ସହିତ
ପ୍ରବୃତ୍ତ ହୋଇଲା ଯୁଦ୍ଧେ ଯୁବା ପାଇରସ;
କ୍ରୋଧେ କରିଲା ପ୍ରହାର, ମାତ୍ର ହେଲା ଲକ୍ଷ୍ୟ-
ଭ୍ରଷ୍ଟ, କିନ୍ତୁ ତଳେ ବୃଦ୍ଧ ପଡ଼ିଲେ କମ୍ପିତ
ଅସି-ସଞ୍ଚାଳିତ-ବାୟୁ ବାଜି ତାଙ୍କ ଅଙ୍ଗେ ।
ଦେଖି ଏ ଦୁର୍ଦ୍ଦଶା, ଅହା ! ନରନାଥଙ୍କର;
ହୋଇଲା ଅଧୀର ଶୋକେ ଇଲିୟମ୍ ନଗରୀ (୧)
(ପତି-ପ୍ରାଣା ସତୀ କେବେ ପାରେ କି ସମ୍ଭାଳି
ଦେଖି ପତିର କଷ୍ଟ ?) ନ ପାରିଲା ରହି
ଆଉ ଉଚ୍ଚେ ତୋଳି ଶିର, ଭେଟିବ ଅମ୍ବରେ
ଖସି ପଡ଼ିଲା ଶିଖରୁଁ ଅଗ୍ନିମୟ ଚୂଳ
ଦୁର୍ଗ-ପାଦ-ମୂଳେ; ସ୍ତବ୍ଧ ହେଲା ପାଇରସ,
କର୍ଣ୍ଣ ହୋଇଲା ବଧିର, ଶୁଣି ସେ ଅରାବ,

---

(୧) ଇଲିୟମ୍—ଏହାର ଅନ୍ୟନାମ ଟ୍ରଏ । ଏଠାରେ ଗ୍ରୀକ୍ ମାନଙ୍କର ସହିତ ଟ୍ରୋଜେନ୍‌ମାନଙ୍କର ଦଶବର୍ଷବ୍ୟାପୀ ଯୁଦ୍ଧ ହୋଇଥିଲା । ଉକ୍ତ ଯୁଦ୍ଧ ହୋମରଙ୍କ ଇଲିଅଡ୍ ନାମକ ମହାକାବ୍ୟରେ ବର୍ଣ୍ଣିତ ଅଛି । ଖ୍ରୀ: ପୂ: ୧୧୮୪ ଅବ୍ଦରେ ଗ୍ରୀକ୍‌ମାନଙ୍କ ସହିତ ସମ୍ମୁଖରେ ଏହାର ପତନ ହୋଇଥିଲା ।

(୨) ଆଶୁଗତ—ବାୟୁ ।

ବୃଦ୍ଧ-ଶୁଭ୍ର-ଶିରେ ଅସି ନ ପାରିଲ ହାଣି,
ପଡ଼ୁଁ ପଡ଼ୁଁ ଉର୍ଦ୍ଧ୍ୱ ଦେଶେ ରହିଲ ଅଟକି,
ଚିତ୍ରାର୍ପିତ ଘାତକ ସଦୃଶ, ଅସି ହସ୍ତେ
ଦୁରାତ୍ମାର ଉଚ୍ଚ ହୋଇ ରହିଲା ସେ ସ୍ଥଳେ,
ନ ପାରିଲ ସାଧି ଦାଜ ପଣ ଏ ସମାଜେ ।
ଜାଗନ୍ତି ସକଳେ ଏବେ, ଘୋର ବାତ୍ୟା ପୂର୍ବେ,
ପ୍ରକୃତି ପ୍ରଶାନ୍ତ ମୂର୍ତ୍ତି କରଇ ଧାରଣ,
ମଣ୍ଡଳେ ରହଇ ନଭେ ଜଳଦ ପଟଳ,
ଅଶ୍ୱଗଛ ଗଛ ଭଳି ରହଇ ନିସ୍ପନ୍ଦ,
ନିସ୍ତବ୍ଧ ହୁଅଇ ଧନ୍ୟ ପଥ ଗତପ୍ରାଣା,
ପ୍ରଗାଢ଼ ପ୍ରସୁପ୍ତି, ତହୁଁ ଭଙ୍ଗି ପାଏ ଖେଚର,
ଖେଳଇ ଚପଳା ରଙ୍ଗେ ଶବଳି ଅମ୍ବର,
ଅଶନି ନିର୍ଘୋଷେ କମ୍ପେ ମେଦିନୀ ଗଗନ;
ତାଦୃଶ ଦୁର୍ବୃତ୍ତ ରହି ମୌନଭାବେ କ୍ଷଣେ,
ପ୍ରତିହିଂସାନଳେ ଜଳି, ଦ୍ୱିଗୁଣ ଉତ୍ସାହେ,
ହୁହୁଙ୍କାର ରଢ଼ି ଛାଡ଼ି, କାମୁଡ଼ି ଅଧର,
ପ୍ରହାରିଲା ଅସି ରୋଷେ ପ୍ରାଯ୍ୟୁମ ମସ୍ତକେ,
ଅକରୁଣ, ବୃଦ୍ଧ ପ୍ରତି ନ ବହି କରୁଣା ।
ଛି ଛି ଭାଗ୍ୟଦେବ ତୁମ୍ଭ କି କଲ୍ପ ରେ ଅଛି ?
କେଉଁ ଦୋଷେ ନରବରେ କରି ପରିହାର
ନରାଧମ ପାଇରସେ କରିଲ ବରଣ ?
ବୃନ୍ଦାରକବୃନ୍ଦ, ସର୍ବେ ହୋଇ ଏକହିତ,

(୧) ବୃଷା, ବୃଷଧ୍ୱଜ (୨) ଅବା ବୃଷାନ୍ତକ ପାଶେ (୩)
କର ହେ ଗୁହାରି ଯାଇ କହନ୍ତୁ ସେ କାଢ଼
ଭାଗ୍ୟର ଶକତି; ସର୍ବେ ମିଳି ଚକ୍ରୁଁ ତାର
ଅରଗଜ ଫିଙ୍ଗିଦିଅ ଦୂରେ, କର ତାହା
ଚୂର୍ଣ୍ଣ ପରିଣତ, ଚକ୍ରର ବର୍ତ୍ତୁଳ ନାଭି
ପେଶିଦିଅ ପଦାଘାତେ ନିତଳ ପ୍ରଦେଶେ ।”

ପଲେ—ଏହା ଅତି ଦୀର୍ଘ ହୋଇଅଛି ।

ହ୍ୟାମ୍—ତୁମ୍ଭର ଶ୍ମଶ୍ରୁ ସହିତ ଏହାକୁ କ୍ଷୌରିକର ଗୃହକୁ ପଠାଇ ଦିଆଯିବ । ଅନୁଗ୍ରହ କରି କହିଯାଅ, ବୀଭତ୍ସ କିମ୍ବା ଆଦିରସ ବ୍ୟତୀତ ଅନ୍ୟ କୌଣସି ରସର ଅବତାରଣା କରିଲେ ସେ ତନ୍ଦ୍ରାଳୁ ହୋଇପଡ଼ନ୍ତି; କହିଯାଅ; ହକ୍ୟୁବା କ’ଣ କଲେ କହ । (୪)

ପ୍ରଃ ଅଭି—“ଭଜୁଥିଲେ ନିଦ୍ରା ସୁଖେ ରାଜ୍ଞୀ ଅନ୍ତଃପୁରେ,
ସହସା ଶୁଣିଲ ତହିଁ କୋଳାହଳ ନାଦ
ଭାଙ୍ଗିଗଲା ସୁଖ ନିଦ୍ରା ଉଠିଲେ ଚମକି
ଦେଖିଲେ ବେଢ଼ିଛି ପୁର ପାବକ ଚୌଦିଗେ
ପାଟଣ ନାହାନ୍ତି ପ୍ରାଙ୍ଗଣେ, ଧାଇଁଲେ ସନ୍ତ୍ରସ୍ତ

---

(୧) ବୃଷା—ଇନ୍ଦ୍ର ।
(୨) ବୃଷଧ୍ୱଜ—ଶିବ ।
(୩) ବୃଷାନ୍ତକ—ବିଷ୍ଣୁ ।
(୪) ହକ୍ୟୁବା—ପ୍ରାୟାମର ପତ୍ନୀ । ପ୍ରାୟାମଙ୍କର ଔରସରେ ଏହାଙ୍କର ୧୯ଗୋଟି ସନ୍ତାନ ଜାତ ହୋଇଥିବାର କଥିତ ଅଛି ।

ଯହୁଁ ପ୍ରାଣର ଝଲକେ, ଅପର୍ଯ୍ୟାପ୍ତ ବେଶେ,
ନଗ୍ନ ପଦଯୁଗ, ଅହା, ଯାହାଙ୍କ ଲୋଡିତ
ଝରପତ୍ରେ ଝରିଝରେ ବାରି ଧାରା ସମ,
ନନ୍ଦିତ ବନ୍ଧି ଜବା ପ୍ରତେ ଦୁଏ ମନେ;

ଶୋଭୁଥିଲା ଯେଉଁ ଶିରେ ସୁବର୍ଣ୍ଣ-ମୁକୁଟ
ଖଚିତ ହୀରକେ, ତାହା ପନବଦ୍ଧ ବସନେ,
କର୍କଶ କମ୍ବଳ ଶୋଭେ କୃଶ କଟିତଟେ,
ତରୁତଳେ ଅଣିଥିଲ ଓଁଠାର ଢାଲପୁଁ

ପଳାଇ ଅସିଲେ ଯେବେ, ନସ୍ତା ଏଣୀପରି;
ଜରଣୀ ରାଣୀଙ୍କ ଦଶା ଦେଖିଣ ନୟନେ,
କେଉଁ ନର ନରଲୋକେ ସମ୍ଭାଳିବ ଧୃତି
ଚକ୍ଷୁ-ସଲିଳେ ସିକ୍ତ ନ କରି ରସନା
ନ ବରଷି ଶାପ-ବାରି ଭାଗ୍ୟଦେବୀ ଶିରେ ?
ଦେଖିଲେ ଯେ କାଳେ ରାଣୀ, ପତି-ବର-ବପୁ
ଖଣ୍ଡ ଖଣ୍ଡ କରି କାଟି ଟାସ୍ତ୍ର କରବାଳେ,

ପୈଶାଚିକ କ୍ରୀଡ଼ାରଙ୍ଗେ କରୁଛ ପାମର,
କଲେ ଯେ ଝଙ୍କୃ ନାଦ ସହସା, ସେ ସ୍ଥଳେ
ମୁଖରିତ ହେଲା କ୍ଷଣେ ଘୋର ରଣସ୍ଥଳୀ;
ହେଲେହେଁ ନିଦଶ, ଯେତୁ ଅମର ଅବଧା
ଲଭନ୍ତ, ଜରା ମୃତ୍ୟୁ ନ ପରଶେ ଯେଣୁ,
ଜ୍ୟୋତିର୍ମୟ-ଦିବ୍ୟ-ଚକ୍ଷୁ କରି ଅଶ୍ରୁ ସିକ୍ତ
ହୁଅନ୍ତେ ଅଧୀର, ଦେଖି ରାଣୀଙ୍କ ଦୁର୍ଦ୍ଦଶା ।"

ପଲେ—ଦେଖ ତ, କପରି ତାହାର ମୁଖ ପାଣ୍ଡୁର ଓ ନୟନ ଅଶ୍ରୁସିକ୍ତ ହୋଇଅଛି । ଶାନ୍ତହୁଅ, ଅଉ କହିବାର ଦରକାର ନାହିଁ ।

ହ୍ୟାମ୍—ଏହା ଗୋଟିଏ ସୁନ୍ଦର ବକ୍ତୃତା; ଏହାର ଅବଶିଷ୍ଟାଂଶ ଶୀଘ୍ର ମୁଁ ତୁମ୍ଭଠାରୁ ଶୁଣିବି । ମନ୍ତ୍ରିବର, ଏମାନଙ୍କର ରହିବାର ସୁବନ୍ଦୋବସ୍ତ କରିଦିଅ; ଶୁଣୁଛ ତ, ଏମାନଙ୍କର ପ୍ରତି ଭଲ ବ୍ୟବହାର କରିବ, ଯେପରି ସେମାନଙ୍କର କୌଣସି କଷ୍ଟ ନ ହୁଏ, କାରଣ ସେମାନେ କାଳର ସଂକ୍ଷିପ୍ତ ବିବରଣୀ ଗାନ କରି ବୁଲନ୍ତି; ତୁମ୍ଭର ମୃତ୍ୟୁ ପରେ ତୁମ୍ଭର ସ୍ମୃତିସ୍ତମ୍ଭରେ ଯଦି କୌଣସି ନିନ୍ଦନୀୟ ବିଷୟ ଥାଏ, ତା'ହେଲେ ସେଥି ତେତେ ବେଶି ଅନିଷ୍ଟକାରକ ହେବନାହିଁ, କିନ୍ତୁ ତୁମ୍ଭର ଜୀବିତାବସ୍ଥାରେ ତୁମ୍ଭର କୌଣସି ଅଖ୍ୟାତି ଯେପରି ସେମାନଙ୍କ ମୁଖରୁ ଶୁଣିବାକୁ ନ ହୁଏ ।

ପଲେ—ସୁବିଜ୍ଞ, ସେମାନେ ଯେପରି ଲୋକ ସେମାନଙ୍କ ପ୍ରତି ସେହିପରି ବ୍ୟବହାର କରିବି ।

ହ୍ୟାମ୍—ନାହିଁ, ନାହିଁ, ତାହା ଅପେକ୍ଷା ଅଧିକ ଭଲ ବ୍ୟବହାର କରିବାକୁ ହେବ । ଯଦି ପ୍ରତ୍ୟେକ ଲୋକର ଦୋଷ ଗୁଣ ବିଚାର କରି ବ୍ୟବହାର କରିବାକୁ ହୁଏ, ତା'ହେଲେ ଏ ଦୁନିଆଁରେ କିଏ ଚାବୁକରୁ ଅବ୍ୟାହତି ପାଇବ ? ତୁମ୍ଭର ନିଜର ଅଭ୍ୟମର୍ଯ୍ୟାଦା ଓ ସାମାଜିକ ଅବସ୍ଥାକୁ ଲକ୍ଷ୍ୟ କରି ସେମାନଙ୍କ ପ୍ରତି ବ୍ୟବହାର କରିବ; ସେମାନେ ଯେତେ ଅଧିକ ତାଦୃଶ ବ୍ୟବହାରର ଅନୁପଯୋଗୀ ହେବେ, ତୁମ୍ଭର ମହତ୍ତ୍ୱ ଓ

ବଦାନ୍ୟତା ସେହିପରିମାଣରେ ବର୍ଦ୍ଧିତ ହେବ । ସେମାନଙ୍କ ତୁମ୍ଭ ସହିତ ନେଇଯାଅ ।

ପଲେ—ଅସ, ଭଦ୍ର ମହୋଦୟଗଣ ।

ହ୍ୟାମ୍—ବନ୍ଧୁବର୍ଗ, ତାଙ୍କ ସହିତ ଯାଅ, କାଲି ତୁମ୍ଭର ଅଭିନୟ ଦେଖିବା ।

( ପ୍ରଥମ ଅଭିନେତା ବ୍ୟତୀତ ଅନ୍ୟ ଅଭିନେତାଙ୍କ ସହିତ ପଲୋନିଅସ୍‌ର ପ୍ରସ୍ଥାନ )

ଶୁଣୁଛ ବନ୍ଧୁ, ଗଞ୍ଜାଗୋର ନିଧନ ଅଭିନୟ ଦେଖାଇ ପାରିବ କି ?

ପ୍ରଃ ଅଭି—ହଁ, ଯୁବରାଜ ।

ହ୍ୟାମ୍—କାଲି ରାତିରେ ଆମ୍ଭେମାନେ ଉକ୍ତ ଅଭିନୟ ଦେଖିବା । ଆବଶ୍ୟକ ହେଲେ, ଦ୍ୱାଦଶ କିମ୍ବା ଷୋଡ଼ଶ ପଂକ୍ତି ବିଶିଷ୍ଟ ଗୋଟିଏ କ୍ଷୁଦ୍ର ବକ୍ତୃତା ମୁଖସ୍ଥ କରିପାରିବ ତ ? ମୁଁ ଉକ୍ତ ବକ୍ତୃତାଟି ଅଭିନୟର ଅନ୍ତର୍ଭୁକ୍ତ କରିବାକୁ ଚାହେଁ ।

ପ୍ରଃ ଅଭି—ହଁ, ଯୁବରାଜ ।

ହ୍ୟାମ୍—ଅଚ୍ଛା । ମନ୍ତ୍ରୀଙ୍କର ଅନୁଗମନ କର; ଦେଖ, ତାଙ୍କୁ ବିଦ୍ରୂପ କରିବ ନାହିଁ । (ପ୍ରଥମ ଅଭିନେତାର ପ୍ରସ୍ଥାନ) ପ୍ରିୟ ବନ୍ଧୁବର୍ଗ, ବର୍ତ୍ତମାନ ମୁଁ ତୁମ୍ଭମାନଙ୍କୁ ବିଦାୟ ଦେଉଅଛି, ରାତିରେ ଏଲ୍‌ସିନୋରଠାରେ ତୁମ୍ଭମାନଙ୍କ ସହିତ ସାକ୍ଷାତ ହେବ ।

ରୋଜେନ୍—ହେଉ ଯୁବରାଜ ।

ହ୍ୟାମ୍—ଭଗବାନ୍ ତୁମ୍ଭମାନଙ୍କର ମଙ୍ଗଳ କରନ୍ତୁ ।

( ରୋଜେନ୍‌କ୍ରାନ୍‌ ଓ ଗିଲ୍‌ଡେନ୍‌ଷ୍ଟର୍ଣ୍ଣର ପ୍ରସ୍ଥାନ )

ହୋଇଲି ଏକାକୀ ଏବେ, ଭଙ୍ଗିଲା ଚହଳ ।

ଧିକ ମୋ ଜୀବନ, ଧିକ ଶୂର ପଣ. ମୋର !
ନରାଧମ ନରକୁଳେ ମଣଇ ମୁଁ ମୋତେ ।
ଅହୋ କି ଅଦ୍ଭୁତ ଦୃଶ୍ୟ ଦେଖିଲି ସାକ୍ଷାତେ !
କେମନ୍ତେ ଏ ଅଭିନେତା, ମନଷ୍ଟି ନ ପଟେ
କଳ୍ପନା-ତୂଳରେ ଅଙ୍କି ଅବାସ୍ତବ ଚିତ୍ର,
ସେହି ଭାବେ ହୋଇ ବିଭାବିତ, ଅନୁସରି
କବିର ବଚନ, ଢାଳିଦେଲା ମନଃ ପ୍ରାଣ
ଗଦ ଗଦ କଣ୍ଠେ, ନୟନୁ ବୁହାଇ ନୀର
ପାଣ୍ଡୁର ବଦନେ; ଆକାର ଇଙ୍ଗିତେ କଲା
ଭାବ ଅଭିବ୍ୟକ୍ତ, ହୋଇ ଶୋକେ ମୁହ୍ୟମାନ
ନୁହେଁ କି ଅଳୀକ ଏହା ? କାହା ଶୋକେ ହେଲା
ସେ ଅଧୀର ? କିଏ ସେ ହେକ୍ୟୁବା ? କେଉଁ ସୂତ୍ରେ
ଅବା କି ସେ ହେକ୍ୟୁବା ସମ୍ବନ୍ଧ ? କିପାଇଁ ସେ
ତାହା ପାଇଁ କରିଲା କ୍ରନ୍ଦନ ? ସୁରୁ ଶୋକେ
ମୋହ ପରି ହୋଇଲେ କାତର, କରନ୍ତା ସେ
କିସ ? ନୟନ-ଆସାରେ ନିଶ୍ଚେଁ, ରଙ୍ଗମଞ୍ଚ
ଦିଅନ୍ତା ଭସାଇ, ଶ୍ରୋତୃବର୍ଗ ଶ୍ରୁତି ସେହୁ
କରନ୍ତା ବଧୀର, ମେଘ-ମନ୍ଦ୍ରେ ବଜ୍ର-ବାଣୀ
କରି ଉଚ୍ଚାରଣ, ଦୁର୍ବୃତ୍ତ ପାପିଷ୍ଠ ଚିତ୍ତ
କରି ଉଚ୍ଚାଟନ, ନିଷ୍ପାପ-ହୃଦୟେ ସ୍ୱଚ୍ଛ
ଦିଅନ୍ତା ଚମ୍କାଇ, ଅନଭିଜ୍ଞ ଜନେ ସେହୁ
କରି ସ୍ତମ୍ଭୀଭୂତ ଶ୍ରୋତା ଦ୍ରଷ୍ଟା ଚିତ୍ତବୃତ୍ତି

ବଚନ-ବାଗୁରା ଛନ୍ଦ କରନ୍ତା ବନ୍ଧନ ।
କହୁ କି ନଷ୍ଟେଷ୍ଟ, ମ୍ଳାନ, ନୀଚୃଶମ୍ଭୁ ମୂର୍ଦ୍ଧେଁ,
ଦୁର୍ବିସହ ଶୋକ ଭାର ବହୁ ଅଂସ ଦେଶେ,
ପାଶୋର ଜରଷ ମୋର ରହୁଛି ନୀରବେ, (୧)
ଉପାୟ ବିଧାନେ ମନ ନ କର ଅର୍ପଣ;
ନ କହୁ କାହାକୁ, କି ଭାବେ ନୃପକେଶରୀ
ଅନାର୍ଯ୍ୟୀ-ଅନାଯ୍ୟେ ପଡ଼ି ହେଲେ ସର୍ବସ୍ୱାନ୍ତ (୨)
ତେଜିଲେ ପରାଣ । ନୁହେଁ କି ମୁଁ କାପୁରୁଷ ?
କରେ ଯଦି କୁଭାଷା ପ୍ରୟୋଗ କେହୁ, ଶିର
ମୋର ଦିଅଇ ଝଟାଇ, ଓଠାର ସବଳେ
ଶ୍ମଶ୍ରୁରାଶି ବାୟୁଭରେ ଉଡ଼ାଏ ମୋ ମୁଖେ,
ନାସାରନ୍ଧ୍ରେ ରକ୍ତ ବାନ୍ଧି ବୁଲାଏ ଚୌଦିଗେ
ବଳୀବର୍ଦ୍ଦ ସମ, କହେ ଯଦି ମିଥ୍ୟାସରେ
ଚହୁଛି ମୁଁ ବୁଢ଼, ହାସ୍ୟ ବଧୂ, ନିର୍ବିବାଦେ
ସହିବ ସେ ସବୁ ନୁଅଁଇ ମସ୍ତକ । ଥିଲେ
ନାହିଁ ରେ ସାହସ, ସାଉସତ୍ତ୍ୱ ମନୁଷ୍ୟତ୍ୱ
ଦେଇଛି ବିସର୍ଜି, ପ୍ରାଣେ ନାହିଁ ସେ ପ୍ରେରଣା,
ଶାର୍ଦ୍ଦୁଳ ଶାବକ ହୋଇ ଭୁଞ୍ଜି ଅମୃତେଜ
ମ୍ଳାନ ସ୍ୱାନ-ବୃତ୍ତି ନିଷ୍ଠେ କରିଛି ଗ୍ରହଣ;
ନୋହିଲେ କି ଏତେକାଳ ଥାଅନ୍ତା ପାମର

(୧) ଜରଷ—ଅଙ୍ଗୀକାର
(୨) ଅନାଯ୍ୟ—ଜାଲ

ଖାଇ ମରନ୍ତେଣି ! ଦ୍ରୋଣ, ଶକୁନ ଶରୀର
ଘୃଣିତ ପିଣ୍ଡରେ ତାର କରଥାନ୍ତି ପୁଷ୍ଟ !
ଅରେ ରେ ଦୁର୍ବୁଦ୍ଧି, କ୍ରୂର, କପଟ ଲମ୍ପଟ,
ଅବିଶ୍ୱାସି, ଅନୁତାପି, ଘୃଣିତ ନାରକି,
ହଂସା ଜନମଧ୍ୟେ ତୋର କେଡ଼ା ପ୍ରତିହଂସା !
ଛି ଛି, କି କରୁଛି ମୂର୍ଖ ? ଏହାର ଅଟଇ
ସିନା ଖରର ଅଙ୍କୁର; ନୁହେଁ ବୀରବୃତ୍ତି !
ନିହତ ପିଅର ମୋର, ହୋଇ ତାଙ୍କ ସୁତ,
ନରସ୍ୱ ନିଦେଶ ଲଭି ବୈର ନିର୍ଯ୍ୟାତନେ,
ଉଚିତ କି ବାରନାରୀ-ସମ ଅଟଇବା
ବୃଥା ବାକ୍ୟ ଆସ୍ଫାଳନେ ? କି ଲେଡ଼ା ହୃଦୟ-
ଜ୍ୱାଳା ନିବେଦ ବଚନେ, ଅବା ଅଭିଶାପେ
କଳୁଷିତ କରି ଏ ରସନା, ନୁହେଁ ଏହା
ବୀରତ୍ୱର; ଧିକ ଏ ପ୍ରୟାସ ! ଉଠ, ଜାଗ
ରେ ମସ୍ତିଷ୍କ, ଉପାୟ ତୁ କର ଉଦ୍‌ଭାବନ !
ଶୁଣିଛି ମୁଁ, ଅଭିନୟ ଦର୍ଶନ କରିଲେ,
ଅନୁରୂପ ଦୃଶ୍ୟ ଗଢ଼ି, ଅମନ୍ତି ଦୁର୍ବୃତ୍ତେ,
ସେ ବତଂସେ ଧରିଛନ୍ତି ଦୁଷ୍କୃତୀ ଦୁଷ୍କୃତ
ମର୍ମାହତ ହୋଇ ପାପୀ ସମ୍ଭାଳି ନ ପାରି,
ଆପଣା ଦୁଷ୍କର୍ମ ଆପେ କରନ୍ତି ପ୍ରକାଶ,
ହତ୍ୟାର ଏ ପାପ ଯେଣୁ ରସନା ବିହନେ
ବଖାଣେ ସ୍ୱରୂପ ତାର ଅଦ୍ଭୁତ ପ୍ରକାରେ ।

ଅଭିନେତୃ ଦଳେ ଦେଇ ପିତୃବ୍ୟ ଗୋଚରେ
ଦେଖାଇବି ଅନୁକରି ପିତାଙ୍କ ନିଧନ,
ଅଭିନୟ ଏକ, ନିରେଖିବି ମୁଖଛବି,
ମର୍ମ-ଭେଦୀ ଶରବାଣ କରିବି ପ୍ରୟୋଗ
ହେଲେ ଲକ୍ଷ୍ୟ ବଦ୍ଧ, ସିଦ୍ଧ ବୁଝିବି ସନ୍ଧାନ ।
ଦେଖିଛି ଯେ ପ୍ରେତମୂର୍ତ୍ତି, ପ୍ରୀତିକର ବେଶେ
ପ୍ରେତପୁରୁ ଆସିଥିଲା ଦେବାକୁ ସନ୍ଦେଶ ।
ହୋଇପାରେ ପିଶିତାଶ କାମରୂପୀ ସେହୁ,
ଦୈନ୍ୟ ବୈକଲ୍ୟ ମୋର ନିର୍ବିଣ୍ଣ ମାନସ
ବୁଝି ସେ ସୁଯୋଗେ ମୋତେ ଦୂର ପାପକର୍ମେ
କରୁଛି ପ୍ରବୃତ୍ତ, ଭଦ୍ର ମୂଢ଼ ବେନିକାଳ
ନରକ-ସଲିଳେ ହେଲେ ବୁଡାଇବା ପାଇଁ ।
ଛଦ୍ମର ସଙ୍କେତ ଏହା ଅଶରୀରୀ ବାଣୀ
କେମନ୍ତେ ପ୍ରତ୍ୟୟେ ଚିତ୍ତ ନ କରି ପରୀକ୍ଷା ।
ଅଭିନୟ—ପାଶେ ଛଦ୍ମ ନୃପଚିତ୍ତବୃତ୍ତି
ପ୍ରତ୍ୟକ୍ଷ ଦର୍ଶନେ ଦୂର କରିବି ସଂଶୟ ।



# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ପ୍ରକୋଷ୍ଠ ]

(ରାଜା, ରାଣୀ, ପଲୋନିଅସ୍, ରୋଜେନ୍‌କ୍ରାନ୍ସ, ଗିଲ୍‌ଡେନ୍‌ଷ୍ଟାର୍ଣ୍ଣ ଓ ଓଫେଲିଅର ପ୍ରବେଶ ।)

ରାଜା—କି କାରଣେ ବୁଲଇ ସେ ବାତୁଳ ସଦୃଶ,
ଅଶାନ୍ତ ଅନଳ ବହି ଅହର୍ନିଶ ବକ୍ଷେ,
ପରୁଷ ବଚନେ କରି ଶୃଙ୍ଖ-ପୀଡ଼ା ଜାତ,
ନ ଲଭି ସାନ୍ତ୍ୱନା, ହେଲ କି ଅକ୍ଷମ ତାର
ତତ୍ତ୍ୱ ନିର୍ଦ୍ଧାରଣେ ?

ରୋଜେନ୍— କହିଲେ ସେ ମତିଭ୍ରମ
ଘଟିଛି ତାଙ୍କର, କି ହେତୁ ଘଟିଛି କିନ୍ତୁ
ନ କଲେ ପ୍ରକାଶ ।

ଗିଲ୍‌ଡେନ୍— କଲେ ବାକ୍ୟାଳାପ ଅତି
କୁଣ୍ଠିତ ହୃଦୟେ; ପୁଚ୍ଛିଥିଲୁଁ ପ୍ରଶ୍ନପୁଞ୍ଜ
ବୁଝିବା ମାନସେ ତାଙ୍କ ଅନ୍ତର୍ଗତ ଭାବ,
ପ୍ରମତ୍ତ ବଚନେ, ଲୁଚାଇ ସ୍ୱଭାବାନ୍ତର
କଲେ ସେ କୌଶଳେ ବ୍ୟର୍ଥ ମେ ଚେଷ୍ଟା ଅମ୍ଭର ।

ରାଣୀ— କଲେ କି ସେ ଅଭ୍ୟର୍ଥନା କରିଲ ତୁମ୍ଭର ?

ଗ୍ରେଜେନ୍—କଲେ ଭଦ୍ର ସ୍ୱବେ ।
ଟିଲ୍‌ଜେନ୍—                କିନ୍ତୁ କୁଣ୍ଠିତ ହୃଦୟେ ।
ଗ୍ରେଜେନ୍—ଯଦବେ ପୁଚ୍ଛିଲେ ପ୍ରଶ୍ନ, ପ୍ରଶ୍ନୋତ୍ତର ଦେଲେ
        କିନ୍ତୁ ଅକୁଣ୍ଠିତ ସ୍ୱବେ ।

ରାଣୀ—                ଆମୋଦ ପ୍ରମୋଦେ
        କି ଭଳି ଅସନ୍ତୁ ତାର ବୁଝିଲ କି ତାହା ?

ଗ୍ରେଜେନ୍—ନରେଶ୍ୱର, ଦୈବଯୋଗେ ଅଭିନେତୃଦଳେ
        ଭେଟିଲୁଁ ଗନ୍ତବ୍ୟ ପଥେ, ଦେଲୁଁ ଏସ ସନ୍ଦେଶ,
        ଶୁଣି ହୃଷ୍ଟ ହେଲାପର ହୋଇଲା ପ୍ରତ୍ୟୟ;
        ରାଜପୁର ସନ୍ନିକର୍ଷେ ଅଛନ୍ତି ସେ ଦଳ,
        ସମ୍ଭବତଃ ଲଭିଛନ୍ତି ଆଦେଶ ତାଙ୍କର,
        ଦେଖାଇବେ ଅଭିନୟ ଅଦ୍ୟ ରଜନୀରେ
        ତାଙ୍କର ସମକ୍ଷେ ।

ପଲେ—                ଯଥାର୍ଥ ଏ ବାର୍ତ୍ତା, ମୋତେ
        କହିଲେ ବିନୟେ ଦୟା ବହୁ ନରପତି
        ରାଣୀସହ ସଭାସ୍ଥଳେ ହୋଇ ଉପସ୍ଥିତ
        କରିବେ ଦର୍ଶନ ସେହି ନାଟକାଭିନୟ ।
ରାଜା—ସର୍ବାନ୍ତଃକରଣେ ଏହା କଲି ସମର୍ଥନ,
        ଶୁଣି ଏ ପ୍ରସ୍ତାବ ଚିତ୍ତେ ଲଭିଲି ସନ୍ତୋଷ,
        ଏ ଭଳି ଆମୋଦେ ଚିତ୍ତ କର ଆକର୍ଷଣ
        କ୍ରମେ ତାର, ବନ୍ଧୁଗଣ; ବଢାଅ ଅସନ୍ତୁ ।

ରୋଜେନ୍—କରିବୁଁ ନରେଶ ।

( ରୋଜେନ୍‌କ୍ରାନ୍‌ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରସ୍ଥାନ )

ରାଜା— ଯାଅ ପ୍ରିୟେ ଜାର୍ଟ୍ରୁଡ୍ !
ତୁମ୍ଭେ ମଧ୍ୟ ଏବେ, ପେଶିଛୁଁ ସତର୍କେ ଦୂତ
ହ୍ୟାମ୍‌ଲେଟ୍ ସମୀପେ, ଆସିଲେ ସେ ଏହି ଠାବେ
ଅତର୍କିତେ ଘଟାଇବୁଁ ମିଳନ ତାହାର
ଓଫିଲିଆ ସଙ୍ଗ, ଜନକ ସହିତ ତାର
ରହି ଅନ୍ତରାଳ କରିବ ମୁଁ ନିରୀକ୍ଷଣ ।
ମିଳନ ତାଙ୍କର, ଦେଖି ତାର ବ୍ୟବହାର,
ବ୍ୟାଧି ତତ୍ତ୍ୱ ନିରୂପଣ କରିବ ସତ୍ୱର,
ପ୍ରେମୋନ୍ମତ୍ତ ନୁହେଁ କି ସେ ବୁଝିବ ସାକ୍ଷାତେ ।

ରାଣୀ— ପାଳିବ ଆଦେଶ ତବ । ଶୁଣ ଲୋ କିଶୋରି,
ଲାବଣ୍ୟ ପ୍ରତିମା ତୋର ହେଉ ମୋ ତନୟ,
ଉନ୍ମନା ଲଭିବା ଆଶେ ହୋଇଥାଏ ଯଦି,
ତୋ ଗୁଣ-ବିପଣି-ତାନେ ହୋଇ ବିମୋହିତ
ଲଭିବ ସୁମତି ପୁଣି, ପ୍ରକୃତି ମୋହର,
ବିତରିବ ମୋଦ ତାର ସରଳ ବେଶରେ ।

ଓଫି—ନରେଶ୍ୱରି, ହେଉ ପୂର୍ଣ୍ଣ କାମନା ତୁମ୍ଭର ।

( ରାଣୀଙ୍କର ପ୍ରସ୍ଥାନ )

ପଲୋ—ଓଫିଲିଆ, ବୁଲୁଥା ତୁ ଏଥି ବିଚରଣ ।
ନରରାଣ, ଅନ୍ତରାଳେ ରହିବା ଗୋପନେ ।

( ଓଫିଲିଅ ପ୍ରତି ) କରୁଥା ତୁ ଅଧ୍ୟୟନ ଏ ଧର୍ମପୁସ୍ତକ,
ହେବ ତା ପବିତ୍ର ରାଗେ ରଞ୍ଜିତ ତୋହର
ନିର୍ଜ୍ଜନାବସ୍ଥିତି; ଗର୍ହିତ ଏ ରୀତି କିନ୍ତୁ
କରିଥାନ୍ତି କେତେ ଜନେ ସେ ହେତୁ ଅମ୍ଭର
ଧରି ସାଧୁବେଶ, ମେଳି ଧର୍ମର କେତନ
ଅନ୍ତରେ ଭୂଷିବ କରୁଁ କରନ୍ତି ପୋଷଣ ।

ରାଜା—( ସ୍ୱଗତ ) ଅହୋ, ଅତି ସତ୍ୟ ଏହା, କରୁଛି ଏ ବାକ୍ୟ
ଅସ୍ଥିର ବିବେକ ମୋର ତୀବ୍ର କଷାଘାତେ ।
ନୁହେଁ କି ମୁଁ ଧର୍ମଧ୍ୱଜୀ ? ପ୍ରଶସ୍ତ ବଚନେ
ଘୋଡାଇ କି ରଖିନାହିଁ କୁକ୍ରିୟା ମୋହର !
ଧିକ ଏ ଗଣିକା ରୀତି, କୁତ୍ସିତ କପୋଳ
କସ୍ତୁରୀ-କୁଙ୍କୁମ-ପଙ୍କେ କରେ ବିଲେପନ,
ତହୁଁ ଶତଧିକ ମୋର ଅଟେ ଏ ଚାତୁରୀ;
ଅହୋ କି ଅସହ୍ୟ ଏହୁ ଗୁରୁ ପାପଭର !
ପଲେ—ଶୁଣୁଛି ମୁଁ ପଦଶବ୍ଦ ଆସୁଛନ୍ତି ସେହୁ,
ଅନ୍ତରାଳେ ନରନାଥ ରହିବା ଗୋପନେ ।

( ରାଜା ଓ ପଲୋନିଅସ୍‌ର ପ୍ରସ୍ଥାନ )

( ହ୍ୟାମ୍‌ଲେଟ୍‌ର ପ୍ରବେଶ )

ହ୍ୟାମ୍—ଜୀବନ ମରଣ ଏବେ ସମସ୍ୟା ମୋହର
ସନ୍ଧିସ୍ଥଳେ ହୋଇଛି ମୁଁ ଉଭା, କହ କିସ
ମହତ୍ତ୍ୱ ଲକ୍ଷଣ ? ସହିବା ଅମ୍ଳାନ ଅସେ୍ୟ

କୃପଣ-କଠୋର-ଘୋର-ଭାଗ୍ୟ-ନିର୍ଯାତନ
ବକ୍ଷ ପାତି, ଅବା ରେବେକାରେ ଅସିହସ୍ତେ
ଧାଇଁ ରଣସ୍ଥଳେ, ଭେଦ ଭାଗ୍ୟ-ଚକ୍ର-ବ୍ୟୂହ
କରିବା ବିଧ୍ୱସ୍ତ ତାର ଅପ୍ରତ ବାହିନୀ ?
ମୃତ୍ୟୁ, ମହାନିଦ୍ରା ସେ ତ ନୁହେଁ ଅନଂକଛି,
ହାୟ ରେ ସେ ନିଦ୍ରା ତାଜ ଶାନ୍ତ-ସୁଧାସାର,
ଭବ-ପାପ-ତାପ ଯଦ କରନ୍ତା କ୍ଷାଳନ,
କି ଦେବଦୁର୍ଲ୍ଲଭ ନିଧି ନ ଲଭନ୍ତା ନର !
ମୃତ୍ୟୁ, ମହାନିଦ୍ରା, ନୁହେଁ ତ ସୁଷୁପ୍ତି ସ୍ୱପ୍ନ
ବିରହିତ, ହାୟ ବିଘ୍ନ ହୋଇଲା ସଞ୍ଜାତ !

ମର କଳେବର ତେଜି ଅମର ଶରୀରୀ,
ଭବ-ଯବନିକା-ପାରେ ଯିବ ଯେବେ ଚଳି,
ଦେଖିବ କି ସ୍ୱପ୍ନ ସେହି ମହାନିଦ୍ରା ଭୋଳେ,
ସେ ଚିନ୍ତା ଅକୂଳ କରେ ମାନବ ପରାଣ,
ସହି ଜନ୍ମାଏ ଅନ୍ତରେ, ନିର୍ଯାତନ ଲଭେ
ତହୁଁ ସୁଦୀର୍ଘ ଜୀବନ ଏହି ମର ଲୋକେ ।

କାଳ କଶାଘାତେ କହ ହୋଇ ଜରଜର,
ସହୁ ଦୁର୍ବୃତ୍ତ ପୀଡ଼ନ, ଶାସନ ଅନୀତି,
ପଦ ଗର୍ବୀ ପ୍ରବଳର ବିକଟ ଭ୍ରୂଭଙ୍ଗୀ,
ଦାମ୍ଭିକର ଅବକ୍ଷେପ, ରୂଢ଼ ବ୍ୟବହାର,
ପ୍ରତ୍ୟାଖ୍ୟାତ ପ୍ରଣୟର ଦୁଃସହ ଯନ୍ତ୍ରଣା,
କାଇଁ କି ଏ ରହନ୍ତା ମହୀରେ, ନୀଚ ଜନ

ପଦାଘାତ ସହୁ କେଉଁ ମତିମାନ, ଧୃତ
ଧରି ରହନ୍ତା ମଜନେ, ସ୍ୱକରେ ଆପଣା
ଶିର କାଟି କରବାଳେ, ଅଶେଷ କ୍ଳେଶରୁ
ମୁକ୍ତ ଲଭନ୍ତା ସେ ଯଦି ? କିଏ ଦୁର୍ବିସହ
ଶୋକ ଭାର ବହୁ ଏ ଜଗତେ, ତାପକ୍ଳିଷ୍ଟ
ପ୍ରାଣ କରନ୍ତା ଧାରଣ, ଅନୁକ୍ଷଣ ବୁଡ଼ି
ଖେଦ-ସରେ, ଅଜ୍ଞାତ ସେ ପ୍ରେତପୁର, ଯହିଁ
ପଶିଲେ ପଥିକ ଆଉ ନ ଫେରଇ କେବେ
ମର୍ତ୍ତ୍ୟ ବାସଭୂମେ, ବିଭୀଷିକା ଛାୟା ମେଳ
ଜଡ଼ୀଭୂତ ନ କରନ୍ତା ମାନବ ସଂକଳ୍ପ ?

ସେ ଭୟେ କାତର ହୋଇ ଭବ-ତାପ-ଜ୍ୱାଳା
ସହେ ନର ବାନ୍ଧି ହୃଦୟ କଠିନ ପାଷାଣେ,
ଘୋର ଅନ୍ଧକୂପେ ଲମ୍ଫ ନ ଦଇ ପ୍ରଦାନ,
ଏସନ ବିବେକ ନରେ କରେ କାପୁରୁଷ,
ସଂକଳ୍ପ ତା ନିଜ ତେଜ ତେଜି ଭଗ୍ନପ୍ରାୟ,
ପାଣ୍ଡୁର ବଦନେ ରହେ ଭୂତ ସେ ବିକ୍ଷୋଭେ;

ପ୍ରାଣର ଉଦ୍ଦାମ ଚେଷ୍ଟା ପଶି ଶଙ୍କାପୁରେ
ହୁଅଇ ବିଲୀନ, ଖରସ୍ରୋତା ସ୍ରୋତସ୍ୱତୀ
ହଜାଏ ତା ସତ୍ତା ଯଥା ପଶି ମରୁଦେଶେ ।
ଶାନ୍ତ ହୁଅ ଚିତ୍ତ । କିଏ ଗୃହୁ ଓଫିଲିଆ !
ମର୍ତ୍ତ୍ୟର ଅପ୍ସରା, କର ନିବେଦନ ମୋର
ପାପରାଶି ପ୍ରଭୁଙ୍କ ପଦ୍ମରେ ।

ଓଫି— ପ୍ରଭୁ ଅଛ
କ ଭୁଲେ ? ହେଲା ଦେଖା ଦୀର୍ଘକାଳ ପରେ ।

ହ୍ୟାମ୍—ଘେନ ଧନ୍ୟବାଦ, ଅଛ ଭଲେ, ଭଲେ, ଭଲେ ।

ଓଫି—ଦେଇଥିଲ ପ୍ରଭୁ କେତେ ପ୍ରୀତି ନିଦର୍ଶନ,
ରଖିବାକୁ ସ୍ମୃତିପଥେ ତୁମ୍ଭ ଗୁଣ ଗୁଣି,
ବହୁଦିନୁ ପ୍ରତ୍ୟର୍ପଣେ ବଳାଇଛ ମନ,
ଘେନ ତାହା ଗୁଣମଣି ଏତିକ ପ୍ରାର୍ଥନା ।

ହ୍ୟାମ୍—ନାହିଁ, କିଛି କେବେ ଦେଇନାହିଁ ମୁହିଁ ।

ଓଫି—ଜାଣ ପ୍ରଭୁ ନିଦର୍ଶନ ଦେଇଥିଲ ମୋତେ,
କହି ମଧୁମୟ ସୁମଧୁର ଗିରେ, ମଧୁ-
କଣ୍ଠେ ମଧୁକଣ୍ଠ ଯଥା ବସନ୍ତ ଅଗମେ,
ବଚନ ସୌରଭ ପୁଟେ ପୂରାଇ ଯତନେ,
ସୌରଭବିହୀନ ସେହି ଉପହାରରାଶି,
ଦେଉଛି ଫେରାଇ ଏବେ କର ହେ ଗ୍ରହଣ;
ହେଲେ ହେଁ ମହାର୍ଘ ଦାନ. ସ୍ନେହହୀନ କେବେ
ଦାତାର ସେ ଦାନେ ହୁଏ ଗ୍ରହୀତାର ପ୍ରୀତି ?
ଘେନ ପ୍ରଭୁ ଦେଉଛି ଫେରାଇ ।

ହ୍ୟାମ୍—ହାଃ, ହାଃ, ତୁମ୍ଭେ କଣ ସାଧ୍ୱୀ ?
ଓଫି—ଯୁବରାଜ ?
ହ୍ୟାମ୍— ତୁମ୍ଭେ କଣ ସୁନ୍ଦରୀ ?
ଓଫି—କଣ କହୁଛ ଯୁବରାଜ ?

ହ୍ୟାଠ୍—ମୁଁ କହୁଛି ; ତୁମ୍ଭେ ଯଦି ସ୍ୱାଧ୍ୱୀ ଓ ସୁନ୍ଦରୀ ହୋଇଥାଅ, ତୁମ୍ଭର ସାଧୁତାର ସହିତ ତୁମ୍ଭର ସୌନ୍ଦର୍ଯ୍ୟର କୌଣସି ସମ୍ପର୍କ ନ ରହିବା ଉଚିତ ।

ଓଫି—ତାହାଙ୍କ ଯୁବରାଜ, ସୌନ୍ଦର୍ଯ୍ୟର କଣ ସାଧୁତା ଅପେକ୍ଷା ଅଉ କେହି ଯୋଗ୍ୟତର ସହଚରୀ ହୋଇପାରେ ?

ହ୍ୟାମ୍—ଖୁବ୍ ହୋଇପାରେ; ସେମାନଙ୍କର ମଧ୍ୟରେ ସମ୍ପର୍କ ନ ରହିବାହିଁ ବାଞ୍ଛନୀୟ; କାରଣ, ସାଧୁତା ସୌନ୍ଦର୍ଯ୍ୟର ସାହଚର୍ଯ୍ୟରେ ଯେତେ ଶୀଘ୍ର ବ୍ୟଭିଚାରରେ ପରିଣତ ହୁଏ, ତେତେ ଶୀଘ୍ର ସୌନ୍ଦର୍ଯ୍ୟକୁ ନିଜର ମହନୀୟ ଗୁଣରେ ଅନୁପ୍ରାଣିତ କରି ତାର ଉଚ୍ଚ ପଦବୀରେ ପ୍ରତିଷ୍ଠିତ କରିପାରେ ନାହିଁ । ଏହା ଏକ ସମୟରେ ଅଷ୍ଟର୍ଯ୍ୟବତ୍ ପ୍ରତୀୟମାନ ହେଉଥିଲା, କିନ୍ତୁ କାଳର ଗତିରେ ବର୍ତ୍ତମାନ ତାହା ସତ୍ୟରେ ପରିଣତ ହୋଇଅଛି । ଏକ ସମୟରେ ମୁଁ ତୁମ୍ଭଙ୍କୁ ଭଲ ପାଉଥିଲି ।

ଓଫି—ବସ୍ତୁତଃ ଯୁବରାଜ, ତୁମ୍ଭେ ମୋ ମନରେ ସେହିପରି ବିଶ୍ୱାସ ଜନ୍ମାଇଥିଲ ।

ହ୍ୟାମ୍—ତୁମ୍ଭର ମୋତେ ବିଶ୍ୱାସ କରିବା ଉଚିତ ନ ଥିଲା; କାରଣ ମାନବ ପ୍ରକୃତିର ଅନ୍ତର୍ନିହିତ ଦୋଷଗୁଡ଼ିକ ଧର୍ମର ସ୍ପର୍ଶରେ ନିର୍ବାପିତ ହେଲେହେଁ ଏକାବେଳକେ ଧ୍ୱଂସପ୍ରାପ୍ତ ହୁଅନ୍ତି ନାହିଁ, ବେଳେ ବେଳେ ଯେ ସ୍ୱଭାବସୁଲଭ ଦୋଷମାନ ଫୁଟି ବାହାରିବ ନାହିଁ ତାହା କିଏ କହିପାରେ ? ମୁଁ ତୁମ୍ଭଙ୍କୁ ଭଲ ପାଉ ନ ଥିଲି ।

ଓଫି—ତାହା ହେଲେ ମୁଁ ନିତାନ୍ତ ଭ୍ରମରେ ପଡ଼ିଥିଲି ।

ହ୍ୟାମ୍—ଯାଅ କୁମାରୀବ୍ରତ ଧାରଣ କରି କୁମାରୀ ଆଶ୍ରମରେ ବାସ କର; କାହିଁକି ଅନର୍ଥକ କେତେ ଗୁଡ଼ାଏ କୁଳାଙ୍ଗାରଙ୍କର ପ୍ରସବିନୀ ହେବ ? ମୁଁ ଜଣେ ସଦ୍‌ବଂଶଜ ଚରିତ୍ରବାନ୍ ପୁରୁଷ, ତଥାପି ଏଭଳି ଦୋଷମାନ ଅଛି ଯେ ମୋର ଗର୍ଭଧାରିଣୀ ମାତା ମୋତେ ଗର୍ଭରେ ଧାରଣ କରି ନ ଥିଲେ ଭଲ ହୋଇଥାନ୍ତା । ମୁଁ ନିରତିଶୟ ଦର୍ପୀ, ପ୍ରତିହିଂସାକାଙ୍କ୍ଷୀ ଓ ଉଚ୍ଚାଭିଳାଷୀ, ମୋର ମନ ମଧ୍ୟରେ ଅହରହ ଏତେ ପାପଚିନ୍ତା ଖେଳୁଛି ଯେ ତାହା ଭାଷା ଓ କଳ୍ପନାର ଅତୀତ ଏବଂ ସେ ସବୁ କାର୍ଯ୍ୟରେ ପରିଣତ କରିବାକୁ ମୋର ଅବସର ନାହିଁ । ମୋ ପରି ଅଧମ ବ୍ୟକ୍ତିଙ୍କର ଏହି ପୃଥିବୀରେ ହେୟ ସରୀସୃପର ଜୀବନ ଧାରଣ କରି ରହିବାକି ଦରକାର ? ଆମ୍ଭେମାନେ ସମସ୍ତେ ପାଷଣ୍ଡ, କାହାକୁ ବିଶ୍ୱାସ କରନାହିଁ । ଚିରକୁମାରୀ ବ୍ରତ ଧାରଣ କରି କୁମାରୀ-ଆଶ୍ରମରେ ବାସ କର । ତୁମ୍ଭର ପିତା କେଉଁଠାରେ ?

ଓଫି—ଘରେ ଯୁବରାଜ ।

ହ୍ୟାମ୍—ତାଙ୍କୁ ତାଙ୍କ ନିଜ ଘରେ ବନ୍ଦକରି ରଖ, ଯେପରି ସେ ଘର ଛଡ଼ା ଅନ୍ୟ କେଉଁଠି ଭଣ୍ଡାମି ଦେଖାଇ ନ ପାରନ୍ତି । ବିଦାୟ ।

ଓଫି— ହେ ଭଗବାନ୍, ତାଙ୍କୁ ସୁମତି ଦିଅ ।

ହ୍ୟାମ୍—ତୁମ୍ଭେ ଯଦି ବିବାହ କର, 'ତା'ହେଲେ ତୁମ୍ଭର ଯୌତୁକ ସ୍ୱରୂପ ଏହି ଅଭିସମ୍ପାତ ଦେବି—ତୁମ୍ଭର ଚରିତ୍ର ତୁଷାରବତ୍ ଶୁଭ୍ର ଓ ନିର୍ମଳ ହେଲେହେଁ ତୁମ୍ଭେ କଳଙ୍କରୁ ଅବ୍ୟାହତ ପାଇବ ନାହିଁ । ଯାଅ, ଏହିପରି କୁମାରୀ ହୋଇ ମଠରେ ରହ; ଯାଅ, ବିଦାୟ । କିମ୍ବା ଯଦି ତୁମ୍ଭର ବିବାହ କରିବାର ନିତାନ୍ତ

ଅବଶ୍ୟକ ହେବ, ତା'ହେଲେ ଗୋଟିଏ ନିର୍ବୋଧକୁ ବିବାହ କର, କାରଣ ପଣ୍ଡିତମାନେ ଭଲ କରି ଜାଣନ୍ତି, ତୁମ୍ଭେମାନେ କିପରି ସେମାନଙ୍କୁ ଶୃଙ୍ଗୀ—ପ୍ରାଣୀରେ ପରିଣତ କରିଥାଅ। ଯାଅ, ଶୀଘ୍ର ଗୋଟିଏ ମଠରେ ଆଶ୍ରୟ ନିଅ। ବିଦାୟ।

ଓଫି—ହେ ଦେବତାବୃନ୍ଦ, ତାଙ୍କୁ ପ୍ରକୃତିସ୍ଥ କର।

ହ୍ୟାମ୍—ମୁଁ ଖୁବ୍ ଭଲକରି ଜାଣେ, ତୁମ୍ଭେମାନେ ଚିତ୍ରବିଦ୍ୟାରେ ନିପୁଣା; ଭଗବାନ୍ ତୁମ୍ଭମାନଙ୍କୁ ଏକ ପ୍ରକାର ମୁଖ ଦେଇଅଛନ୍ତି, ତୁମ୍ଭେମାନେ ତାହାକୁ ରଞ୍ଜିତ କରି ଆଉ ଏକ ପ୍ରକାର କରିଦିଅ; ତୁମ୍ଭେମାନେ କେତେ ଭଙ୍ଗିରେ ଚାଲ ଓ ନୃତ୍ୟ କର, ଅସ୍ପୁଟ ସ୍ୱରରେ କଥା କହ ଏବଂ ଈଶ୍ୱରସୃଷ୍ଟ ଜୀବମାନଙ୍କର କେତେ କୃତ୍ରିମ ନାମ ସୃଷ୍ଟିକର; ତୁମ୍ଭମାନଙ୍କର ଅବମୃଷ୍ୟ-କାରିତା ନିମିତ୍ତ ତିରସ୍କାର କଲେ, ତୁମ୍ଭେମାନେ ନିତାନ୍ତ ନିଷ୍ପାପ ପ୍ରାଣୀପରି ବ୍ୟବହାର କର। ଦେଖ ଆଉ ମୁଁ ତୁମ୍ଭମାନଙ୍କୁ ଏପରି କରିବାକୁ ଦେବି ନାହିଁ, ଏ ସବୁହିଁ ମୋତେ ପାଗଳ କରି ଦେଇଛି। ମୋର ମତରେ ଆମ୍ଭମାନଙ୍କର ପରିଣୟ ପ୍ରଥା ଏକାବେଳକେ ଉଠାଇ ଦେବା ଉଚିତ; ଯେଉଁମାନେ ବିବାହିତ ସେମାନଙ୍କ ମଧ୍ୟରୁ ଜଣକ ଛଡ଼ା ଆଉ ସମସ୍ତେ ସଂସାର ଯାତ୍ରା ନିର୍ବାହ କରିବେ, ଅବଶିଷ୍ଟ ଲୋକମାନେ କୌମାର୍ଯ୍ୟ ବ୍ରତ ଅବଲମ୍ବନ କରି କାଳାତିପାତ କରିବେ। ଯାଅ ତୁମ୍ଭେ କୁମାରୀ ଆଶ୍ରମକୁ ଯାଅ।

( ପ୍ରସ୍ଥାନ )

ଓଫି—କି ଉଦାର ଚିତ୍ତ ଅହା ହୋଇଛି ବିକୃତ,
ନାହିଁ ରେ ସେ ଶୋଭା ସେହି ମନୋହର କାନ୍ତି !
ମନସିଜ-ମୂର୍ତ୍ତି, ବୁଧ-ଚକୋର-ଚନ୍ଦ୍ରମା,
(୧) ସେନାନୀ ପ୍ରଥମ ରଣେ ଦୁର୍ବାର ସେନାନୀ,
ସାମ୍ରାଜ୍ୟ କୌସ୍ତୁଭମଣି ନୟନ ବର୍ତ୍ତିକା,
ସୁରୁଚି ମୁକୁର ସର୍ବ ଗୁଣର ନିଧାନ,
ମଣୁଥିଲେ ନରେ ଯାକୁ ଆଦର୍ଶ ପୁରୁଷ,
ଥିଲେ ଯେତୁ ରୂପେ ଗୁଣେ ମାନଦଣ୍ଡ ସମ,
ବିକୃତ ବିକଳ ଏବେ ସେ ନରପୁଙ୍ଗବ ।
ନାରୀ କୁଳେ ଭାଗ୍ୟହୀନା ହୋଇ ପୁଣି ମୁହିଁ,
କରୁଥିଲି ପାନ ପ୍ରେମ-ବିପଞ୍ଚୀ-ନିକ୍ୱଣ,
ମୁରାରି-ମୁରଲୀ-ଧ୍ୱନି ସମ ମନୋହର,
କାହିଁ ଗଲା ସେ ସୁସ୍ୱନ ? କି ଦେଖିଲି ମୁହିଁ ?
ମାନସ-ମନ୍ଦିର-ଚିର-ଅଧିଷ୍ଠାତ୍ରୀ-ଦେବୀ
ବିଶ୍ୱର ଶକତି, ଯାର ମଧୁର ଝଙ୍କାରେ
ମୁଖରିତ ନିତ୍ୟ ନର-ହୃଦୟ-କନ୍ଦର,
ବିବଶା ବିଷାଦଗ୍ରସ୍ତା ପରୁଷଭାଷିଣୀ,
ସୁସଜ୍ଜିତ ନାଟ୍ୟଶାଳା ଛମିର ଅବୃତ ।
ଯୌବନର ଅନୁପମ ଲାବଣ୍ୟ-କୁସୁମ,
ଉନ୍ମାଦ-ପ୍ରଖର-କର-ସନ୍ତାପେ-ବିଶୁଷ୍କ !
ହା ଦୈବ ଲଲାଟେ ମୋର ଥିଲା କି ଲେଖନ

(୧) ସେନାନୀ—କାର୍ତ୍ତିକେୟ

ଦେଖିବାକୁ ମର୍ମନ୍ତୁଦ ଏ ଦାରୁଣ ଦୃଶ୍ୟ ।
( ରାଜା ଓ ପଲୋନିଅସ୍‌ର ପୁନଃ ପ୍ରବେଶ )

ରାଜା—ପ୍ରେମ । ସେ ଜଗତେ ଶୃଙ୍ଖଳିତ ନୁହେ ତାର
ମନୋବୃତ୍ତିଚୟ, ସ୍ଥାନେ ସ୍ଥାନେ ଅସଲଗ୍ନ
ହେଲେହେଁ ବଚନ ତାର, ନୁହେଁ କିନ୍ତୁ ତାହା
ପ୍ରମତ୍ତ ପ୍ରଳାପ । ଅନ୍ତର-ନିଭୃତ-ନୀଡେ
ଅଛି କିଛି ଡିମ୍ବାକାରେ ଉତ୍କଟ ଭାବନା,
ବିଷାଦ-ବିହଙ୍ଗୀ ତେଣୁ ବସି ନିରଜନେ
ଦେଉଛି ଉତ୍ତାପ, ଫୁଟିଲେ ସେ ଅଣ୍ଡ ନିଶ୍ଚେ,
ଘଟିବ ବିପଦ ମୋର ହେଉଛି ସଂଶୟ;
ପ୍ରତୀକାର ଆଶେ ତେଣୁ ମନାସିଛି ମୁହିଁ,
ପେଶିବି ବିଳାତେ ତାକୁ ନ କରି ବିଳମ୍ବ,
ଅମ୍ଭର ସେ ପ୍ରାପ୍ୟ କର କରିବ ସଂଗ୍ରହ
ତହୁଁ ପ୍ରଜାବର୍ଗଠାରୁ; ବିଭିନ୍ନ ଦେଶର
ବାୟୁ ସଲିଳ ପରଶେ, ଅଭିନବ ଦୃଶ୍ୟ
ସନ୍ଦର୍ଶନେ, ହେବ ସମ୍ଭବତଃ ଦୂର ତାର
ଏ ଚିତ୍ତ ବିକାର; ସେହି ଭାବେ ଅହରହ
ହୋଇ ଅଭିଭୂତ, ହୋଇଛି ବିକୃତ ତାର
ମଧୁର ଅନ୍ତର; କହ କି ମତ ତୁମ୍ଭର ?

ପଲୋ—ଉତ୍ତମ ପ୍ରସ୍ତାବ; ତଥାପି ବିଶ୍ୱାସ ମୋର
ପ୍ରତ୍ୟାଖ୍ୟାତ ପ୍ରଣୟର ପରିଣାମ ଏହା ।
ଓଫିଲିଆ କହ କିପାଁ ଅଛୁ ତୁ ଏ ଠାବେ ?

ଶୁଣିବୁ ଆଳାପ ତୋର ହ୍ୟାମ୍‌ଲେଟ ସହିତ,
କହିବାର ନାହିଁ ପ୍ରୟୋଜନ । ଅଭିରୁଚି
ଯଥା ପ୍ରଭୁ, କରନ୍ତୁ ତେସନ, ତେବେ ଯଦି
ଯୋଗାଏ ମନକୁ, ଅଭିନୟ ଅନ୍ତେ ରାଜ୍ଞୀ,
ଜନନୀ ତାଙ୍କର ଡାକି ନିଭୃତ ପ୍ରଦେଶେ,
କି କାରଣେ ଶୋକଗ୍ରସ୍ତ ହୋଇଛନ୍ତି ସେହି,
ବୁଝନ୍ତୁ ପଚାରି ତାଙ୍କ ମନୋଗତ ଭାବ
ସୁସ୍ପଷ୍ଟ ବଚନେ; ରହି ଅନ୍ତରାଳେ ମୁହିଁ,
ଲଭିଲେ ଆଦେଶ, ଶୁଣିବି ଆଳାପ । ବ୍ୟର୍ଥ
ଯଦି ହୁଏ ଏ ପ୍ରୟାସ, ପଠାନ୍ତୁ ବିଲାତେ
ଅବା ବନ୍ଦୀଭାବେ ରଖନ୍ତୁ ତାହାଙ୍କ, ଯହିଁ
ଇଚ୍ଛା ନୃପପଦ ସ୍ଥଳେ ।

ରାଜା— ହେବ ନଷ୍ଟେଁ ତାହା
ନୁହଇଁ ଉପେକ୍ଷଣୀୟ ମହତ ବିକୃତି ।

( ସମସ୍ତଙ୍କର ପ୍ରସ୍ଥାନ )



## ଦ୍ୱିତୀୟ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ସଭାଗୃହ ]

( ହ୍ୟାମ୍‌ଲେଟ ଓ ଅଭିନେତାମାନଙ୍କର ପ୍ରବେଶ )

ହ୍ୟାମ୍—ଦେଖ, ତୁମ୍ଭମାନଙ୍କୁ ମୋର ଏହି ଅନୁରୋଧ ଯେ ଏହି ବକ୍ତୃତାଟି ମୁଁ ଯେପରି ଭାବରେ ଉଚ୍ଚାରଣ କରି ତୁମ୍ଭମାନଙ୍କୁ

ଶୁଣାଇଲି, ତୁମ୍ଭେମାନେ ଠିକ୍ ସେହିପରି ସହଜ ଓ ସରଳ ଭାବରେ ଏହାକୁ କହିବ; ତାହା ହେଲେ ଏହା ଶ୍ରୁତିଶ୍ରାବ୍ୟ ହେବ; ପରନ୍ତୁ ତାହା ନ କରି ଅଧିକାଂଶ ଅଭିନେତାଙ୍କ ପରି ଯଦି ତାର ସ୍ୱରରେ ଚିତ୍କାର କରି କହ, ତା'ହେଲେ ନଗରର ଜନୈକ ଘୋଷଣାକାରୀକୁ ଡାକିଆଣି ତାହାକୁ ମୋର ବକ୍ତୃତା କହିବାକୁ ଦେବା ବରଂ ଶ୍ରେୟସ୍କର ବୋଲି ମୁଁ ମନେକରେ । ପୁଣି ଏହିପରି ବାରମ୍ବାର ସଜୋରରେ ହସ୍ତ ସଞ୍ଚାଳନ କରି ବାୟୁ ତରଙ୍ଗକୁ ଦ୍ୱିଖଣ୍ଡିତ କରିବ ନାହିଁ, ଧୀର, ନମ୍ର ଭାବରେ ହସ୍ତ ଚାଳନା କରିବ, କାରଣ ଭାବର ପ୍ରବଳ ପ୍ରବାହ ଓ ଘୂର୍ଣ୍ଣିବାୟୁ ସଦୃଶ ପ୍ରଚଣ୍ଡ ଆନ୍ଦୋଳନ ମଧ୍ୟରେ ତୁମ୍ଭମାନଙ୍କୁ ଏପରି ଗୋଟାଏ ସଂଯମ ଶିକ୍ଷା କରିବାକୁ ହେବ ଯେପରି କି ଭାବର ଅଭିବ୍ୟକ୍ତି ସୁଚାରୁରୂପେ ସାଧିତ ହୋଇ ପାରିବ । ଯେତେବେଳେ ଜଟାବେଣୀମଣ୍ଡିତ ଅସ୍ଫାଳନପ୍ରିୟ କୌଣସି ଅଭିନେତା ଯେଉଁ ନୀଚ ଶ୍ରେଣୀର ଶ୍ରୋତୃବର୍ଗଙ୍କର କୌଣସି ଚେତନା ନାହିଁ ଏବଂ ଯେଉଁମାନେ ଅଙ୍ଗଭଙ୍ଗୀ ଓ ଚିତ୍କାର ବ୍ୟତୀତ ଅନ୍ୟ କୌଣସି ଭାବ ଗ୍ରହଣ କରିବାକୁ ଅସମର୍ଥ, ଏହିଳି ଲୋକଙ୍କର କରତାଳି ପାଇବା ନିମିତ୍ତ ବୀର, ରୌଦ୍ର ପ୍ରଭୃତି ରସକୁ ତର୍ଜ୍ଜନ ଗର୍ଜ୍ଜନ କରି ଛିନ୍ନ ଭିନ୍ନ କରିଦିଏ, ତାହା ଶୁଣିଲେ ମୋର ହୃଦୟ ବଦୀର୍ଣ୍ଣ ହୋଇଯାଏ । ଯେଉଁ ଅଭିନେତା ଏପରି ଉଗ୍ରଚଣ୍ଡା ମୂର୍ତ୍ତି ଧାରଣ କରେ ତାହାକୁ ଆପାଦମସ୍ତକ କୋରଡା ଘାତରେ ପିଟିବାକୁ ମୋର ଇଚ୍ଛା ହୁଏ; ସେ ପ୍ରଚଣ୍ଡତା ଦେଖିଲେ ଅତ୍ୟାଚାରୀ ଶିରୋମଣି 'ହିରଡ୍'ର

ମଧ୍ଯ (୧) ଲଜ୍ଜାରେ ମୁଖ ଅବନତ ହୋଇଯିବ । ତୁମ୍ଭମାନଙ୍କୁ ମୁଁ ଅନୁରୋଧ କରୁଛି, ତୁମ୍ଭେମାନେ ସେପରି କରିବ ନାହିଁ ।

ପ୍ର: ଅଭି—ଯୁବରାଜ, ମୁଁ ପ୍ରତିଜ୍ଞା କରି କହୁଛି, ମୁଁ କଦାପି ସେପରି କରିବ ନାହିଁ ।

ହ୍ୟାମ୍—ନିତାନ୍ତ ନିର୍ଜୀବ ଓ ନିର୍ଗର୍ବ ପ୍ରାଣୀ ପରି ମଧ୍ଯ ଆଚରଣ କରିବ ନାହିଁ; ନିଜର ବିଚାର ଶକ୍ତି ପ୍ରୟୋଗ କରି ଯେଉଁ ସ୍ଥଳରେ ଯେପରି ଭାବଭଙ୍ଗି ଦେଖାଇଲେ ସମୀଚୀନ ହେବ, ତାହା କରିବ; ବାକ୍ୟ ଚେଷ୍ଟାର ଅନୁରୂପ ଓ ଚେଷ୍ଟା ବାକ୍ୟର ଅନୁରୂପ ହେବା ଆବଶ୍ୟକ । ତୁମ୍ଭମାନଙ୍କର ସ୍ମରଣ ରଖିବା ଉଚିତ ଯେ ତୁମ୍ଭମାନଙ୍କର କାର୍ଯ୍ୟ ଓ ବଚନ ପ୍ରାକୃତିକ ନିୟମର ଅଧୀନ: ପ୍ରକୃତିର ଶିଷ୍ଟତାର ସୀମା କଦାପି ଲଙ୍ଘନ କରିବନାହିଁ; କାରଣ କୌଣସି ବିଷୟରେ ଉକ୍ତ ସୀମା ଲଙ୍ଘନକଲେ, ଅଭିନୟର ଉଦ୍ଦେଶ୍ୟ ବିଫଳ ହୁଏ । ପ୍ରକୃତିର ଦର୍ପଣ ସ୍ୱରୂପ କାର୍ଯ୍ୟ କରିବାହିଁ ଅଭିନୟର ମୁଖ୍ୟ ଉଦ୍ଦେଶ୍ୟ, ଏହା ସୁଧୀ-ସମାଜରେ ରଙ୍ଗମଞ୍ଚର ସୃଷ୍ଟି ସମୟରୁ ଏପର୍ଯ୍ୟନ୍ତ ପରିଗୃହୀତ ହୋଇ ଆସିଅଛି । ସଦ୍‌ଗୁଣର ସ୍ୱରୂପ ବିକାଶନ ତଥା ନିନ୍ଦନୀୟ ବୃତ୍ତି ନିଚୟର ପ୍ରତିକୃତି ଯଥାଯଥ ଅଙ୍କନ ଓ କାଳର ଗତିଗତି ଅନୁରୂପ ବ୍ୟବହାର ପ୍ରଭୃତିର ସମ୍ୟକ୍‌ଚିତ୍ର ପ୍ରଦର୍ଶନ, ପୂର୍ଣ୍ଣାଙ୍ଗ ଅଭିନୟ ବିଶିଷ୍ଟ ଲକ୍ଷଣ ବୋଲି ବିବେଚିତ ହୁଏ । ଏହି ଗୁଡିକ

---

(୧) ହେରଡ୍—ଏ ଜଣେ ଅତ୍ୟାଚାରୀ ଇହୁଦୀ ରାଜା ଥିଲେ । ଏ ୩୭ ବର୍ଷ ରାଜତ୍ୱ କରିଥିଲେ । ଏହାଙ୍କର ରାଜତ୍ୱର ଶେଷ ବର୍ଷ ଯୀଶୁଖ୍ରୀଷ୍ଟ ବେଥେଲ୍‌ହେମ୍‌ରେ ଜନ୍ମଗ୍ରହଣ କରିଥିଲେ । ଯୀଶୁଙ୍କର ଜନ୍ମସମ୍ବାଦ ପାଇ ଏ ବେଥେଲ୍‌ହେମ୍‌ର ଶିଶୁମାନଙ୍କୁ ମାରି ପକାଇବା ପାଇଁ ଆଦେଶ ଦେଇଥିଲେ ।

ଅତି ରଞ୍ଜିତ ହେଲେ କିମ୍ବା ସମ୍ୟକ୍ ରୂପେ ଚିତ୍ରିତ ନ ହେଲେ, ଅଭିନୟଟି ଅନଭିଜ୍ଞ ଶ୍ରୋତୃବର୍ଗଙ୍କର ଚିତ୍ତରଞ୍ଜନ କରିପାରେ କିନ୍ତୁ କୋବିଦମାନଙ୍କର କଦାପି ମନୋଜ୍ଞାତ ହୋଇ ପାରିବ ନାହିଁ । ଅଭିନୟର ଦୋଷଗୁଣ ସମ୍ବନ୍ଧରେ କୌଣସି ସୁଦକ୍ଷ ସମାଲୋଚକର ଅଭିମତ, ଅନଭିଜ୍ଞ ଶ୍ରୋତୃବର୍ଗଙ୍କର ବାହାବା ଅବା କରତାଳି ଧ୍ୱନି ଅପେକ୍ଷା ଅଧିକ ମୂଲ୍ୟବାନ୍ ବୋଲି ମନେ କରିବାକୁ ହେବ । ଏଭଳି ଅନେକ ଅଭିନେତା ଅଛନ୍ତି ଯେଉଁମାନଙ୍କର ଅଭିନୟ ଦେଖି ଲୋକେ ଖୁବ୍ ପ୍ରଶଂସା କରି-ଥାନ୍ତି, ମୁଁ ଅବଶ୍ୟ ସେମାନଙ୍କର ନିନ୍ଦା କରିବାକୁ ଚାହେଁନାହିଁ, ତଥାପି ଯଥାର୍ଥତଃ କହିବାକୁ ଗଲେ ସେମାନଙ୍କର ଉଚ୍ଚାରଣ ଅଖ୍ରୀଷ୍ଟୀୟ ଓ ଭାବଭଙ୍ଗୀ ମନୁଷ୍ୟେତର ପ୍ରାଣୀ ସଦୃଶ । ସେମାନଙ୍କର ସଦର୍ପ ପଦକ୍ଷେପ ଦେଖି ଓ ଅମାନୁଷିକ ଗର୍ଜ୍ଜନ ଶୁଣି, ମୋର ମନେହେଲା ଯେପରି କି ପ୍ରକୃତି ସ୍ୱହସ୍ତରେ ସେମାନଙ୍କୁ ନ ଗଢି ତାର କୌଣସି ଶିକ୍ଷାନବିଶ୍ଦ୍ୱାରା ଗୋଟାଏ କିମ୍ଭୂତ କିମାକାର ପ୍ରାଣୀ କରି ସୃଷ୍ଟି କରିଅଛି; କାରଣ, ସେମାନଙ୍କର କ୍ରିୟାକଳାପ ମନୁଷ୍ୟୋଚିତ ବୋଲି ମୋତେ ବୋଧ ହେଲାନାହିଁ ।

ପ୍ରଃ ଅଭି—ମହାଭାଗ, ମୁଁ ଆଶାକରେଁ ଆମ୍ଭମାନଙ୍କ ମଧ୍ୟରେ ଉକ୍ତ ତ୍ରୁଟି ଗୁଡ଼ିକ ଅନେକ ପରିମାଣରେ ଆମ୍ଭେମାନେ ସଂଶୋଧିତ କରି ନେଇଅଛୁଁ ।

ହ୍ୟାମ୍—ନାହିଁ ସମ୍ପୂର୍ଣ୍ଣରୂପେ ସଂଶୋଧନ କର । ତୁମ୍ଭମାନଙ୍କ ମଧ୍ୟରୁ ଯେଉଁମାନେ ବିଦୂଷକର ଅଭିନୟ ଦେଖାଇବେ ସେମାନେ

ଯେପରି ସେମାନଙ୍କର ନିର୍ଦ୍ଦିଷ୍ଟ ଅଂଶ ବ୍ୟତୀତ ସ୍ୱରଚିତ କେତେକ ଗୁଡ଼ାଏ କଥା ନ କହନ୍ତି, କାରଣ ସେମାନଙ୍କ ମଧ୍ୟରୁ ଅନେକଙ୍କୁ ମୁଁ ଦେଖିଛି, ଯେଉଁମାନେ କୌଣସି ଗୁରୁତର ବିଷୟ ଅଭିନୀତ ହେବା ସମୟରେ କେତେକ ନିର୍ବୋଧ ଶ୍ରୋତୃବର୍ଗଙ୍କୁ ହସାଇବା ପାଇଁ ନିଜେ ଅଯଥା ହସିଥାନ୍ତି । ସେପରି ବିଦୂଷକଙ୍କର ଅଭିନୀତ ବିଷୟର ଗୁରୁତ୍ୱ ପ୍ରତି ଆଦୌ ଦୃଷ୍ଟି ନଥାଏ । ଯେଉଁ ବିଦୂଷକ ଦୁରାକାଂକ୍ଷାର ବଶବର୍ତ୍ତୀ ହୋଇ ନିଜର ବାହାଦୁରି ଦେଖାଇବା ପାଇଁ ଏପରି କରିଥାଏ ତାହାର ଚେଷ୍ଟା ନିତାନ୍ତ ଦୂଷଣୀୟ । ଯାଅ, ପ୍ରସ୍ତୁତ ହୁଅ ।

( ଅଭିନେତାମାନଙ୍କର ପ୍ରସ୍ଥାନ )

( ପଲୋନିଅସ୍, ରୋଜେନ୍‌କ୍ରାନ୍ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରବେଶ )

ମନ୍ତ୍ରିବର, କି ହେତୁ ଏଠାକୁ ଆସିଲ ? ରାଜା ଏହି ଅଭିନୟଟି ଦେଖିବେ ତ ?

ପଲୋ—ରାଜା ଓ ରାଣୀ ଉଭୟେ ଅଭିନୟଟି ଦେଖିବା ପାଇଁ ନିତାନ୍ତ ଉତ୍ସୁକ ଏବଂ ସେମାନେ ବର୍ତ୍ତମାନ ଏଠାକୁ ଆସିବେ ।

ହ୍ୟାମ୍—ତେବେ ଅଭିନେତାମାନଙ୍କୁ ଶୀଘ୍ର ପ୍ରସ୍ତୁତ ହୋଇ ଏଠାକୁ ଆସିବାକୁ ଆଦେଶ ଦିଅ ।

( ପଲୋନିଅସ୍‌ର ପ୍ରସ୍ଥାନ )

ତୁମ୍ଭେ ଦୁଇଜଣ ସେମାନଙ୍କୁ ଶୀଘ୍ର ଏଠାକୁ ପଠାଇବାର ବନ୍ଦୋବସ୍ତ କରିବ କି ?

ରୋଜେନ
ଗିଲ୍‌ଡେନ୍ } —ଅମ୍ଭେମାନେ କରିବୁଁ ଯୁବରାଜ ।

( ରୋଜେନ୍‌କ୍ରାନ୍‌ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରସ୍ଥାନ )

ହ୍ୟାମ୍—ହୋରେସିଓ, ତୁମ୍ଭେ କେଉଁଠାରେ ?

( ହୋରେସିଓର ପ୍ରବେଶ )

ହୋରେ—ଏହିଠାରେ ପ୍ରଭୁ, ତୁମ୍ଭର ଆଦେଶ ପାଳନ କରିବାକୁ ପ୍ରସ୍ତୁତ ଅଛି ।

ହ୍ୟାମ୍—ହୋରେସିଓ ! ଅକପଟ, ସରଳ ଉଦାର,
ତୁମ୍ଭ ପରି, ଅଦ୍ୟାବଧି ଦେଖି ନାହିଁ ଜଣେ ।

ହୋରେ—ଯୁବରାଜ !

ହ୍ୟାମ୍—ମଣ ନାହିଁ ଚାଟୁ ବାକ୍ୟ କହୁଛି ଯା ମୁହିଁ,
କହ, କେଉଁ ପୁରସ୍କାର ଲୋଭେ, ସ୍ତୁତିବାଦ
କରିବ ତୁମ୍ଭର ? ନିର୍ଦ୍ଧନ, ସମ୍ବଳ-ହୀନ
ତୁମ୍ଭର ନିକଟେ, ସଦ୍‌ଗୁଣ ସମ୍ଭାର ବିନା
ଅଛି ଅନ୍ୟ କେଉଁ ଧନ ? ଭିକାରୀର ସ୍ତୁତି
କିଏ କରେ ଏ ସଂସାରେ ? ଶଠ ବୁଦ୍ଧି ନାହିଁ
ତହିଁ କିଛି, ଚାଟୁକାର ମଧୁ ଲିପ୍ତ କରି
ତା ରସନା, କରୁ ସଦା ଧନୀକେ ଲେହନ,
ବୈନତେୟ ସମ ଜାନୁ ନୁଆଇଁ ଭୂତଳେ
କରୁ ସ୍ତୁତି ଗାନ, ଲଭିବ ସେ ଅର୍ଥ ଯହିଁ
ସ୍ତବ ବିନିମୟେ । ଶୁଣୁଛ ବଚନ ମୋର ?
ଯେଉଁ ଦିନୁଁ ଜ୍ଞାନ-ଦୀପ ଜଳି ମୋ ଅନ୍ତରେ

ଦେଖାଉଛ ଶବଳିତ ମାନବ-ଚରିତ୍ର,
ପ୍ରାଣର ଦୋସର ରୂପେ ନେଇଛି ମୁଁ ବାଛି
ଗୁଣେ ମୁଗ୍ଧ ହୋଇ ତବ, ହେ ଗୁଣ-ସାଗର
ଦେଖିଛି ମୁଁ ହୋଇ ତୁମ୍ଭେ ଦୁଃଖ ଅନ୍ତେବାସୀ,
ସହୁଛ ଅଶେଷ କ୍ଳେଶ ସହାସ୍ୟ ବଦନେ,
ଭାଗ୍ୟଦେବ ନିଷ୍ଠୁରର ମୁଷ୍ଟ୍ୟାଘାତ ଅବା
ପୁରସ୍କାର କରିଛ ଗ୍ରହଣ, ଛଳେ ମାତ୍ର
ସ୍ତୁତି, ନିନ୍ଦା କରି ନାହିଁ ହୃଦୟ ଚଞ୍ଚଳ ।

ମହତ ସେ, ନିୟନ୍ତ୍ରିତ ମନୋବୃତ୍ତି ଯାର
ସଦା ବିବେକ-ଶାସନେ, ନୁହଇ ସେ ଭାଗ୍ୟ—
ଦେବୀ-କର ଧୃତ ବଂଶୀ, ବଜାଇବ ନିଜ
ସ୍ୱରେ ଭାଗ୍ୟ ଇଚ୍ଛାମତେ । ଦେଖାଅ ସେ ନର
ଯେହୁ ନୁହେଁ ରିପୁ-ଦାସ, ବସାଇବି ନେଇ
ତାକୁ ହୃଦୟ ଆସନେ, ତୁମ୍ଭରି ସହିତ,
ପ୍ରଷ୍ଟାଙ୍କ ପଞ୍ଜୁର ତାର ହୃଦୟ-ସନ୍ଦିକ ।

କହିଲି ମୁଁ ଏତେ କଥା ପ୍ରାଣର ଆବେଗେ ।
ହେବ ଅଭିନୟ, ସଖା, ଅଦ୍ୟ ରଜନୀରେ
ରାଜାଙ୍କ ସାକ୍ଷାତେ, ଯେଉଁ ଭାବେ ପିତା ମୋର
ହୋଇଛନ୍ତି ହତ, ତାଦୃଶ ଗୋଟିଏ ଦୃଶ୍ୟ,
ଅଛି ଉକ୍ତ ଅଭିନୟେ, ସେହି ଅଙ୍କ ଯେବେ
ହୋଇବ ଆରମ୍ଭ, ପିତୃବ୍ୟେ ଅନନ୍ୟମନେ
ନିରେଖିବ ତୁମ୍ଭେ, ବାକ୍ୟ-ବାଣେ ଦୋଷୀ ଯେବେ

ନ ପଡବ ଧରା, ବୁଝିବ ସେ ପ୍ରେତ କଷ୍ଟେ
ଘୃଣିତ ନାରଙ୍କୁ; ଲୌହକାର-ଶାଳା ସମ
କଳ୍ପନା ମୋହର ପୂର୍ଣ୍ଣ ଅବର୍ଜନାସ୍ତୂପେ ।
ଦେଖିବ ଅନନ୍ୟମନେ, ଅପଲକ ନେତ୍ରେ
ମୁହିଁ ମଧ୍ୟ ନିରେଖିବ ବଦନ ତାଙ୍କର;
ଅଭିନୟ ଶେଷେ ଦୁହେଁ ହୋଇ ଏକତ୍ରିତ,
ସ୍ଥିର କରିବା ସ୍ଥିର ସିଦ୍ଧାନ୍ତ ଆମ୍ଭର ।

ହୋରା—ହେଉ, ପ୍ରଭୁ, ଅଭିନୟ କାଳେ ଯଦି ଏଡ଼ି
ଦୃଷ୍ଟିପଥ, ରଖିବେ ଗୋପନେ କିଛି, ଧୂଳି
ଦେଇ ମୋ ନୟନେ, ଦେବ ଯେଉଁ ଶାସ୍ତି ତବ
ଯୋଗାଇବ ମନେ ।

ହ୍ୟାମ୍—                    ଅଭିନୟ ଦେଖିବାକୁ
ରାଜା ରାଣୀ ଦୁହେଁ, ଆସୁଛନ୍ତି ଏହିଠାବେ;
କର ଆସନ ଗ୍ରହଣ, ରହିବ ନିର୍ଲିପ୍ତେ
ମୁହିଁ ।

(ଡେନ୍‌ମାର୍କ ଦେଶୀୟ ସାମରିକ ସଙ୍ଗୀତ । ତୂରୀ ଧ୍ୱନି । ରାଜା,ରାଣୀ ପଲୋନିଅସ୍, ଓଫିଲିଆ, ରୋଜେନ୍‌କ୍ରାନ୍ଜ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣ ପ୍ରଭୃତିଙ୍କର ପ୍ରବେଶ । )

ରାଜା—ଭ୍ରାତୁଷ୍ପୁତ୍ର ହ୍ୟାମ୍‌ଲେଟ୍ ତୁମ୍ଭେ କିପରି ଅଛ ? ଅତି ଉତ୍ତମ,
ମହାରାଜ; ମୁଁ କୃକଳାସ ପରି ବାୟୁସେବନ କରି ପ୍ରାଣଧାରଣ
କରୁଛି; କାରଣ ଆଶା ବର୍ତ୍ତମାନ ମୋର ଏକମାତ୍ର ଅଦ୍ଧାର୍ଯ୍ୟ ବସ୍ତୁ;

ତୁମ୍ଭେ କୁକ୍କୁଟକୁ କିନ୍ତୁ ଏପରି ଖାଦ୍ୟ ଦେଇ ହୃଷ୍ଟପୁଷ୍ଟ କରି ପାରିବ ନାହିଁ ।

ରାଜା—ହ୍ୟାମ୍‌ଲେଟ୍‌, ମୋର ପ୍ରଶ୍ନର ସହିତ ଏ ଉତ୍ତରର କୌଣସି ସମ୍ପର୍କ ନାହିଁ ।

ହ୍ୟାମ୍‌—ବର୍ତ୍ତମାନ ମୋର ମଧ୍ୟ କିଛି ସମ୍ପର୍କ ନାହିଁ । (ପଲୋନିଅସ୍‌ ପ୍ରତି) ମନ୍ତ୍ରିବର, ତୁମ୍ଭେ କହୁଥିଲ ନା ତୁମେ ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିବା ସମୟରେ ଥରେ ଅଭିନୟ ଦେଖାଇଥିଲ ?

ପଲୋ—ଦେଖାଇଥିଲି, ଯୁବରାଜ; ଏବଂ ଜଣେ ଭଲ ଅଭିନେତା ବୋଲି ମୋର ସୁଖ୍ୟାତି ଥିଲା ।

ହ୍ୟାମ୍‌—ତୁମ୍ଭେ କେଉଁ ଅଭିନୟ ଦେଖାଇଥିଲ ?

ପଲୋ—ମୁଁ ଜୁଲିଅସ୍‌ ସିଜାରର ଅଭିନୟ ଦେଖାଇଥିଲି, (୧) କ୍ୟାପିଟଲ୍‌ଠାରେ ବ୍ରୁଟସ୍‌ ମୋତେ ହତ୍ୟା କରିଥିଲା । (୨)

ହ୍ୟାମ୍‌—ଏପରି ଗୋଟିଏ ସୁନ୍ଦର ଗୋବତ୍ସକୁ ବଧ କରିବା ତା ପକ୍ଷରେ ନିତାନ୍ତ ପାଶବିକ କ୍ରିୟା ହୋଇଥିଲା । ଅଭିନେତାମାନେ ପ୍ରସ୍ତୁତ ଅଛନ୍ତି ତ ?

---

(୧) କ୍ୟାପିଟଲ୍‌—ରୋମର ବିଖ୍ୟାତ ଜୁପିଟର୍‌ (ରୋମୀୟ ଲୋକଙ୍କର ପ୍ରଧାନ ଦେବତା) ଙ୍କର ମନ୍ଦିର ।

(୨) ବ୍ରୁଟସ୍‌—ଏ ରୋମ୍‌ରେ ପ୍ରଜାତନ୍ତ୍ର ଶାସନର ପକ୍ଷପାତୀ ଥିଲେ । ସିଜାର୍‌ ରୋମ୍‌ରେ ଏକାଧିପତ୍ୟ ସ୍ଥାପନ କରିବାକୁ ଚେଷ୍ଟିତ ହେବାରୁ ଏ ତାଙ୍କର ଘନିଷ୍ଠ ବନ୍ଧୁ ହୋଇ ମଧ୍ୟ ତାଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରି ତାହାଙ୍କୁ ହତ୍ୟା କରିଥିଲେ ।

ଗ୍ରେଜେନ୍—ହଁ, ଯୁବରାଜ, ସେମାନେ କେବଳ ତୁମ୍ଭର ଅନୁମତିକୁ ଅପେକ୍ଷା କରିଛନ୍ତି ।

ରାଣୀ—ପ୍ରିୟ ହ୍ୟାମ୍‌ଲେଟ୍, ମୋ ନିକଟରେ ବସିବ ଆସ ।

ହ୍ୟାମ୍—ନାହିଁ, ମାତଃ, ଏଠାରେ ଗୋଟିଏ ଅଧିକ ଆକର୍ଷଣୀୟ ବସ୍ତୁ ଅଛି ।

ପଲୋ—(ରାଜାଙ୍କ ପ୍ରତି) ମହାରାଜ, ଶୁଣୁଛନ୍ତି ତ ?

ହ୍ୟାମ୍—ସୁନ୍ଦରୀ ଓଫେଲିଆ, ତୁମ୍ଭର କୋଳରେ ଶୟନ କରିବି କି ?

(ଓଫେଲିଆର ପଦଦେଶରେ ଶୟନ)

ଓଫି—ନାହିଁ, ଯୁବରାଜ ।

ହ୍ୟାମ୍—ମୁଁ କହୁଛି, ତୁମ୍ଭର କୋଳରେ ମସ୍ତକ ରଖି ଶୟନ କରିବି କି ?

ଓଫି—ତୁମ୍ଭର ତ ଆଜି ଖୁବ୍ ସ୍ଫୂର୍ତ୍ତି ଦେଖୁଛି, ଯୁବରାଜ ।

ହ୍ୟାମ୍—କାହାର, ମୋର ?

ଓଫି—ହଁ, ଯୁବରାଜ ।

ହ୍ୟାମ୍—ହେ ଭଗବାନ୍, ଖାଲି ତୁମ୍ଭର ପ୍ରୀତି ଜନ୍ମାଇବା ପାଇଁ, ଆମୋଦ ନ କରି ଆଉ ଲୋକ କ'ଣ କରିବ କହ ? ଦେଖୁନାହିଁ, ମୋର ପିତାଙ୍କର ମୃତ୍ୟୁର ଦୁଇଘଣ୍ଟା ମଧ୍ୟରେ ମୋର ମାତା କିପରି ପ୍ରସନ୍ନଚିତ୍ତା ହୋଇ ସହାସ୍ୟ ବଦନରେ ବସିଛନ୍ତି ।

ଓଫି—ନାହିଁ, ସେ ତ ଦୁଇ ଦୁଗୁଣେ ଚାରିମାସ ହେଲାଣି, ଯୁବରାଜ ।

ହ୍ୟାମ୍—ଏତେଦିନ ହୋଇ ଗଲାଣି ? ତାହାହେଲେ ଯମ ତାର କୃଷ୍ଣ ପରିଚ୍ଛଦ ଧାରଣ କରୁ, ମୁଁ ଆଉ କାହିଁକି ଅନର୍ଥକ ଏହା ପିନ୍ଧିଥିବି । ହେ ପ୍ରଭୁ, ଦୁଇମାସରୁ ଊର୍ଦ୍ଧ୍ୱ ହେଲା ସେ ମୃତ ହେଲେଣି,

ଅଦ୍ୟାପି ଲୋକେ ତାଙ୍କୁ ଭୁଲି ନାହାନ୍ତି ? ତାହାହେଲେ, ଅଶା-ହେଉଛି ମହତ୍ ବ୍ୟକ୍ତିର ମୃତ୍ୟୁପରେ ତାର ସ୍ମୃତି ଛଅମାସ କାଳ ଜୀବିତ ରହି ପାରିବ, କିନ୍ତୁ ତାର ଉପାସନା-ମନ୍ଦିର ପ୍ରସ୍ତୁତି ନିର୍ମାଣ କରାଇବା ଅବଶ୍ୟକ, ତା ନ ହେଲେ ଲୋକେ ଶୀଘ୍ର ପାସୋରି ପକାଇବେ ।

(ବଂଶୀବାଦନ । ଅଙ୍ଗଭଙ୍ଗି କରି ଅଭିନେତାମାନଙ୍କ ପ୍ରବେଶ)

[ଜଣେ ରାଜା ଓ ଜଣେ ରାଣୀ ସ୍ନେହପୂର୍ଣ୍ଣ ଭାବଭଙ୍ଗି ଦେଖାଇ ପ୍ରବେଶ କଲେ; ରାଣୀ ରାଜାଙ୍କୁ ଓ ରାଜା ରାଣୀଙ୍କୁ ଆଲିଙ୍ଗନ କଲେ । ରାଣୀ ନତଜାନୁ ହୋଇ ରାଜାଙ୍କ ପ୍ରତି ତାଙ୍କର ପ୍ରଗାଢ ସ୍ନେହ ଆକାର ଇଙ୍ଗିତଦ୍ୱାରା ପ୍ରକାଶ କଲେ । ରାଜା ତାଙ୍କୁ ହାତ ଧରି ଉଠାଇ ନେଇ ତାଙ୍କର ଗଳଦେଶରେ ନିଜର ମସ୍ତକ ରଖିଲେ, ତତ୍ପରେ ସେ ପୁଷ୍ପ-ସମାକୀର୍ଣ୍ଣ ଗୋଟିଏ ଉନ୍ନତ ସ୍ଥାନରେ ଶୟନ କଲେ । ରାଣୀ ତାଙ୍କୁ ସୁଷୁପ୍ତ ଦେଖି ସେଠାରୁ ଚାଲିଗଲେ । ଅନତିବିଳମ୍ବେ ଗୋଟିଏ ଲୋକ ସେଠାରେ ଉପସ୍ଥିତ ହୋଇ ରାଜାଙ୍କ ମସ୍ତକରୁ ମୁକୁଟ ନେଇ ତାହାକୁ ଚୁମ୍ବନ କଲା ଏବଂ ରାଜାଙ୍କର କର୍ଣ୍ଣ-ବିବରରେ ବିଷ ଢାଳି ଦେଇ ପ୍ରସ୍ଥାନ କଲା । ରାଣୀ ଫେରିଆସି ରାଜାଙ୍କୁ ମୃତ ଅବସ୍ଥାରେ ଦେଖି ଅତ୍ୟନ୍ତ ଅଧୀର ହେଲା ପରି ଭାବ ପ୍ରକାଶ କଲେ । ଆତତାୟୀ ଦୁଇ ତିନିଜଣ ମୂକ ବ୍ୟକ୍ତିଙ୍କ ସହିତ ସେଠାରେ ଉପସ୍ଥିତ ହୋଇ ରାଣୀଙ୍କୁ ସମବେଦନା ଜଣାଇଲା ଏବଂ ଶୋକ ପ୍ରକାଶ କଲା । ତତ୍ପରେ ସେମାନେ ଶବକୁ ନେଇ ଚାଲିଗଲେ । ଆତତାୟୀ ବହୁ ପ୍ରଲୋଭନ ଦେଖାଇ ରାଣୀଙ୍କର

ପ୍ରଣୟ ପ୍ରାର୍ଥୀ ହୋଇ, ରାଣୀ କହୁଥିଲେ ନିଜ ଅସମ୍ମତି ଜଣାଇଲେ କିନ୍ତୁ ଶେଷରେ ତାଙ୍କୁ ସ୍ୱାମୀରୂପେ ବରଣ କଲେ ।]

ଓଫି—ଯୁବରାଜ, ଏହାର ମର୍ମ କଣ ?

ହ୍ୟାମ୍—ଅବଶ୍ୟ ଏହାର ଅନ୍ତର୍ନିହିତ ଭାବ ।

ଓଫି—ସମ୍ଭବତଃ ଏହା ଅଭିନୀତ ବିଷୟର ଧାରାବାହିକ ସୂଚନା ।

(ସୂତ୍ରଧାରର ପ୍ରବେଶ)

ହ୍ୟାମ୍—ଆମ୍ଭେମାନେ ଏହି ଲୋକଠାରୁ ସବୁ ଜାଣି ପାରିବା, ଅଭିନେତାମାନେ କୌଣସି ବିଷୟ ଗୋପନ କରିବେ ନାହିଁ, ସେମାନେ ସବୁ କଥା କହିବେ ।

ଓଫି—ଏହି ଦୃଶ୍ୟର ମର୍ମ କ'ଣ ତାହା କଣ ସେ କହିବ ?

ହ୍ୟାମ୍—ହଁ, ଖାଲି ଏହି ଦୃଶ୍ୟ କାହିଁକି, ଅନ୍ୟ ଯେ କୌଣସି ଦୃଶ୍ୟ ତୁମ୍ଭେ ତାହାକୁ ଦେଖାଇବ, ତାର ସେ ମର୍ମ କହିଦେବ; ତୁମ୍ଭେ ଯଦି ତାହାକୁ ଦେଖାଇବାକୁ ଲଜ୍ଜା ବୋଧ ନ କର, ସେ ମଧ୍ୟ ତାହାର ମର୍ମ ତୁମ୍ଭକୁ କହିବାକୁ ଲଜ୍ଜା ବୋଧ କରିବ ନାହିଁ ।

ଓଫି—ଛି, ଛି, ତୁମ୍ଭେ ଏ କି କଥାଗୁଡ଼ାକ କହୁଅଛ । ମୁଁ ଏହି ଅଭିନୟଟିକୁ ଭଲ କରି ଦେଖିବ ।

ସୂତ୍ରଧାର—ଧୀରେ ହେନ ଧୀରେ ଏହି ଶୋକ-ଅଭିନୟ,
କୁଶୀଲବ ନୃତ୍ୟ ଲବେ ନ ଧର ମନରେ (୧)

(ପ୍ରସ୍ଥାନ)

---

(୧) କୁଶୀଲବ—ନଟ ।

**ହ୍ୟାମ୍**—ଏହା କଣ ପ୍ରସ୍ତାବନା, ନା ଅଙ୍ଗୁରୀୟ ଖୋଦିତ ଗୋଟିଏ
ବାକ୍ୟ ?

**ଓଫି**—ଏହା ସଂକ୍ଷିପ୍ତ, ଯୁବରାଜ ।

**ହ୍ୟାମ୍**—ନାରୀ-ପ୍ରେମ ପରି ।

(ଦୁଇଜଣ ଅଭିନେତାଙ୍କର ପ୍ରବେଶ—ରାଜା ଓ ରାଣୀ)

**ଅଭି:ରାଜା**—ଅରୁଣ ସାରଥିସହ ଦେବ ତ୍ୱିଷାମ୍ପତି
କରିଛନ୍ତି ପରିକ୍ରମ ଧରଣୀ ପୟୋଧି
ବାରିଧି ବଳୟୁ ଏକଚକ୍ର ରଥବରେ
ତିଂଶବାର, ତ୍ରିଂଶତ ଷଷ୍ଟୀଧା ଉତ୍ ସଂଖ୍ୟକ
ଶୀତ ରଶ୍ମି ପରକାଶୁ ତେଜେ ତନୁ କରି
ମଣ୍ଡିତ, କରିଛନ୍ତି ଧରା ପ୍ରଦକ୍ଷିଣ
ଯେଉଁ ଦିନୁ ପ୍ରେମ ଡୋରେ ପୁଷ୍ପ-ଶରାସନ
ବାନ୍ଧିଛନ୍ତି ଦେନି ପ୍ରାଣ ପବିତ୍ର ବନ୍ଧନେ ।

**ଅଭି:ରାଣୀ**—ପ୍ରେମର ବନ୍ଧନ ଛିନ୍ନ ହୋଇବା ପର୍ବରୁ,
ରବି ଶଶୀ ତେତେ ବାର କରନ୍ତୁ ଭ୍ରମଣ
ପୁନରପି ଧରା ଚକ୍ରପାଶେ, ଏହି ବାଞ୍ଛା
ବାଞ୍ଛାନିଧି ପଦେ ସଦା କରୁଛି ଜଣାଣ;
କିନ୍ତୁ କଷ୍ଟ ଦୋଷେ କାହିଁ ଅସି ବ୍ୟାଧି-ବ୍ୟାଳ,
ପଶି ଦେହ-ବିଳେ ତବ କରୁଛି ଶୋଷଣ,
ଶରୀର ସାମର୍ଥ୍ୟ ସହ ଚିତ୍ତପ୍ରଫୁଲ୍ଲତା,
ଦେଖି ତାହା ପ୍ରାଣ ମୋର ହେଉଛି ବ୍ୟାକୁଳ ।
ଜୀବିତେଶ, ପଦେ ତବ କରୁଛି ମିନତି,

ନ ହୁଏ କାତର ଦେଖି ବ୍ୟାକୁଳତା ମୋର,
ନାରୀର ହୃଦୟେ ଯେଣୁ ସ୍ନେହ, ପ୍ରୀତି ଭେଦ,
ବସ୍ତୁ ଅନୁପାତେ କେବେ ନ ହୁଅଇ ଦୃଷ୍ଟ;
କାହିଁ ଊଣା କାହିଁ ବେଶୀ ଥାଏ ଏହୁଭଳେ ।
ଏ ଭଗ୍ନ ପ୍ରଣୟ ମୋର ପ୍ରମାଣ ତାହାର
ଲଭିଅଛ ଗଣି ଗଣି, ଜଣାଅଛ ଭଲେ;
ଯାଦୃଶୀ ସେ ପ୍ରୀତି ତଥା ସ୍ନେହର ଆକାର,
ପ୍ରୀତି-ଚଳ-ଦଳ ଯହିଁ ତୋଳେ ଉଚ୍ଚ ଶିର, (୧)
ସ୍ନେହ-ମନ୍ଦାନିଳ ଧରି ପ୍ରଚଣ୍ଡ ମୂରତି,
ଥରାଇ ଦଏ ତା ତନୁ ଘୋର ବାତ୍ୟାସମ ।
ଅଭି : ରାଜା—ପ୍ରାଣେଶ୍ୱରି, ଜୀବନ୍ତୀ ସରିଲା ମୋହର,
ଆଶୁ ଭବମାୟା ତେଜି ଚଳିଯିବି ମୁହିଁ,
ଅବଶ ହୋଇଛି ଅଙ୍ଗ, ଶିଥିଳ ଇନ୍ଦ୍ରିୟ,
ଜୀର୍ଣ୍ଣ ବାସ ସମ ତନୁ ହୋଇଛି ବିଶୀର୍ଣ୍ଣ,
ରହ ତୁମ୍ଭେ ଚିରୁଣୀଲେ, ଏ ମହୀମଣ୍ଡଳେ
ଲଭିବ ସୁଖ୍ୟାତି, ପ୍ରେମ, ପାର୍ଥିବ ଗୌରବ,
ପତି ରୂପେ ସୁପୁରୁଷ ମୋ ଭଳି ପ୍ରଣୟୀ
ସମ୍ଭବତଃ ପ୍ରିୟେ—
ଅଭି: ରାଣୀ— ପୋଡଯାଉ ସେ ସମ୍ଭୋଗ,
ଏ ଭଳି ବାସନା ଯଦି ଥାଏ ମୋ ହୃଦୟେ,
ବିଶ୍ୱାସଘାତକୀ କଷ୍ଟେ ନାଶିବୁଲେ ମୁହିଁ;

---

(୧) ଚଳଦଳ—ଅଶ୍ୱତ୍ଥ ।

ତୁମ୍ଭ ଅନ୍ତେ ଅନ୍ୟ ବର କରିଲେ ବରଣ,
ଭାବେ ଯେମନ୍ତେ ପତିରୂପେ ଘୃଣିତ ବର୍ବର;
ପତିହନ୍ତ୍ରୀ ବିନା କିଏ ଲୋଡ଼ନ୍ତି ଅନ୍ୟ ପତି !

ହ୍ୟାମ୍—(ସ୍ୱଗତଃ) ଅସହ୍ୟ, ଅସହ୍ୟ !

ଅଭିଃ ରାଣୀ—ନ ଫୁଟଇ ପ୍ରେମ କେବେ ଦ୍ୱିତୀୟ ବିବାହେ,
(ସମଳ ସଲିଳେ କେବେ ଫୁଟେ କି କମଳ ?)
ଅନୁଳିପ୍ତ ଯେଣୁ ସଦା ସ୍ୱାର୍ଥପଙ୍କେ ତାହା;
ମରଣେ ଦ୍ୱିତୀୟ ଭର୍ତ୍ତା ଚନ୍ଦ୍ରୁ ଯେବେ ମୋର,
ଅବଶ୍ୟ ନିଧନ ଯୋଗ ଘଟିବ ତାହାର ।

ଅଭିଃ ରାଜା—ବିହ୍ୱଳ ଯଥାର୍ଥ ତବ ମନୋଗତ ଭାବ,
ନାହିଁ ସଂଶୟ ତହିଁରେ; କିନ୍ତୁ କହ ପ୍ରିୟେ,
ଆପଣା ପ୍ରତିଜ୍ଞା କିଏ କରଇ ପାଳନ ?
ସଙ୍କଳ୍ପ ସ୍ମୃତିର ଦାସ, ଯାକତ ଶୈଶବ
ପ୍ରଭଞ୍ଜନ-ନାହେ, ମାତ୍ର ପ୍ରଖରତା ତାର
ବୟୋବୃଦ୍ଧି ସଙ୍ଗେ କ୍ରମେ ହୁଅଇ ବିଲୁପ୍ତ;
ଅପକ୍ୱ ଫଳ ସଦୃଶ ରହିଛି ସେ ଲାଗି
ଏବେ ଶାଖ-ମଣ୍ଡାରୁ ହେ, ହେଲେ ପରିପକ୍ୱ
ପଡ଼ିବ ତା ଝଡ଼ି କିନ୍ତୁ ବିନା ବିକମ୍ପନେ ।
ସ୍ୱକୃତ ଋଣର ଭାର ଥୋଇ ନିଜ ଶିରେ
ପାଶୋରିବା ପରିଶୋଧ ସ୍ୱଭାବ ସୁଲଭ,
ଅପେ ଯହିଁ ଋଣୀ ଆପେ ଉତ୍ତମର୍ଣ୍ଣ ପୁଣି;
ଉତ୍ତେଜନା ବଶେ ଯେଉଁ ସଙ୍କଳ୍ପ ମାନସେ

ଜାତ ହୁଏ, ଲୀନ ତାହା ହୁଅଇ ଅବର
ସେହି ଭାବ ଅନ୍ତେ । ହର୍ଷ ଅବା ଖେଦ ଯେବେ
ହୁଅଇ ପ୍ରବଳ, ଆପଣା ପ୍ରଖର ସ୍ରୋତେ
ଆପେ ଯାଏ ଭାସି, ଯେନ ନଇ କୂର୍ମଜାଲ,
ଶଶୀସହ ଲୁଲଯାଏ କୌମୁଦୀ ଯେସନ ।
ହର୍ଷ ଅତିଶଯ୍ୟ ଯହୁଁ ବିଷାଦ ତାଜନା
ତୀବ୍ର ସେହିଠାବେ, ମାତ୍ର ସାମାନ୍ୟ କାରଣେ
ହର୍ଷ ହୁଏ ପରିଣତ ଶୋକେ, ଶୋକ ହର୍ଷେ ।

ଭଙ୍ଗୁର ଏ ଭବଲୀଳା, ସଦା ଚଳ ଚଳ,
ଭାଗ୍ୟ ବିପର୍ଯ୍ୟୟ ସଙ୍ଗେ ପ୍ରୀତିର ସ୍ଖଳନ
ନୁହଇଁ ବିଚିତ୍ର; ଭାଗ୍ୟ, ପ୍ରେମ ପରସ୍ପର
କି ସୂତ୍ରେ ଅବଦ୍ଧ, କିଏ ଅନୁଗତ କାର,
ଜାଣିବା ଦୁଷ୍କର । ସୌଭାଗ୍ୟ-ଶିଖରୁ ଯେବେ
ଖସିପଡ଼େ ନର, ପ୍ରିୟଜନେ ସଙ୍ଗ ତାର
କରି ପରିହାର, ଖରେ କରନ୍ତି ପ୍ରସ୍ଥାନ,
ମଧୁ ଶେଷେ ମଧୁଲୁବ୍ଧ ଯାଏ ଯଥା ଉଡ଼ି;
ନୀଚ ଜନ ଉଚ୍ଚପଦେ ହେଲେ ପ୍ରତିଷ୍ଠିତ,
ଅରି ବନ୍ଧୁ ରୂପେ ଆସି ପୂଜେ ତା ପୟର ।
ନମ୍ରତର ଏତେକାଳ କରିଅଛୁ ସେବା
ପ୍ରୀତି ସହଚରୀ ରୂପେ, ଭବର ଅଭାବ
ଭାଗ୍ୟଧର ଯେଣୁ ନ ଜାଣଇଁ କେବେ, ମାତ୍ର
ହତଭାଗ୍ୟ ପକ୍ଷେ ତାହା ଅତୀବ ଦୁର୍ଲଭ;

ଭାଗ୍ୟବନ୍ତ ଲଭେ ସଦା ବନ୍ଧୁ ସମାଦର,
ଦୁଃଖୀ ପ୍ରୀତି ବନ୍ଧୁମଧ୍ୟେ ଲଭେ ତିରସ୍କାର ।
ଶୁଣ ବକ୍ତବ୍ୟ ମୋହର: ଅଦୃଷ୍ଟ,ସଙ୍କଳ୍ପ
ବିପରୀତ ମାର୍ଗେ ଦୁହେଁ କରନ୍ତି ଗମନ,
ମାନବ ପ୍ରୟାସ ତେଣୁ ହୁଏ ବିପର୍ଯ୍ୟସ୍ତ;
ମାନସପ୍ରସୂତ ଚିନ୍ତା ମନୁଷ୍ୟ ଅଧୀନ,
ପରିଣାମେ ନାହିଁ କିନ୍ତୁ କର୍ତ୍ତୃତ୍ୱ ତାହାର;
ନ ଜାଣି କହୁଛ ତୁମ୍ଭେ ନ କରିବ କେବେ
ଗ୍ରହଣ ଦ୍ୱିତୀୟ ସ୍ୱାମୀ, କିନ୍ତୁ ଏହି ଭାବ
ପ୍ରଥମ ପତି ବିୟୋଗେ ହେବ ତିରୋହିତ ।

ଅଭି: ରାଣୀ—ନ ଦେବ ଏ ଧରା ଅନ୍ନ, ଅମ୍ବର ଆଲୋକ,
ଦିବସ ଆମୋଦ, ମୋତେ ରଜନୀ ସୁନିଦ୍ରା,
ଆଶା ବୃଡ଼ିଯିବ ମୋର ନୈରାଶ୍ୟ-ଉର୍ମିରେ,
ତାପସୀର ତୁଚ୍ଛ ଭୋଜ୍ୟ ହେବ ମୋ ଆହାର,
ଯେଉଁ ଶୁଭ କର୍ମେ ହସ୍ତ କରିବି ଅର୍ପଣ,
ହେବ ତାହା କଳଙ୍କିତ ନିରାନନ୍ଦମୟ,
ଦହିବ ମୋ ତନୁ ଚିର ଅଶାନ୍ତି-ଅନଳ,
ହୋଇ ମୁଁ ବିଧବା ଯେବେ ପତ୍ନୀ ହେବି ପୁଣି ।

ହ୍ୟାମ୍—ଯଦି ସେ ତାର ପ୍ରତିଜ୍ଞା ବର୍ତ୍ତମାନ ଲଙ୍ଘନ କରେ !

ଅଭି: ରାଜା—ଦାରୁଣ ପ୍ରତିଜ୍ଞା । ହୋଇଛି ମୁଁ ଅବସନ୍ନ,
ଦିବସର କ୍ଲାନ୍ତି ଦୂର କରିବି ଶୟନେ
ପ୍ରିୟେ, ଦେଉଛି ମେଲଣି । (ଶୟନ)

ଅନ୍ତଃ ରାଣୀ— ସ୍ଥାନଦ୍ୱୟ ମନ୍ତ୍ରିତ୍ତ

ଗଳ, କରୁ ସୁଣୀତଳ; ବପଦ ଝଟିକା]

ନ ବୁଡ଼ାଅ ପ୍ରେମ-ତରୀ ବଚ୍ଛେଦ-ସାଗରେ । (ପ୍ରସ୍ଥାନ)

ହ୍ୟାମ୍—ମାତଃ, ଏ ଅଭିନୟଟି ତୁମ୍ଭଙ୍କୁ କପରି ବୋଧ ହେଉଅଛି ?

ରାଣୀ—ଏହି ସ୍ତ୍ରୀଲୋକଟି ଅତି ମାତ୍ରାରେ ପ୍ରେମ ଓ ଅନୁରକ୍ତି ଦେଖାଇଲା ପରି ମୋତେ ବୋଧ ହେଉଅଛି ।

ହ୍ୟାମ୍—କନ୍ତୁ ସେ ତାର ପ୍ରତିଜ୍ଞା ରକ୍ଷା କରିବ ।

ରାଜା—ତୁମ୍ଭେ ଏହି ଅଭିନୟର ବିଷୟଟା ଜାଣ ତ ? ଏଥିରେ ତ କୌଣସି ଦୋଷ ନାହିଁ ?

ହ୍ୟାମ୍—ନାଁ ନାଁ ମହାରାଜ, ସେମାନେ କେବଳ ତାମାସା ଦେଖାଉ ଅଛନ୍ତି; ତାମାସାରେ ସେମାନେ ବିଷ ପ୍ରୟୋଗ କରିବେ; କିଛି ଦୋଷ ନାହିଁ ।

ରାଜା—ଏହି ଅଭିନୟର ନାମ କ'ଣ ?

ହ୍ୟାମ୍—ମୂଷା-ଯନ୍ତା, ଅର୍ଥାତ୍, ଏହାର ଭାବ ସେହିପରି । ଭିଏନାରେ ଯେଉଁ ଗୋଟାଏ ହତ୍ୟା ହୋଇଥିଲା, ତାହାର ଛାୟା ଅବଲମ୍ବନ କରି ଏହି ଅଭିନୟଟି ଲିଖିତ ହୋଇଅଛି । ଗଞ୍ଜାଗୋ ସେଠାକାର ରାଜା ଥିଲେ, ଏବଂ ତାଙ୍କର ସ୍ତ୍ରୀଙ୍କର ନାମ ଥିଲା ବ୍ୟାପ୍ଟିଷ୍ଟା । ଆପଣ ଶୀଘ୍ର ସବୁ ଜାଣିପାରିବେ, ଏହା ଗୋଟାଏ ନୃଶଂସ କାଣ୍ଡ; କନ୍ତୁ ତହିଁରେ କିଛି କ୍ଷତି ବୃଦ୍ଧି ନାହିଁ । ଆପଣଙ୍କ ଏବଂ ଆମ୍ଭମାନଙ୍କ ପରି ଯେଉଁମାନଙ୍କର ଚରିତ୍ର ନିଷ୍କଳଙ୍କ, ସେମାନଙ୍କୁ ଏହା ସ୍ପର୍ଶ କରି ପାରିବ ନାହିଁ ।

ଯେଉଁମାନେ ପାପୀ ସେମାନେ ସିନା ବିଚଳିତ ହେବେ,
ଆମ୍ଭମାନଙ୍କର ସେଥିରେ କ'ଣ ଯାଏ ଆସେ ।

( ଲୁସିଅନସର ପ୍ରବେଶ )

ଏହାର ନାମ ଲୁସିଅନସ, ଏ ରାଜାଙ୍କର ଭ୍ରାତୁଷ୍ପୁତ୍ର ।

ଓଫି—ଯୁବରାଜ, ମୁଁ ଦେଖୁଛି ତୁମ୍ଭେ ଜଣେ ସୁଦକ୍ଷ ପ୍ରସ୍ତାବକ ।

ହ୍ୟାମ୍—ତୁମ୍ଭେ ତୁମ୍ଭର ପ୍ରେମିକର ସହିତ ଯଦି ରଙ୍ଗମଞ୍ଚରେ ପ୍ରେମ-ଅଭିନୟ ଦେଖାଅ, ତାହାହେଲେ ତୁମ୍ଭମାନଙ୍କର ଭାବଭଙ୍ଗୀ ଦେଖି ତୁମ୍ଭମାନଙ୍କର ଅନ୍ତରର ଭାବ ମୁଁ ବୁଝାଇ ଦେଇପାରେ ।

ଓଫି—ତାହା ଅପେକ୍ଷା ଅନେକ ଅଂଶରେ ଭଲ ଓ ଅନେକ ଅଂଶରେ ମନ୍ଦ ।

ହ୍ୟାମ୍ ପତିର ଭଲ, ମନ୍ଦ ସବୁ ସହ୍ୟ କରିବ ବୋଲି ତ ତୁମ୍ଭେମାନେ ବିବାହ ସମୟରେ ଶପଥ ଗ୍ରହଣ କରିଥାଅ । ଘାତକ, ଆରମ୍ଭ କର; ତୁମ୍ଭର ମୁଖଭଙ୍ଗୀରେ ଆଉ ପ୍ରୟୋଜନ ନାହିଁ । ଆରମ୍ଭ କର—

"ବାୟସ କର୍କଶ ରବେ ପ୍ରତିହିଂସା ଧ୍ୱନି
କରୁଛି ପ୍ରଚୁର ।"

ଲୁସିଅନସ—ଏକାକୀ ମୁଁ ଲଭିଅଛି ଉତ୍କୃଷ୍ଟ ସୁଯୋଗ,
ନାହିଁ ଅନ୍ୟ ପ୍ରାଣୀ କେହି, ନିର୍ଜନ ଏ ସ୍ଥଳୀ,
ଚିନ୍ତା ପାପପୂର୍ଣ୍ଣ, ହସ୍ତ ଦୁଷ୍କର୍ମେ ଉଦ୍ୟତ,
ଭେଷଜ କଠିନ ଯୋଗ୍ୟ, କାଳ ଅନୁକୂଳ;
ରେ ଦୂଷ୍ୟ ନିର୍ଯାସ, ତୋତେ ନିଶୀଥ ସମୟେ

କରିଛି ସଂଗ୍ରହ କରି ଲତା ବିଷୀକୃତ,
ତିନିବାର ମାରଣ-ମନ୍ତ୍ରେ, ସଂହାରଣୀ ଦେବୀ
ତୋର କରିଛି ନିଗୁଣ ବର୍ଦ୍ଧିତ; ସେ ଶକ୍ତି
ପ୍ରଭାବେ, ଇଷ୍ଟ ଦେବୀଙ୍କ କଲ୍ୟାଣେ, କର ତୁ
ଜୀବନ-ପୀୟୂଷ ରସ ଶୋଷଣ ଅଚିରେ ।

( ନିଦ୍ରିତ ବ୍ୟକ୍ତିର କର୍ଣ୍ଣ ବିବରରେ ବିଷ ଢାଳିଦେବା )

ହ୍ୟାମ୍—ସେ ତାର ରାଜ୍ୟ ପାଇବା ଲୋଭରେ ଅସକ୍ତ ହୋଇ ଶୋଇ-ଥିବା ବେଳେ ତାର ଉଦ୍ୟାନରେ ତାକୁ ବିଷ ପ୍ରୟୋଗ କଲା । ଅଦ୍ୟାପି ଏ ଗଳ୍ପ ସୁନ୍ଦର ଇଟାଲୀୟ ଭାଷାରେ ଲିଖିତ ହୋଇ ସେ ଦେଶରେ ପ୍ରଚଳିତ ଅଛି । ସେ ରାଜାର ନାମ ଗଞ୍ଜାଗୋ; କିପରି ଏହି ଘାତକ ତାର ସ୍ତ୍ରୀର ପ୍ରଣୟଭାଜନ ହେବ ତାହା ତୁମ୍ଭେ ଶୀଘ୍ର ଦେଖିବାକୁ ପାଇବ ।

ଓଫି—ରଜା ଆସନ ତ୍ୟାଗ କରି ଉଠିଲେଣି ।

ହ୍ୟାମ୍—କ'ଣ ଏହି ସାମାନ୍ୟ ଅଭିନୟ ଦେଖି ଏତେ ଦୂର ଭୀତ ହୋଇ ପଡ଼ିଲେ ?

ରାଣୀ– ପ୍ରଭୁ, କିପରି ବୋଧ କରୁଅଛ ?

ପଲୋ—ଏହି ଅଭିନୟଟା ବନ୍ଦ କରିଦିଅ ।

ରଜା—ମୁଁ ଯାଉଅଛି, ମୋତେ ଆଲୋକ ଦେଖାଅ ।

ସମସ୍ତେ—ଆଲୋକ, ଆଲୋକ, ଆଲୋକ ।

(ହ୍ୟାମ୍‌ଲେଟ୍ ଓ ହୋରେସିଓ ବ୍ୟତୀତ ଅନ୍ୟ ସମସ୍ତଙ୍କର ପ୍ରସ୍ଥାନ)

ହ୍ୟାମ୍—ତୁକଅଁର ଗତି ଏସନ
ଦେଖ ନର ନାଶିଏ,
ଶୋଇଛି କେ ସୁଖ-ତଳପେ
ତେଙ୍ଗ ରହୁଛି କଏ;
ସୌଭାଗ୍ୟ-ଶିଖରେ ବସିଛି
କଏ ହରଷମନେ,
କାନ୍ଦି କାନ୍ଦି କଏ ବୁଲଇ
ଅଶ୍ରୁ-ପୂର୍ଣ୍ଣ ନୟନେ ।

ଅଚ୍ଛା, କହ ଦେଖି, ଭାଗ୍ୟ ଯଦି ମୋ ପ୍ରତି ବିମୁଖ ହୁଏ ଏବଂ ମୋର ଉପାର୍ଜ୍ଜନର ଅନ୍ୟ କୌଣସି ଉପାୟ ନ ଥାଏ, ତାହାହେଲେ କୁଶୀଲବର ପରବଦ୍ଧୁଳ ପରିଚ୍ଛଦ ଧାରଣ କରି ଏହିପରି ଗାନ କଲେ, ମୋର ସଙ୍ଗୀତରେ ମୁଗ୍ଧ ହୋଇ ମୋତେ କ'ଣ କୌଣସି ନାଟ୍ୟସମ୍ପ୍ରଦାୟ ଅଂଶୀଦାରରୂପେ ଗ୍ରହଣ କରିବ ନାହିଁ ?

ହୋରା—ହଁ, ତୁମ୍ଭେ ଅର୍ଦ୍ଧାଂଶ ପାଇ ପାର ।

ହ୍ୟାମ୍—ନାଁ, ମୁଁ ପୂର୍ଣ୍ଣାଂଶ ଦାବୀ କରି ପାରେ; ଯେହେତୁ
ଜାଣ, ସଖା, ଏହି ଭୂଖଣ୍ଡ
ଯଥା ଅମରାବତୀ,
ଥିଲେ ତହିଁ ଇନ୍ଦ୍ରପ୍ରତିମ
ଗୁଣବନ୍ତ ନୃପତି;
ଅତର୍କିତେ ପଶି ତସ୍କର
ତାକୁ କରିଛି ଜୁର

ସିଂହାସନେ ତାର ବସିଛି
ଶୃଗୁ, କାମୀ, ମୟୂର ।

ହୋରା—'ମୟୂର' ଅପେକ୍ଷା 'ଖର' ଦେଇ ଯତିପାତ କରିଥିଲେ ଭଲ ହୋଇଥା'ନ୍ତା ।

ହ୍ୟାମ୍—ପ୍ରିୟ ହୋରାସିଓ, ପ୍ରେତର କଥାକୁ ମୁଁ ଏକସହସ୍ର ମୁଦ୍ରା ଦେଇ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । ଦେଖିଲ ତ ?

ହୋରା—ଖୁବ୍ ଭଲ କରି, ଯୁବରାଜ ।

ହ୍ୟାମ୍—ଯେତେବେଳ ସେ ବିଷର କଥା କହୁଥିଲେ, କାହିଁ, ଦେଖିଛ ତ ?

ହୋରା—ମୁଁ ତାଙ୍କୁ ଖୁବ୍ ଭଲ କରି ଲକ୍ଷ୍ୟ କରିଛି ।

ହ୍ୟାମ୍—କି ମଜା ! ଆସ ଗାୟକବୃନ୍ଦ, ବଂଶୀ ବଜାଇ ତୁମ୍ଭମାନଙ୍କର ସଙ୍ଗୀତ ଶୁଣାଅ, ରାଜା ଏଭଳି ସୁନ୍ଦର ଚିତ୍ତାକର୍ଷକ ଅଭିନୟ ନ ଦେଖିଲେ ନାହିଁ; ତାଙ୍କୁ ବୋଧହୁଏ ଏହା ଭଲ ଲାଗିଲା ନାହିଁ । ଆସ, ତୁମ୍ଭମାନଙ୍କର ସଙ୍ଗୀତ ଶୁଣାଅ ।

(ରୋଜେନ୍‌କ୍ରାନ୍ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପୁନଃ ପ୍ରବେଶ)

ଗିଲ୍‌ଡେନ୍—ଯୁବରାଜ, ଅନୁଗ୍ରହ କରି ଗୋଟିଏ କଥା କହିବାକୁ ଦେବେ କି ?

ହ୍ୟାମ୍—ଖାଲି ଗୋଟାଏ କଥା କାହିଁକି, ଗୋଟାଏ ପୁରା ଇତିବୃତ୍ତ କହି ପକାଅ ।

ଗିଲ୍‌ଡେନ୍—ମହାଶୟ, ରାଜା—

ହ୍ୟାମ୍—ହଁ, ମହାଶୟ, ତାଙ୍କର କ'ଣ ହେଲା ?

ଗିଲ୍‌ଡେନ୍‌—ସେ ଅଭିନୟ ଦେଖିଲା ପରେ ଏଠାରୁ ଯାଇ ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଛନ୍ତି ।

ହ୍ୟାମ୍‌—କ'ଣ ସୁରା ସେବନ କରି, ମହାଶୟ ?

ଗିଲ୍‌ଡେନ୍‌—ନାଁ । ଯୁବରାଜ, ଉତ୍ତେଜନାବଶତଃ ।

ହ୍ୟାମ୍‌—ତା' ହେଲେ ତାଙ୍କର ପିତ୍ତାଧିକ୍ୟ ହୋଇଛି, ଶୀଘ୍ର ଡାକ୍ତରକୁ ତାଙ୍କର ରୋଗର ବିବରଣ ଜଣାଇଲେ ଭଲ ହେବ; ଏ ସମୟରେ ମୁଁ ଯଦି ତାଙ୍କୁ କୌଣସି ସାରକ ଔଷଧି ଦିଏ, ତାହାହେଲେ ତାଙ୍କର ରୋଗ ବଢ଼ିପାରେ ।

ଗିଲ୍‌ଡେନ୍‌—ଯୁବରାଜ, ମୋର ପ୍ରଶ୍ନର ଏପରି ଅସଂଯତ ଉତ୍ତର ନ ଦେଇ, ଟିକିଏ ସଙ୍ଗତ ଭାବରେ କହିଲେ ମୁଁ ଅତ୍ୟନ୍ତ ବାଧିତ ହେବି ।

ହ୍ୟାମ୍‌—ମୁଁ ତ ଅବାଚ ଅଛି, ମହାଶୟ; କହ ।

ଗିଲ୍‌ଡେନ୍‌—ତୁମ୍ଭର ମାତା, ରାଣୀ, ନିତାନ୍ତ ଦୁଃଖିତା ହୋଇ ତୁମ୍ଭପାଖକୁ ମୋତେ ପଠାଇ ଅଛନ୍ତି ।

ହ୍ୟାମ୍‌—ମୁଁ ତୁମ୍ଭକୁ ଅଭ୍ୟର୍ଥନା କରୁଛି ।

ଗିଲଡେନ୍‌—ନାଁ, ଯୁବରାଜ, ତୁମ୍ଭର ଏଭଳି ଭଦ୍ରତା ଏ ସମୟର ଉପଯୋଗୀ ନୁହେଁ । ତୁମ୍ଭେ ଯଦି ଅନୁଗ୍ରହ କରି ମୋର କଥାର ଯଥାଯଥ ଉତ୍ତର ଦେବ ତାହାହେଲେ ତୁମ୍ଭର ମାତାଙ୍କର ଆଦେଶ ମୁଁ ତୁମ୍ଭକୁ ଜଣାଇବି; ଯଦି ତା ନ ହୁଏ, ତୁମ୍ଭଠାରୁ ବିଦାୟ ନେଇ ତୁମ୍ଭର ମାତାଙ୍କ ନିକଟକୁ ଫେରିଯିବି ।

ହ୍ୟାମ୍‌—ମହାଶୟ, ମୁଁ ପାରିବି ନାହିଁ ।

ଗିଲ୍ଡେନ୍—କ'ଣ, ଯୁବରାଜ ?

ହ୍ୟାମ୍—ମୁଁ ତୁମକୁ ଯୁକ୍ତିସଙ୍ଗତ ଉତ୍ତର ଦେଇ ପାରିବି ନାହିଁ, କାରଣ ମୋର ବୁଦ୍ଧିର ଶକ୍ତି ବ୍ୟାଧିଗ୍ରସ୍ତ; ଏପରି ଅବସ୍ଥାରେ ମୁଁ ଯେଉଁଠିରି ଉତ୍ତର ଦେଇ ପାରିବି, ତାହା ତୁମେ ପାଇବ। ଅତଏବ ଆଉ ଅଧିକ ବାକ୍ୟବ୍ୟୟ ନ କରି, ବର୍ତ୍ତମାନ ବିଷୟ କ'ଣ ତାହା ମୁଁ ଜାଣିବାକୁ ଚାହେଁ। ତୁମେ କହିଲ ନା, ମୋର ମାତା –

ରୋଜେନ୍—ସେ ଏହି କଥା କହୁଛନ୍ତି—ତୁମର ବ୍ୟବହାର ଦେଖି ସେ ଅତ୍ୟନ୍ତ ବିସ୍ମିତା ଓ ଅସନ୍ତୁଷ୍ଟା ହୋଇ ଅଛନ୍ତି।

ହ୍ୟାମ୍—ଯେଉଁ ପୁତ୍ର ତାର ମାତାକୁ ଏପରି ବିସ୍ମିତ କରିପାରେ ସେ ନିଶ୍ଚେ ଜଣେ ଅଦ୍ଭୁତକର୍ମା ହେବ। କିନ୍ତୁ ସେହି ମାତାଙ୍କର ବିସ୍ମୟର ପରିଣତି କେଉଁଠାରେ, ଯଦି ଜାଣିଥାଅ କହ।

ରୋଜେନ୍—ତୁମେ ଶୟନ କରିବା ପୂର୍ବରୁ, ତାଙ୍କର ନିଭୃତ ପ୍ରକୋଷ୍ଠରେ ସେ ତୁମକୁ କିଛି କହିବାକୁ ଇଚ୍ଛା କରନ୍ତି।

ହ୍ୟାମ୍—ଅଚ୍ଛା, ତାଙ୍କର କଥା ଆମର ଶିରୋଧାର୍ଯ୍ୟ, ଆମକୁ ଆଉ କିଛି କହିବାର ଅଛି କି ?

ରୋଜେନ୍—ଯୁବରାଜ, ଏକସମୟରେ ତୁମେ ମୋତେ ଭଲ ପାଉଥିଲ।

ହ୍ୟାମ୍—ବର୍ତ୍ତମାନ ମଧ୍ୟ ମୁଁ ତୁମକୁ ଭଲ ପାଏ।

ରୋଜେନ୍—ଯୁବରାଜ, ତୁମର ଏ ଚିତ୍ତଚାଞ୍ଚଲ୍ୟର କାରଣ କ'ଣ ? ତୁମେ ତୁମର ବନ୍ଧୁକୁ ତୁମର ମନୋବେଦନା ନ ଜଣାଇବା ଦ୍ୱାରା ତହିଁରୁ ନିଷ୍କୃତି ଲାଭ କରିବାର ଉପାୟ ମଧ୍ୟ ତୁମେ ଜାଣି ଶୁଣି ରୁଦ୍ଧକରି ଦେଉଅଛ, ଏହା କ'ଣ ତୁମେ ବୁଝିପାରୁ ନାହଁ ?

ହ୍ୟାମ୍—ମହାଶୟ, ମୋର ତ ଆଉ ଉନ୍ନତିର କୌଣସି ଆଶା ନାହିଁ ।

ରୋଜେନ୍—ତାହା କିପରି ହୋଇପାରେ ? ତୁମ୍ଭେ ଯେ ଡେନ୍‌ମାର୍କର ଉତ୍ତରାଧିକାରୀ ଏହା କ'ଣ ରାଜା ନିଜେ ପ୍ରକାଶ କରି ନାହାନ୍ତି ?

ହ୍ୟାମ୍—ହଁ, ମହାଶୟ, ତଥାପି ଗୋଟାଏ ଅତି ପ୍ରାଚୀନ ପ୍ରବାଦ ବାକ୍ୟ ଅଛି—"ଘାସ କଅଁଳୁ କଅଁଳୁ ଘୋଡା ଖତମ୍" ।

( ବଂଶୀସହ ଅଭିନେତାମାନଙ୍କର ପୁନଃ ପ୍ରବେଶ )

ଓ, ତୁମ୍ଭେମାନେ ବଂଶୀ ଆଣିଛ ? ମୋତେ ଗୋଟାଏ ଦିଅ ତ । ଆସ ଟିକିଏ ଅନ୍ତରାଳକୁ ଯିବା—ଅଚ୍ଛା, ତୁମ୍ଭେମାନେ କୌଶଳରେ ମୋର ମନୋଗତ ଭାବ ଜାଣିବାକୁ କାହିଁକି ଏତେ ଚେଷ୍ଟା କରୁଅଛ ?

ଗିଲ୍‌ଡେନ୍—ଯୁବରାଜ, ମୋର କର୍ତ୍ତବ୍ୟ ସାଧନ କରିବାକୁ ଯାଇ ଯଦି ମୁଁ ଧୃଷ୍ଟତା ଦେଖାଇ ଥାଏ, ତାହା ହେଲେ ତୁମ୍ଭ ପ୍ରତି ମୋର ଯେଉଁ ସ୍ନେହ ଅଛି ତାହା ମୋର ସ୍ୱଭାବକୁ କର୍କଶ କରି ଥାଇପାରେ ।

ହ୍ୟାମ୍—ତୁମ୍ଭର କଥା ମୁଁ ଭଲରୂପେ ବୁଝି ପାରିଲି ନାହିଁ । ତୁମ୍ଭେ ଏହି ବଂଶୀ ବଜାଇବ ?

ଗିଲ୍‌ଡେନ୍—ନାହିଁ, ଯୁବରାଜ, ମୁଁ ପାରିବି ନାହିଁ ।

ହ୍ୟାମ୍—ଅନୁଗ୍ରହ କରି ଟିକିଏ ବଜାଅ ।

ଗିଲ୍‌ଡେନ୍—ସତେ, ମୁଁ ପାରିବି ନାହିଁ ।

ହ୍ୟାମ୍—ସାଙ୍ଗଟା ପରି ଟିକିଏ ବଜାଅ ନା ।

ଗିଲ୍‌ଡେନ୍—ମୁଁ ତ ବଂଶୀ ଉପରେ ଧରିବାକୁ ହିଁ ଏ ତାହା ଜାଣେ ନା ବଜାଇବା କଥା ତେଣିକି ଥାଉ ।

ହ୍ୟାମ୍—ଏହା ଖୁବ୍ ସହଜ, ଠିକ୍ ମିଛ କଥା କହିଲାପରି; ଏହି ଯେଉଁ ଛିଦ୍ର ଗୁଡ଼ାକ ଦେଖୁଛ, ତହିଁରେ ତୁମର ବୁଢ଼ା ଅଙ୍ଗୁଳି ଓ ଅନ୍ୟାନ୍ୟ ଅଙ୍ଗୁଳି ସବୁ ଦେଇ ଚାପିଧର, ତାରପର ମୁହଁରେ ଲଗାଇ ଫୁଙ୍କିଦିଅ—ତା' ହେଲେ ତୁମ୍ଭେ ଦେଖିବ ଏଥିରୁ କେଡ଼େ ମଧୁର ସ୍ୱର ବାହାରିବ । ଦେଖ ଏହିସବୁ ତାର ଛିଦ୍ର ।

ଗିଲ୍‌ଡେନ୍—କିନ୍ତୁ ଏ ସବୁ ଅଙ୍ଗୁଳିରେ ଚାପି ଏଥିରୁ ମୁଁ ମଧୁର ସ୍ୱର ବାହାର କରି ପାରିବି ନାହିଁ—ମୁଁ ସେ କୌଶଳ ଜାଣେ ନାହିଁ ।

ହ୍ୟାମ୍—ତାହା ହେଲେ ତୁମ୍ଭେ ମୋତେ କେଡ଼େ ନିର୍ବୋଧ ବୋଲି ମନେ କର ଭାବି ଦେଖ ତ । ତୁମ୍ଭେ ମୋତେ ବଜାଇବାକୁ ଚାହିଁ, ମନେ କରୁଛ ଯେ ମୋଠାରୁ ଇଚ୍ଛାମତେ ସ୍ୱର ବାହାର କରି ପାରିବ, ମୋର ହୃଦ-ବଂଶୀର ବିଭିନ୍ନ ସ୍ୱର ଗ୍ରାମ ଜାଳନା କରିବାକୁ ସମର୍ଥ ହେବ ଅଥଚ ଏହି କ୍ଷୁଦ୍ର ବଂଶୀଟିର କି ଚମତ୍କାର ସ୍ୱର ଓ ତାନ ତାହା ତୁମ୍ଭେ ବାହାର କରିବାକୁ ଅସମର୍ଥ । ହା, ଅଦୃଷ୍ଟ, ତୁମ୍ଭେ କ'ଣ ମନେ କରୁଛ ଯେ ଏହି ସାମାନ୍ୟ ବଂଶୀ ଅପେକ୍ଷା ମୁଁ ଅଧିକ ସହଜରେ ଓ ଅଳ୍ପାୟାସରେ ବାଜିବି । ତୁମ୍ଭେ ମୋତେ ଯେ କୌଣସି ବାଦ୍ୟ ଯନ୍ତ୍ର ବୋଲି ମନେ କରନା କାହିଁକି, ତୁମ୍ଭେ ମୋତେ ଫୁଙ୍କି ଉତ୍ପୀଡ଼ିତ କରିପାର କିନ୍ତୁ ବଜାଇ ପାରିବ ନାହିଁ ।

(ପଲୋନିଅସ୍‌ର ପ୍ରବେଶ)

ଭଗବାନ୍ ତୁମ୍ଭର ମଙ୍ଗଳ କରନ୍ତୁ ମହାଶୟ ।

ପଲୋ—ଯୁବରାଜ, ରାଣୀ ବର୍ତ୍ତମାନ ତୁମ୍ଭ ସହିତ ଆଳାପ କରିବାକୁ ଇଚ୍ଛା କରନ୍ତି ।

ହ୍ୟାମ୍—ଅଚ୍ଛା, ଆକାଶରେ ଏହି ଯେ ଖଣ୍ଡେ ମେଘ ଦେଖୁଛ ତାହା କ'ଣ ଦେଖିବାକୁ ଅନେକଟା ଉଷ୍ଟ୍ରପରି ନୁହେଁ ?

ପଲୋ—ବାସ୍ତବିକ୍ ତାହା ଦେଖିବାକୁ ଗୋଟାଏ ଉଷ୍ଟ୍ରପରି ।

ହ୍ୟାମ୍—ମୋର କିନ୍ତୁ ମନେ ହୁଏ ତାହା ଦେଖିବାକୁ ନେଉଳପରି ।

ପଲୋ—ହଁ ତାର ପିଠିଟା ନେଉଳର ପିଠି ପରି ଦେଖା ଯାଉଅଛି ।

ହ୍ୟାମ୍—ତିମିମାଛ ପରି ନୁହେଁ କି ?

ପଲୋ—ଅନେକଟା ସେହିପରି ।

ହ୍ୟାମ୍—ଚାଲ, ତା' ହେଲେ ଶୀଘ୍ର ମୁଁ ମାତାଙ୍କ ନିକଟକୁ ଯାଉଅଛି । (ସ୍ୱଗତ) ସେମାନେ ମୋତେ ନିତାନ୍ତ ନିର୍ବୋଧ ମନେ କରୁଛନ୍ତି ଏବଂ ସେମାନଙ୍କର ଉଦ୍ଦେଶ୍ୟ ସାଧନ ପାଇଁ ମୁଁ ଯାହା କହୁଛି ସେଥିରେ ହିଁ ମାରି ଦେଉଛନ୍ତି । (ପ୍ରକାଶ୍ୟେ ) ଚାଲ ମୁଁ ଶୀଘ୍ର ଯାଉଛି ।

ପଲୋ—ମୁଁ ସେହି କଥା କହିବି ।

ହ୍ୟାମ୍—ସେଟା ତ ଅତି ସହଜ କଥା । (ପଲୋନିଅସ୍‌ର ପ୍ରସ୍ଥାନ )

ବନ୍ଧୁବର୍ଗ, ତୁମ୍ଭେମାନେ ମଧ୍ୟ ଯାଅ ।

( ହ୍ୟାମ୍‌ଲେଟ୍ ବ୍ୟତୀତ ଅନ୍ୟ ସମସ୍ତଙ୍କର ପ୍ରସ୍ଥାନ )

ଉପସ୍ଥିତ ଏବେ ରଜନୀର ସମ୍ମୋହନ

କାଳ; ଉନ୍ମୁକ୍ତ କବର ଦ୍ୱାର, ପ୍ରେତାଳୟ

ମଣିପୁରେ ତାର ପେଶିଛି ଦୂଷିତ ବାୟୁ;
ଏହି ତ ସମୟ, ଏକାଳେ ମୁଁ କରିପାରେ
ତପ୍ତ ରକ୍ତ ପାନ, ଏଭଳି ନୃଶଂସ କ୍ରିୟା
ଦେଖି ଯାହା ଭୟେ ଦିବା ହୋଇବ ସ୍ତମ୍ଭିତ ।
ଶାନ୍ତ ହୁଅ ଚିତ୍ତ, ଯିବ ମାତୃସନ୍ନିଧାନେ ।
ଅନ୍ତର ସ୍ୱଭାବ ତୋର ନ ଯା ରେ ବିସୋରି,
ହେଲେହେଁ ପାଷାଣ ସମ କଠିନ ଏ ହିଆ
ନିରୋ(୧) ନରେ ଅସ୍ତ୍ର ତହିଁ ନ କରୁ ପ୍ରବେଶ;
ହେଉ ନିଷ୍ଠୁର ପ୍ରକୃତି ମୋର, କିନ୍ତୁ କରୁ
ସ୍ୱଧର୍ମ ପାଳନ; ବଚନ-ଛୁରିକାଘାତେ
ଜନନୀ-ପେଶଲ-ପ୍ରାଣ ପକାଇବ କାଟି,
ମାତ୍ର ନ କରିବ କେବେ ଛୁରିକା ପ୍ରୟୋଗ;
ରସନା ସହିତ ଅସ୍ତ୍ର ଦ୍ୱୈଧୀଭାବ କରୁ
ଏ ବ୍ୟାପାରେ; କରିବି ମୁଁ ବାକ୍ୟ-ବାଣେ ବିଦ୍ଧ
ତା ହୃଦୟ, କେଶ ସ୍ପର୍ଶ ନ କରିବି ତାର ।

( ପ୍ରସ୍ଥାନ )



(୧) ନିରୋ—ଏ ଖ୍ରୀଷ୍ଟାବ୍ଦ ୫୪ରୁ ୬୮ ପର୍ଯ୍ୟନ୍ତ ରୋମ୍‌ର ସମ୍ରାଟ୍ ଥିଲେ । ଏ ଅତ୍ୟନ୍ତ ନିଷ୍ଠୁର ପ୍ରକୃତିର ଲୋକ ଥିଲେ ଏବଂ ନିଜର ମାତାଙ୍କୁ ହତ୍ୟା କରିଥିଲେ ।

## ତୃତୀୟ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ପ୍ରକୋଷ୍ଠ ]

( ରାଜା, ରୋଜେନ୍‌କ୍ରାନ୍‌ସ୍ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରବେଶ)

ରାଜା— ନୁହଁଇ ସନ୍ତୁଷ୍ଟ ମୁହିଁ ତାର ବ୍ୟବହାରେ,
ବାତୁଳତା ତାର ପୁଣି କରିବା ଉପେକ୍ଷା
ନୁହେଁ ସମୀଚୀନ; ତେଣୁ ହୁଅ ହେ ପ୍ରସ୍ତୁତ;
ସ୍ୱନାମ-ମୁଦ୍ରିତ-ଲିପି ଦେବ ଏହିକ୍ଷଣି,
ଘେନ ତାହା, ଯିବ ତାର ଗହଣେ ବିଲାତେ ।
ସାମ୍ରାଜ୍ୟ-ଶାସନ-ଭାର ବହି ମୋ ମସ୍ତକେ,
ନ କରିବା ପ୍ରତିକାର ନୁହଇ ଉଚିତ;
ହେଉଛି ବର୍ଦ୍ଧିତ ଯେଣୁ ବାତୁଳତା ତାର,
କେତେବେଳେ କି ବିପଦ ଘଟିବ କେ ଜାଣେ ।

ଗିଲ୍‌ଡେନ୍— ହୋଇବୁଁ ପ୍ରସ୍ତୁତ ଅମ୍ଭେ ଜଳଯାତ୍ରା ପାଇଁ;
ସମୁଚିତ ଏ ଅଶଙ୍କା ନରନାଥଙ୍କର,
ଲକ୍ଷ ଲକ୍ଷ ପ୍ରଜା ଯେଣୁ ବାହୁଛାୟାତଳେ
ରହିଛନ୍ତି, ରାଜଦଣ୍ଡ କରିଣ ଆଶ୍ରୟ,
କରିବା ପାଳନ ତାଙ୍କୁ ରାଜ-ଧର୍ମ୍ମ ସିନା ।

ରୋଜେନ୍— ନଗଣ୍ୟ ମାନବ ଯାର ପ୍ରବେଶ ପ୍ରସ୍ଥାନ
ଭବ-ରଙ୍ଗମଞ୍ଚେ ହୁଏ ଅଲକ୍ଷ୍ୟେ ସାଧିତ,
ବିପଦର ସମ୍ମୁଖୀନ ହେଲେ ତାର ମଧ୍ୟ
ଆତ୍ମରକ୍ଷା ଯଥା ଶକ୍ତି କରିବା ବିହିତ,

ବହୁଜନ ଭକ୍ତି ଯେହ୍ନ, ଯାହାର ଅଗ୍ରେପୃ
ବହୁଜନର ସୁଖେ କାଳ କରନ୍ତି କ୍ଷେପଣ,
ଅନୁରକ୍ଷା କଲେ ତାର ଉପାୟ ବିଧାନ
କରିବା ଉଚିତ, ଶତଗୁଣେ । ରାଜଶକ୍ତି

ନୁହଇ ସାମାନ୍ୟ, ଅବ[illegible]ର ମାନ ନୁହେଁ
ରାଜାଙ୍କ ଜୀବନ; ହୋଇଲେ ବିପନ୍ନ ତାହା,
ଅସଂଖ୍ୟ ସମ୍ପ୍ରଦାୟ, ଝାଣିକାଏ, ଥାଏ ଯାହା
ନିକଟେ ତାହାର, ପ୍ରବଳ ପ୍ଲାବନେ ଯଥା
ଗ୍ରାମ ଜଳାବର୍ତ୍ତି ମାଡ଼ିଦଏ ଗଛେଁ ତାର
ସାନ ବଡ଼ ଅସେ ଯାହା ବୃତ୍ତ ସନ୍ନିକର୍ଷେ ।

ସୁବିଶାଳ ଚକ୍ର ସମ ଏହୁ ରାଜଶକ୍ତି,
ହୋଇଛି ସ୍ଥାପିତ ତୁଙ୍ଗ ଶିଖରୀ ଶିଖରେ,
ବିରାଟ ତା ଅରରାଜି ଗାତ୍ରେ ଦୃଢ଼ରୂପେ
ରହିଛି ଗ୍ରଥିତ କେତେ କ୍ଷୁଦ୍ର କ୍ଷୁଦ୍ର ବସ୍ତୁ
ଅଗଣିତ ଯେବେ ତାର ହୁଅଇ ପତନ,
ଛୁମୂଳ ନିନାଦେ ଧରା ହୁଅଇ କମ୍ପିତ,
ପେଷି ହୋଇ ବହୁ ପ୍ରାଣୀ ତେଜନ୍ତି ପରାଣ ।

ଶୋକାକୁଳ ହୋଇ ନୃପ ଛାଡ଼ିଲେ ନିଃଶ୍ୱାସ,
ସମଗ୍ର ସାମ୍ରାଜ୍ୟେ ଶୁଭେ ପ୍ରତିଧ୍ୱନି ତାର ।

ରାଜା—ହୁଅ ହେ ସଜ୍ଜିତ ଅଶ୍ରୁ ଜଳଯାନା ପାଇଁ,
ନିଗଡ଼ିତ କରିବ ମୁଁ ଅଳକା-ପୟୂର,
ବୁଲଇ ନିରତେ ଯେଣୁ ଘଟାଇ ବିପ୍ଳବ ।

ଗିଲ୍‌ଡେନ୍‌ }
ରୋଜେନ୍‌ } —ଅବିଳମ୍ବେ ପ୍ରଭୁ ଆମ୍ଭେ ହୋଇବୁଁ ସଜ୍ଜିତ ।

(ରୋଜେନ୍‌କ୍ରେନ୍‌ସ ଓ ଗିଲଡେନ୍‌ଷ୍ଟାର୍ଣ୍ଣର ପ୍ରସ୍ଥାନ )

(ପଲୋନିଅସ୍‌ର ପ୍ରବେଶ)

ପଲୋ—ନରନାଥ, ଯୁବରାଜ ଯାଉଛନ୍ତି ଏବେ
ଜନନୀ-ପ୍ରକୋଷ୍ଠେ; ପ୍ରଚ୍ଛଦ ପଶ୍ଚାତେ ରହି
ଶୁଣିବି ଆଳାପ; ରୂଢ଼ ବ୍ୟବହାର ପାଇଁ
କଷ୍ଟସ୍ୱ ଭର୍ତ୍ସନା ରାଣୀ କରିବେ ତାହାଙ୍କୁ;
ତଥାପି ଜନନୀ ସଦା ସନ୍ତାନ-ବତ୍ସଳା
ତେଣୁ ରାଜମଣି, ତବ ବାକ୍ୟ ଅନୁସରି
ମଣଇ ଉଚିତ ମୋର ରହିବା ସେଠାରେ ।
ମାଗୁଛି ମେଲାଣି, ପ୍ରଭୁ, ଆସିବି ମୁଁ ଫେରି
ଶୟନ ପୂର୍ବରୁ ତବ ଦେବାକୁ ବାରତା ।

ରାଜା—ମନ୍ତ୍ରିବର, ହେଉ ତୁମ୍ଭେ ଧନ୍ୟବାଦ । (ପଲୋନିଅସ୍‌ର ପ୍ରସ୍ଥାନ)
ଅହୋ !
ଘୃଣିତ ଏ ପାପ ମୋର, ଯାଇ ପୂତି-ଗନ୍ଧେ,
କରିଛି ଅକୁଳ ଦବେ ଦେବତା ନିଚୟ;
ଅଭିଶପ୍ତ ପ୍ରାଣ, ଭ୍ରାତୃବଧ ଗୁରୁପାପେ
ଭାରାକ୍ରାନ୍ତ, ନାହିଁ ଶକ୍ତି କରିବି ପ୍ରାର୍ଥନା,
ବ୍ୟାକୁଳ ଏ ଚିତ୍ତ ହେଉଛି ଧାବିତ ସ୍ୱତଃ,
ପ୍ରବଳ ଆବେଗେ, ମାତ୍ର ଦୃଢ଼ ପାପ-ରଜ୍ଜୁ,
ଆକର୍ଷି ସବଳେ ତାକୁ କରୁଛି ନିରସ୍ତ;

ବେନ କର୍ଣ୍ଣେ ଯୁଗପତ କରି ହସ୍ତକ୍ଷେପ,
କର୍ତ୍ତବ୍ୟବିମୂଢ଼ ଯଥା ହୁଅଇ ମାନବ,
ତେସନ ମୁଁ ବେନଭାବେ ହୋଇ ଆନ୍ଦୋଳିତ,
ରହିଛି ଦିଶଙ୍କୁ ସମ ଛୁଇଁ ଅର୍ଦ୍ଧ ପଥେ ।
ଅଗ୍ରଜ ଶୋଣିତେ ଲିପ୍ତ ହୋଇ ପାପହସ୍ତ,
ଲଭିଛି ସ୍ଥୂଳତା, ନାହିଁ କି ଅମର ପୁରେ
ନୀରଧର ପୁଞ୍ଜ, କରିବାକୁ ଶୁଭ୍ର ପୁଣି
ତୁଷାର ସଦୃଶ, ଏ କର ଲୋହିର ଢ଼ାଳି
ପୂତ ବାରିଧାର ? ନୁହେଁ କି ଦୟାର କାର୍ଯ୍ୟ,
ପାପିଷ୍ଠ ପୁରତେ, ଥୋଇ ସୌମ୍ୟ-ମୂର୍ତ୍ତି ତାର,
ମହନୀୟ ଗୁଣେ, କରିବା ନିରସ୍ତ ପାପୀ
ଦୁଷ୍କର୍ମ ନିଚୟ ? କପାଁ ନରେ ପ୍ରଭୁ ପଦେ
କରନ୍ତି ପ୍ରାର୍ଥନା ? ନୁହେଁ କି ଦ୍ୱିବିଧ ଲକ୍ଷ୍ୟ
ପ୍ରାର୍ଥନାର ? "ନ ହେଉ ପତିତ ପାଦ ପାପ—
ଗର୍ତ୍ତେ ମୋର, ହେଲେ, ପ୍ରଭୁ, ଦୟାବହି କର
ହେ ଉଦ୍ଧାର," ପ୍ରାର୍ଥନାର ଏହି ତ ବଚନ ।

ତେବେ କପାଁ ହୋଇବି ନିସ୍ୱନ ? ଜଣାଇବି
ଦୁଃଖ ଜ୍ୱାଳା ତୋଳି ଊର୍ଦ୍ଧ୍ୱେ ସନ୍ତପ୍ତ ନୟନ ।
ହୋଇଛି ମୁଁ ପାପେ ଲିପ୍ତ, କି ଭାବେ ପ୍ରାର୍ଥନା
କଲେ ମୁଁ ଲଭିବି ମୁକ୍ତି ସେ ପାପ କବଳୁଁ ?
କହିବି କି, କର ପ୍ରଭୋ ବିମୋଚନ ଭ୍ରାତୃ—
ହତ୍ୟା ଦୋଷ ? ନୁହଇ ତ ସୁ ଲକ୍ଷିତ ତାହା;

ଯେ ହେତୁ ଏ ପାପଗର୍ଭେ ହୋଇଛ ପତିତ
ଅଦ୍ୟାପି କରୁଛ ତାର ଫଳଭୋଗ ମୁହିଁ;
ରହିଛ ଅଦ୍ୟାପି ଶିରେ ସୁବର୍ଣ୍ଣ ମୁକୁଟ,
ସେହି ଦୁରାକାଙ୍‌କ୍ଷା ପ୍ରାଣେ ହେଉଛି ସ୍ପନ୍ଦିତ,
ରହିଛ ତ ସେହି ରାଣୀ ଅର୍ଦ୍ଧାଙ୍ଗିନୀ ରୂପେ,
ସମ୍ଭବେ କି କ୍ଷମା କେବେ ଦୋଷ ବର୍ତ୍ତିମାନେ ?

ସଂସାର-ଅବଳ-ସରେ ନ୍ୟାୟ-ଶୁଭ୍ର-କାନ୍ତ,
ନ ହୁଏ ପ୍ରକଟ ବିଶୁଦ୍ଧ ଆକାରେ; ଦୋଷୀ
ତାର ଲୌହମୁଷ୍ଟି ଘୋଡ଼ାଇ ରଜତେ, ଠେଲି
ଦିଏ ନ୍ୟାୟର ଶାସନ; କାଞ୍ଚନ-ସମ୍ଭାର
ଥୋଇ ସିଂହାସନେ ତାର, ଅନୁଚର ରୂପେ
ତାକୁ ଖଟାଏ ପଥରେ, ଜଗତର ଏହି
ରୀତି ସିନା ! ଅନ୍ୟ ଦରବାରେ କିନ୍ତୁ ନୁହେଁ
ତା ସମ୍ଭବ, ଚତୁରତା ନିରସ୍ତ ସେ ଠାବେ,
ଧର୍ମ ତହିଁ ନ୍ୟାୟ ଦଣ୍ଡ ଧରି ଦିବ୍ୟ କରେ,
କାର୍ଯ୍ୟାକାର୍ଯ୍ୟ ସୂକ୍ଷ୍ମ ଭାବେ କରନ୍ତି ବିଗ୍ରର,
ପାପୀର ଦୁଷ୍କୃତ ଭାର ଥୋଇ ସ୍ତରେ ସ୍ତରେ,
ଗୋଟି ଗୋଟି କରି ତାର ଯଥାର୍ଥ ପ୍ରମାଣ
ଲଭିବା ମାନସେ, ପଗ୍ଭରନ୍ତି ପ୍ରଶ୍ନପୁଞ୍ଜ,
ନ ଦେଲେ ଉତ୍ତର ଭଲେ ନ ଦିଅନ୍ତି ଛାଡ଼ି ।
କି ଆଶା ରହିଲା ତେବେ, କି କରିବି ମୁହିଁ ?
କେମନ୍ତେ ମୁଁ ପରିତ୍ରାଣ ଲଭିବି ଏ ପାପୁଁ ?

ଦେଖିବି କି ଅନୁଶୟେ ପ୍ରସବେ କି ଫଳ,
ଲଭନ୍ତି ପାପୀଏ ଯେଣୁ ପ୍ରଭୁଙ୍କ କରୁଣା,
ସେହି ମାର୍ଗ ଅନୁସରି, ଆତ୍ମ-ସଂଶୋଧନ
ବିନା, ଖାଲି ଅନୁଶୟେ କିନ୍ତୁ କେବେ ମିଳେ
କି ସୁଫଳ ? ମିଟଇ କି ତୃଷା କେବେ ବାରି
ବିନା; ମାନି ବାରି ଉଚ୍ଚାରଣେ ? ପଡ଼ିଛି ମୁଁ
ବିଷମ ସଙ୍କଟେ, ନାହିଁ ମୁକତିର ଉପାୟ;
ସ୍ୱକୃତ ଦୁଷ୍କର୍ମ-ଜାଲେ ହୋଇ ବିଜଡ଼ିତ,
ଭୂଲକାଠି ସମ ଆତ୍ମା ହୋଇଛି ଅବଦ୍ଧ;
ପଡ଼ିଲେ ଅଠାକାଠିରେ ପତଙ୍ଗି ଯେସନ;
କରେ ଯେତେ ଚେଷ୍ଟା ବଳେ ଯିବା ପାଇଁ ଉଡ଼ି,
ହୁଅଇ ଅବଦ୍ଧ ତେତେ ଦୃଢ଼ତର ରୂପେ;
ତେସନ ଏ ଆତ୍ମା ହୁଏ ସ୍ୱକର୍ମେ ଜଡ଼ିତ ।
ଦେବଦୂତବୃନ୍ଦ, ହୋଇ କୃପା ପରବଶ,
କର ହେ ଉଦ୍ଧାର ମୋତେ ବିପଦ-ସାଗରୁ;
ନତହୁଅ ଜାନୁଯୁଗ୍ମ, ତେଜି କଠୋରତା,
ଅନ୍ତର, କର୍କଶ ବୃତ୍ତି ଫିଙ୍ଗିଦେଇ ଦୂରେ
ଶିଶୁ-ସୁକୁମାର-ଭାବ କର ରେ ଗ୍ରହଣ,
କୃପାମୟ କୃପା ଯେବେ ଲଭିବୁ ରେ ତୁହି ।
( ପ୍ରକୋଷ୍ଠକ ଦେଶେ ନତଜାନୁ ହୋଇ ଉପବେଶନ )

( ହ୍ୟାମ୍‌ଲେଟ୍‌ର ପ୍ରବେଶ )

ହ୍ୟାମ୍—ଲଭିଛି ସୁଯୋଗ; କରୁଛି ପ୍ରାର୍ଥନା ଏବେ

ପାପିଷ୍ଠ ଏଠାରେ; ଏହିକ୍ଷଣି ପ୍ରାଣେ ତାକୁ
କରିବି ବିନଷ୍ଟ । ଯିବ ସେହୁ ସ୍ୱର୍ଗପୁରେ,
ସିଦ୍ଧ ହେବ ମୋର ବୈର ନିର୍ଯାତନ । କିନ୍ତୁ,
ଦେଖିବି ବିଚାରି : ପାଷାଣ୍ଡ ପିତାଙ୍କୁ ମୋର
କରିଛି ସଂହାର; ତାର ପ୍ରତିଫଳେ ମୁହିଁ,
ଏକମାତ୍ର ସନ୍ତାନ ତାଙ୍କର, ପେଶିବି ସେ
ଦୁରାତ୍ମାରେ ଅମର-ଆଳୟେ ! ନୁହେଁ ତ ଏ
ପ୍ରତିହିଂସା, ହିଂସା ବିନାମୂଲ୍ୟେ ପାପ-ଅତ୍ମା
ଲଭିବ ସଦ୍‌ଗତି ସିନା ବିବୁଧ-ସଙ୍ଗମେ !
କରିଛି ନିହତ ସେହୁ ଜନକଙ୍କୁ ମୋର,
ଥିଲେ ଯେବେ ପାପେ ଲିପ୍ତ, କରୁଥିଲେ କେଳି
ବିଳାସ-ସରସେ, ରହିଥିଲା ଫୁଟି ଯେବେ
କଳୁଷ-ନିବହ, ବିକଚ-କୁସୁମ ସମ
ମଧୁ ସମାଗମେ; କେ ଜାଣେ କି ଭାବେ ତାଙ୍କ
ଆୟୁ ବ୍ୟୟ, ଚିତ୍ରଗୁପ୍ତ କରିଛି ଗଣନା ?

ତେବେ ସେ କାଳ ଅବସ୍ଥା ଚିନ୍ତେ, ଧୀର ଭାବେ
କରିଲେ ବିଚାର, ବ୍ୟସ୍ତ ଭାର ହେବ ଗୁରୁ,
ନାହିଁ ତ ସଂଶୟ । ତେବେ କି ଉଦ୍ଦେଶ୍ୟ ସିଦ୍ଧ
ହୋଇବ ମୋହର, କରିଲେ ବିନଷ୍ଟ ତାକୁ
ପ୍ରାର୍ଥନା ସମୟେ ? ଯେ କାଳେ ସେ ପାପରାଶି
ଲଘବ ମାନସେ ଜଣାଉଛି ଦୁଃଖ-ଜ୍ୱାଳା
ପ୍ରଭୁଙ୍କ ପଦୂରେ, ପରକାଳ ପାଇଁ ଯେବେ

ହେଉଛି ପ୍ରସ୍ତୁତ, ବାହୁତ କ ମୋର ପକ୍ଷେ
କରିବା କାହୁତ, ସେ ସମୟେ ? ଅସମ୍ଭବ !
ତରବାରି, ଯା ରେ ଫେରି, ନିଜ କୋଷ ମଧ୍ୟେ
ରହ ତହିଁ ଅନୁସରି ଉପଯୁକ୍ତ ବେଳା
ଥିବ ସେ ସୁଷୁପ୍ତ ଯେବେ ପାନାଶକ୍ତ ହୋଇ,
ଅବା ରାଗେ ହୋଇଥିବ ଅନ୍ଧ, ଅବା କାମେ
ମତ୍ତ, ଅବା ଥିବ ଯେବେ ବ୍ୟସନେ ଆସକ୍ତ,
ରତ ଏ ଭଳି ଦୁଷ୍କର୍ମେ, ଯାହାର ସହିତ,
ସଦ୍‌ଗତିର ଲେଶ ମାତ୍ର ନ ଥିବ ସମ୍ପର୍କ,
ସେ କାଳେ ତାର ଧୋଳାରୁ ପଶିଣ, ଯେସନ
ସେ ତତକ୍ଷଣିରେ ନରକ ପ୍ରଦେଶେ କରିବ
ଗମନ, ନ ପଡ଼ିବ ଦୃଷ୍ଟି ତାର ଅମର—
ଆଳୟେ । ରହିଛନ୍ତି ଗୃହେଁ ଏବେ ଜନନୀ
ମୋହର, ଯିବି ତାଙ୍କ ସନ୍ନିଧାନେ; ଲଭିବୁ
ଉପଯୁକ୍ତ ଶାସ୍ତି ତୁହି, ଆରେ ଦୁରାଚାର,
ଘୃଣିତ ଜୀବନ ତୋର, ବୁଡ଼ି ପାପ-ପଙ୍କେ
କିଛିକାଳ କର ତୁ ଧାରଣ ।                    ( ପ୍ରସ୍ଥାନ )

ରାଜା—( ଦଣ୍ଡାୟମାନ ହୋଇ )
ମୁଖେ ବିଭୁ ନାମ ଜପି, ଅନ୍ତରେ ଗରଳ
ପୋଷିଲେ, ମିଳିବ କାହୁଁ ପ୍ରାର୍ଥନାରେ ଫଳ ?

( ପ୍ରସ୍ଥାନ )



## ଚତୁର୍ଥ ଦୃଶ୍ୟ

[ ରାଣୀଙ୍କର ବିଶ୍ରାମ ଅଗାର ]

( ରାଣୀ ଓ ପଲୋନିଅସ୍‌ର ପ୍ରବେଶ )

ପଲୋ—ଆସିବେ ସେ ଏହିକ୍ଷଣି । ହୁଅନ୍ତୁ ପ୍ରସ୍ତୁତ,
ନରେଶ୍ୱରି, ସ୍ପଷ୍ଟ ଗିରେ କହିବେ ତାହାଙ୍କୁ,
ବାତୁଳତା କ୍ରମେ ତାଙ୍କ ହୋଇ ଗୁରୁତର
ଘଟାଉଛି ରାଜ୍ୟ ମଧ୍ୟେ ବହୁଳ ଅନର୍ଥ;
ମାତୃ ସ୍ନେହ ତବ ମାତ୍ର ରଖିଛି ଘୋଡ଼ାଇ,
ପକ୍ଷ ପୁଟେ ପକ୍ଷୀ ରଖେ ଶାବକେ ଯେସନ,
ରାଜ-ରୋଷାନଳେ ପଡ଼ ନହୁବା ନିମନ୍ତେ
ହୁଅନ୍ତେ ସେ ଭସ୍ମୀଭୂତ । ସୁସ୍ପଷ୍ଟ ବଚନେ
ତାଙ୍କୁ କହିବେ ବୁଝାଇ ମନୋଗତ ଭାବ
ଯେଉଁରେ କରିବେ ପ୍ରକାଶ ନ କରି ଗୋପନ ।
ରହିବ ମୁଁ ଏହିଠାବେ ପ୍ରଚ୍ଛଦ ପଶ୍ଚାତେ ।

ହ୍ୟାମ୍—(ଅନ୍ତରାଳରୁ) ମା, ମା, ମା, ।

ରାଣୀ— ନ କର ସଂଶୟ କିଛି ବୁଝିବି ପଶ୍ଚରି
ମନୋଭାବ ତାର, ସ୍ପଷ୍ଟଭାବେ; ଅନ୍ତରାଳେ
ରହ ତୁମ୍ଭେ ଶୁଣୁଛି ମୁଁ କଣ୍ଠସ୍ୱର ତାର ।

(ପଲୋନିଅସ୍‌ର ପ୍ରଚ୍ଛଦ ପଶ୍ଚାତ୍‌ର ଗୁପ୍ତଭାବରେ ଅବସ୍ଥାନ)

( ହ୍ୟାମ୍‌ଲେଟ୍‌ର ପ୍ରବେଶ )

ହ୍ୟାମ୍—ମା, ତୁମ୍ଭେ ମୋତେ କାହିଁକି ଡାକିଲ କହ ।

ରାଣୀ—ହ୍ୟାମ୍‌ଲେଟ୍, ତୁମ୍ଭର ପିତାଙ୍କର ପ୍ରତି ତୁମ୍ଭେ ଅତ୍ୟନ୍ତ ଦୁର୍ବ୍ୟବହାର କରିଅଛ ।

ହ୍ୟାମ୍—ମା, ମୋର ପିତାଙ୍କ ପ୍ରତି ତୁମ୍ଭେ ଅତ୍ୟନ୍ତ ଦୁର୍ବ୍ୟବହାର କରିଅଛ ।

ରାଣୀ—ଥାଉ, ଥାଉ, ତୁମ୍ଭର ବାଜେ କଥା ରଖିଦିଅ ।

ହ୍ୟାମ୍—ଯାଅ, ଯାଅ, ତୁମ୍ଭର ଚତୁରତା ନେଇଯାଅ ।

ରାଣୀ—ହ୍ୟାମ୍‌ଲେଟ୍, ତୁମ୍ଭର ମତ୍‌ଲବ୍ କଣ ?

ହ୍ୟାମ୍—ତୁମ୍ଭର ମତ୍‌ଲବ୍ କ'ଣ ?

ରାଣୀ—ତୁମ୍ଭେ କ'ଣ ମୋତେ ଭୁଲି ଯାଉଅଛ ?

ହ୍ୟାମ୍—ନା, ତା କି କେବେ ସମ୍ଭବ ହୋଇପାରେ ! ତୁମ୍ଭେ ପରା ରାଣୀ, ତୁମ୍ଭର ସ୍ୱାମୀଙ୍କର କନିଷ୍ଠ ଭ୍ରାତାଙ୍କର ସହଧର୍ମିଣୀ ଏବଂ ମୋହର ଜନନୀ—ସେଟା ନହୋଇଥିଲେ କିନ୍ତୁ ବଡ଼ ଭଲ ହୋଇଥାନ୍ତା !

ରାଣୀ—ତୁମ୍ଭେ ଯଦି ମୋ ପ୍ରତି ଏପରି ତାଚ୍ଛଲ୍ୟ ବ୍ୟବହାର କର, ତା'ହେଲେ ତୁମ୍ଭଙ୍କୁ ଯେଉଁମାନେ ସମୁଚିତ ଶିକ୍ଷା ଦେଇ ପାରିବେ ସେହିପରି ଲୋକ ମୁଁ ତୁମ୍ଭ ନିକଟକୁ ପଠାଇବି ।

ହ୍ୟାମ୍—ଅସ, ଅସ, ତୁମ୍ଭେ ଏଠାରେ ବସ; ତୁମ୍ଭଙ୍କୁ ଏଠାରୁ ମୁଁ ଟିକିଏ ହୁଣ୍ଡିବାକୁ ଦେବିନାହିଁ ! ତୁମ୍ଭ ସମ୍ମୁଖରେ ମୁଁ ବର୍ତ୍ତମାନ ଏପରି ଗୋଟିଏ ଦର୍ପଣ ଥୋଇବି ଯଦ୍ଦ୍ୱାରା ତୁମ୍ଭେ ତୁମ୍ଭର ଅନ୍ତରର ନିମ୍ନତମ ସ୍ତର ପର୍ଯ୍ୟନ୍ତ ଦେଖିବାକୁ ପାଇବ; ସେ ପର୍ଯ୍ୟନ୍ତ ତୁମ୍ଭେ ଏଠାରୁ ଯାଇ ପାରିବନାହିଁ ।

ରାଣୀ—ତୁମ୍ଭେ କ'ଣ କରିବାକୁ ଇଚ୍ଛାକର ? ମୋତେ ବଧ କରିବ ନାହିଁ ତ ? କିଏ ଅଛ ମୋତେ ସାହାଯ୍ୟ କର, ସାହାଯ୍ୟ କର ।

ପଲେ—(ଅନ୍ତରାଳରୁ) କଏ ଅଛ, ଦୌଡ଼ିଆସ, ସାହାଯ୍ୟ କର, ସାହାଯ୍ୟ କର ।

ହ୍ୟାମ୍‌—(ତରବାରି ଉନ୍ମୁକ୍ତ କରି) ଏ କିଏ ? ଏଠି ଗୋଟାଏ ମୂଷା କାହିଁ ଆସିଲା ? ବର୍ତ୍ତମାନ ମୁଁ ଏହାକୁ ଯମାଳୟକୁ ପଠାଇବି ।

(ପ୍ରଚ୍ଛଦର ମଧ୍ୟଦେଇ ଅସି ସଞ୍ଚାଳନ)

ପଲେ—(ଅନ୍ତରାଳରୁ)-ଓଃ, ଗଲି, ମୋହର ପ୍ରାଣ ବାହାରି ଗଲା ।

(ପତନ ଓ ମୃତ୍ୟୁ )

ରାଣୀ—ହାୟ, ହାୟ, ଅରେ ତୁ କ'ଣ କଲୁ ?

ହ୍ୟାମ୍‌—ମୁଁ ତ କିଛି ଜାଣେ ନାହିଁ । ଏ କ'ଣ ରାଜା ?

ରାଣୀ—ହାୟ, ହାୟ, ନ ବୁଝି ନ ଶୁଣି ଗୋଟିଏ ମହାପ୍ରାଣୀକୁ ତୁ ବଧ କଲୁ ।

ହ୍ୟାମ୍‌—ନରହତ୍ୟା ! ଜନନୀ, ଜଣେ ରାଜାଙ୍କୁ ମାରି ତାଙ୍କର କନିଷ୍ଠ ଭ୍ରାତାଙ୍କୁ ବିବାହ କରିବା ଯେପରି ଗର୍ହିତ, ଏହା ମଧ୍ୟ ଅନେକଟା ସେହିପରି ।

ରାଣୀ—ଜଣେ ରାଜାଙ୍କୁ ମାରି !

ହ୍ୟାମ୍‌—ହଁ ମାତଃ, ତାହାହିଁ ମୋର ବକ୍ତବ୍ୟ ।

(ପ୍ରଚ୍ଛଦ ଉତ୍ତୋଳନ ଓ ପଲୋନିଅସ୍‌ର ମୃତଦେହ ଦର୍ଶନ)

ହାୟ ହତଭାଗ୍ୟ, ନିର୍ବୋଧ, ଶଠବର ! କିପାଁ
ଅବିବେକ ବଶେ, ହେଲ ତୁମ୍ଭେ ନିରର୍ଥକ
ଏ କାର୍ଯ୍ୟେ ଅଗ୍ରଣୀ ? ଯାଅ ଏବେ ପ୍ରେତପୁରେ
ଦେଉଛି ମେଲାଣି । ଭାବିଥିଲି ପ୍ରଭୁ ତବ
ଥିଲେ ତହିଁ ଲୁଚି, ମାତ୍ର ନିଜ ଭାଗ୍ୟ ଦୋଷେ

ତୁମ୍ଭେ ହରାଇଲ ପ୍ରାଣ; ଅବ୍ୟାପାରେ ଯେଉଁ
ନର କରଇ ବ୍ୟାପାର, ଏସନ ଦୁର୍ଗତି
ଲଭେ ସେହୁ । ଯାଅ, ମାତଃ, କର ସମର୍ଦ୍ଧନ,
ଶାନ୍ତଭାବେ କିଛିକ୍ଷଣ ବସ ଏହିଠାବେ
କହିବି ମୁଁ କପୀଡ଼ିତ ଅନ୍ତର ତୁମ୍ଭର;
ପାପ-ସ୍ପର୍ଶେ ପରିଣତ ନୋହିଲେ ପାଷାଣେ,
ହେବ କଣ୍ଟେ ବିଚଳିତ ଶୁଣି ମୋ ବଚନ,
ରାଣୀ—ଦେଖି କି ଦୋଷ ମୋହର, ବତ୍ସ, କରୁଛୁ ରେ
ପରୁଷ ବଚନେ ମୋର ଅନ୍ତର ଅସ୍ଥିର ?
ହ୍ୟାମ୍—ଏ ହିଲ ଦୁଷ୍କର୍ମ, ମାତଃ, ଯାହାର ପରଚେ
ରମଣୀ-ଭୂଷଣ ଲଜ୍ଜା ସୀମନ୍ତଶୀତଳ
ତେଜି ପଳାଇବ ଦୂରେ, ନାରୀ-ଗଣ୍ଡସ୍ଥଳୁ
ବ୍ରୀଡ଼ାର ରକ୍ତିମ ରାଗ ହେବ ନିର୍ବାସିତ;
ସାଧୁତାର ଅନ୍ୟ ନାମ ହୋଇବ ଭଣ୍ଡାମି;
ବିଶୁଦ୍ଧ ପ୍ରଣୟୁ ଖ୍ୟାଲ୍ କମନୀୟ ଆଭା
ଅନୁରାଗ ଗୋଲାପର ହୋଇ ତିରୋହିତ,
ଅପତ୍ରପା ଅରୁଣିମା, ହେବ ପ୍ରକଟିତ (୧)
ତହିଁ; ଦ୍ୟୁତକର ଶପଥ ସଦୃଶ, ହେବ
ଜାୟାପତି ପ୍ରତିଶ୍ରୁତି ଅନୃତ ବଚନ,
ଉଦ୍‌ବାହ-ପବିତ୍ର-ଚୁକ୍ତି ହୋଇବ ଶିଥିଳ,
ଦାମ୍ପତ୍ୟ-ଜୀବନ ଚିର ନିରାନନ୍ଦମୟ;

---

(୧) ଅପତ୍ରପା—ଧୃଷ୍ଟତା ।

ଧର୍ମ ହେବ ଅର୍ଥହୀନ ବାକ୍ୟର ସମଷ୍ଟି;
ପ୍ରଜାପତି ଅପେ କ୍ରୋଧେ ପୋଡିବେ ମସ୍ତକ,
ଶରନ୍ତନ ଶାସନର ଦେଖି ବ୍ୟତିକ୍ରମ;
ଧରଣୀ ପାଣ୍ଡୁର ମୁଖେ ସନ୍ତପ୍ତେ କମ୍ପିତା,
ହେବେ ଭଗ୍ନ ଅନାଦିର ସ୍ତମ୍ଭମାନ ସେ,
କି ଅବା ପ୍ରଳୟକାଳ ହେଲା ସନ୍ନିକଟ ।

ରାଣୀ—କହ, ବତ୍ସ, କେଉଁ କାର୍ଯ୍ୟ କରିଅଛ ମୁହିଁ
ଘୋଷଇ କଳଙ୍କ ଯାହା ତ୍ରିଭୁବନେ ମୋର ।

ହ୍ୟାମ୍—ଦେଖ, ମାତଃ ପ୍ରସାରିତ ସମ୍ମୁଖେ ତୁମ୍ଭର
ଏହି ଦୁଇ ପ୍ରତିକୃତି. କର ନିରୀକ୍ଷଣ,
ଆହା କିବା ଜ୍ୟୋତିଃ ଫୁଟି ରହିଛି ଏ ଭାଲେ,
ଆହା କି କୁଞ୍ଚିତ କେଶ, କେତେ ମନୋହର
ସ୍ତବକେ ସ୍ତବକେ ଶିରେ ରହିଛି ସଜ୍ଜିତ;
କିବା ଅପରୂପ ଶୋଭା, ଅପେ ଦେବରାଜ
ତେଜି ସ୍ୱର୍ଗପୁର କିବା ମର୍ତ୍ତ୍ୟେ ଅବତୀର୍ଣ୍ଣ;
କିବା ସେ ନୟନ ଦୁଇ, କଟାକ୍ଷେ ଯାହାର, ତେଜି
ଶତ୍ରୁ ହିଂସା, ଜାତେ ଆସି ପଶିବ ଶରଣ;
କିବା ସେ ମଧୁର ଠାଣି, ଗିରୀନ୍ଦ୍ର ଶିଖରେ
ଉଭା କିବା ଦେବଦୂତ ଦିବ୍ୟଧାମୁଁ ଆସି;
ଆହା କି ସୌନ୍ଦର୍ଯ୍ୟ, କିବା ଅତୁଳ ସୌଷ୍ଠବ,
ପ୍ରତି ଦ୍ରବ୍ୟ ପ୍ରତିଅଙ୍ଗେ ସକଳ ଦେବତା
ଆପଣା ଚିହ୍ନକୁ ଜ୍ୟୋତିଃ କରିଛନ୍ତି ଦାନ,

ଗଢିବାକୁ ନରଲୋକେ ପୁରୁଷ ଉତ୍ତମ,
ଥିଲେ ଯେହୁ ସ୍ୱାମୀ ତବ । ପୁଣି ଦେଖ ଏହୁ
ଛବି, କରଛ ଏହାଙ୍କୁ ସ୍ୱାମୀ-ତ୍ୱ ବରଣ,
ପର୍ଣ୍ଣୁଟିତ ଫଳ ସମ ବିଷାକ୍ତ ତା ସଙ୍ଗ
ଉର୍ଦ୍ଧ୍ୱସ୍ଥଳ ସଂହ୍ଲାଦରେ କରଛ ବିନଷ୍ଟ ।

ଅଛି କି ନୟନ ତବ, ଦେଖୁଛ କି ମେଲି ?
ଗିରି-ଶୃଙ୍ଗ ସମ ଗୁରୁ ଉନ୍ନତ ଏ ତନୁ,
କେତେ କେତେ ଖର୍ବ, ବର୍ବରର ବପ୍ର ରୂପେ
କରିଲ ଅଶ୍ରୟ ? ଅହ କି ଗୋ ଚଞ୍ଚଳତା ?
ନୁହେଁ ତ ଏ ପ୍ରେମ ଉନ୍ମାଦନା; ଏ ବୟସେ
ନାହିଁ ତ ଶୋଣିତେ ଅଗ୍ନି ପୂର୍ବ ପ୍ରଖରତା,
ନ ବହଇ ଧମନୀରେ ତପ୍ତ-ରକ୍ତ-ଧାର

ଅଗ୍ନି ପୂର୍ବପରି; ପରନ୍ତୁ ବୁଦ୍ଧି ଏବେ
ହୋଇଛ ସୁସ୍ଥିର, କିନ୍ତୁ କେଉଁ ବୁଦ୍ଧିମତୀ,
ତେଜି କରବପୁ କରେ ବର୍ବରେ ବରଣ ?
ଅଛି ତ ନିଶ୍ଚୟ ତବ ଚୈତନ୍ୟ ଶକତି,
ନୋହିଲେ କି ବାସନାର ହୁଅନ୍ତା ସ୍ଫୁରଣ ?
ହେଲା କି ସହସା ତେବେ ସଂଜ୍ଞା ଲୁପ୍ତ ତବ ?
ଚିତ୍ତବୃତ୍ତି ଏକାବେଳେ ଦେଲ କି ହରାଇ ?

ନୁହଇ ସମ୍ଭବ ପେଣ୍ଟ ବାତୁଳତା ପକ୍ଷେ,
ପଡ଼ିବା ଏଭଳି ଭ୍ରମେ; ହିତାହିତ ଜ୍ଞାନ
ଇନ୍ଦ୍ରିୟ କବଳେ ପଡ଼ି ପାଶୋରିବା ନିତି

ଧର୍ମ ନୁହେଁ ତ ସମ୍ଭବ ଏ କ୍ଷେତ୍ରେ କଦାପି ।
କେ ଦୁଷ୍ଟ କୌଶଳେ ତବ ନୟନଯୁଗଳ
ଅନ୍ଧୀଭୂତ କରି ଦେଲା ଏ କାଳେ ବନ୍ଧନ ?
ଦୃଷ୍ଟି ତ୍ୱଗିନ୍ଦ୍ରିୟ ବିନା, ସ୍ପର୍ଶ ବିନା ଦର୍ଶ,
ଶ୍ରୁତି ହସ୍ତ ଚକ୍ଷୁ ବିନା, ନାସିକା କେବଳ
ହେଲେ ମଧ୍ୟ ବ୍ୟାଧିଗ୍ରସ୍ତ କୌଣସି ଇନ୍ଦ୍ରିୟ,
ତାରତମ୍ୟ ଅନାୟାସେ ଦଅନ୍ତା ଚିହ୍ନାଇ ।
ଛି, ଛି, କି ଲଜ୍ଜାର କଥା ! ନାହିଁ କି ସରମ ?

ରେ କାମ ତୋହର ଦାଉ ପ୍ରୌଢ଼ାନାରୀ ବକ୍ଷେ
ହୁଏ ଯଦି ଏ ଭଳି ପ୍ରଖର, ଦ୍ରବୀଭୂତ
ହେବା ଧର୍ମ ଯୌବନ ତାଡ଼ନେ, ନବନୀତ
ସମ, ନୁହଁଇ ଆଶ୍ଚର୍ଯ୍ୟ; ତୋହର ପ୍ରତାପେ
ଯେବେ ଉତ୍ତପ୍ତ ଶୋଣିତ ତରଳ ଯୌବନେ
ଯାଏ ନ୍ୟାୟ-ମାର୍ଗ ଛାଡ଼ି, କଳଙ୍କ ଡ଼ିଣ୍ଡିମ
ତାର ନ ବାଜୁ ଚୌଦିଗେ, ତୁଷାର ଲଭଇ
ଯେଣୁ ଦାହିକା ଶକତି ତୋହର ପରଶେ,
ବିଚାର ତା ଶୁଭ୍ର ଶିର କରେ ଅବନତ
ବାସନା ସମୀପେ ଭୁଲି କୌଳିକ ଆଚାର ।

**ରାଣୀ**— କ୍ଷାନ୍ତ ହୁଅ, ବସ, ଆଉ ନ ଦିଅ ଗଞ୍ଜଣା,
ଅନ୍ତଃସ୍ଥଳ ଚିରି ମୋର ନୟନ ସମକ୍ଷେ
ଦେଉଅଛ ମେଲି, ଘନ-କୃଷ୍ଣ-ବର୍ଣ୍ଣେ ତାହା
ହୋଇଛି ରଞ୍ଜିତ, ଶତବାର କଲେ ଧୌତ,

ନ ହେବ କ୍ଷାଳିତ କେବେ ସେହୁ ମଳିନତା ।
ହେ ପ୍ରିୟ ତନୟ, ଅଜ୍ ନ କର ଭର୍ତ୍ସନା,
ଶେଳ ସମ ତବ ବାକ୍ୟ ଶ୍ରବଣ କୁହରେ,
କରୁଛୁ ପ୍ରବେଶ ।

ହ୍ୟାମ୍— ନରହନ୍ତା, ଦୁର୍ବୃତ୍ତରେ
କରିଛ ବରଣ, ନୁହେଁ ଯେତ୍ତୁ ସର ତବ
ପଞ୍ଚର ପଞ୍ଚାଂଶ ସଙ୍ଗେ ତୁଳ୍ୟ ପଦ୍ଧତର;
ନରପତି କୁଳାଧମ, ସାମ୍ରାଜ୍ୟ-ତସ୍କର
ମହାର୍ଘ କିରୀଟ କରି ଗୋପନେ ହରଣ,
ରଖିଛୁ ଆପଣା ଶିରେ, ଖଣ୍ଡଶିରୋମଣି ।

ରାଣୀ— କ୍ଷାନ୍ତ ହୁଅ ବତ୍ସ !

ହ୍ୟାମ୍— ନୃମଣି-କୁଳ-ପାଂଶୁଳ—
(ପ୍ରେତର ପ୍ରବେଶ)

ଅମର-ପୁର-ରକ୍ଷକ ଦେବଦୂତ ଗଣ !
ରକ୍ଷାକର, ପକ୍ଷ ମେଲି ରହ ଚଉପାଶେ ।
କହ କି ସନ୍ଦେଶ ତବ, ଅଶରୀରୀ ମୂର୍ତ୍ତି ?

ରାଣୀ— ହାୟ, ସେହୁ ହେଲ କି ପାଗଳ ?

ହ୍ୟାମ୍— ଆସିଲ କି
କରିବାକୁ ତିରସ୍କାର ଅଳସ ସନ୍ତାନେ ?
କରିଛି ମୁଁ କାଳକ୍ଷେପ ବୃଥା ମନସ୍ତାପେ,
କରିନାହିଁ ଅଦ୍ୟାବଧି ପାଳନ ଆଦେଶ

ତବ କାର୍ଯ୍ୟେ ପରିଣତ । କହ ପ୍ରେତ, ଫେଡ଼
ମନୋଭବ ।

ପ୍ରେତ— ନହୁଅ ବିସ୍ମୃତ, ଅଗତ ମୁଁ
ଧରିବାକୁ ଉଦ୍‌ବୋଧିତ ସୁପ୍ତ ପ୍ରତିଜ୍ଞା ।
କିନ୍ତୁ ଦେଖ, ହୋଇଛନ୍ତି ମାତା ତବ ଅତ୍ୟେ
ଚମକିତା, କର ଶୀଘ୍ର ସାହାଯ୍ୟ ତାଙ୍କର;
ଦୁଶ୍ଚିନ୍ତା ଦୁର୍ବଳ ଦେହେ ଲଭଇ ବିସ୍ତାର
ଅତି ଦ୍ରୁତ ବେଗେ, କର ଶୀଘ୍ର ବାକ୍ୟାଳାପ
ଜନନୀ ସହିତ ।

ହ୍ୟାମ୍— ଭଦ୍ରେ, କି ହେଲା ତୁମ୍ଭର ?

ରାଣୀ— କହ, ପୁତ୍ର, କି ହେଲା ତୁମ୍ଭର ? କିପାଁ ସ୍ଥିର
ନେତ୍ରେ ଶୂନ୍ୟ ଦେଶେ ତୁମ୍ଭେ ରହିଛ ଅନାଇଁ,
ନିରାକାର ବାୟୁ ସହ କରୁଛ ଆଳାପ ?
ବିସ୍ଫାରିତ ନେତ୍ରେ ତବ ବିସ୍ମୟର ରେଖା
ରହିଅଛି ଫୁଟି, ନିର୍ଜୀବ ପଦାର୍ଥେ ପ୍ରାଣ
ହେଲେ ସଞ୍ଚାରିତ ଲଭେ ଯେସନ୍ତେ ଚେତନେ ସେ
ଗତି, ଅବା ଅବସ୍ଥାନେ ହୁଅନ୍ତି ଉତ୍ଥିତ (୧)
ସୁପ୍ତ ସୈନ୍ୟଦଳ ଯଥା ଶତ୍ରୁ ଅସ୍କନ୍ଦନେ, (୨)
ତେସନ ନିଶ୍ଚଳ କେଶ ଶିରୋଦେଶେ ତବ
ହୋଇଅଛି ଉଚ୍ଚ । ସମ୍ବର ଏ ଉନ୍ମତ୍ତତା,

---

(୧) ଅବସ୍ଥାନ—ଶିବିର ।
(୨) ଅସ୍କନ୍ଦନ—ଆକ୍ରମଣ ।

ଜ୍ୱଳନ୍ତ ପାବକ ସମ ଚଞ୍ଚଳତା ତବ,
କର ଶାନ୍ତ ଢ଼ାଳି ଅଶ୍ରୁ ସ୍ନିଗ୍ଧ ଧୈର୍ଯ୍ୟ-ବାରି;
କାହା ପ୍ରତି କହ ତୁମ୍ଭେ ରହିଛ ଅନାଇଁ ?

ଧ୍ୟାନ୍—ତାହା ପ୍ରତି ତାହା ପ୍ରତି । ଦେଖୁଛ କଉଳି
କରୁଣ ନୟନେ ସେହି ରହିଛି ଅନାଇଁ ।
ଦେଖିଲେ ସେ ଦୃଶ୍ୟ, ତାର ଆଗମନ ହେତୁ
ଶୁଣିଲେ ମନ୍ତ୍ରଣା, ପବି ହେଲେ ଯିବ ଦ୍ରବି ।
ନ ଅନାଅଁ ମୋହ ପ୍ରତି, ଏ କରୁଣ ଦୃଷ୍ଟି
କରିଦେବ ବିଚଳିତ ମୋ ଦୃଢ଼ ସଂକଳ୍ପ,
ବୈରି ନିର୍ଯାତନ ସ୍ପୃହା ତେଜି କଠୋରତା
ହେବ ମୃଦୁ ଭାବାପନ୍ନ, ରିପୁ ସ୍ନେହ ସ୍ଥଳେ
ବୁହାଇବ ଅଶ୍ରୁଧାର ଆପଣା ନୟନୁଁ ।

ରାଣୀ—କହୁଅଛ କାହାକୁ ଏ କଥା ?

ଧ୍ୟାନ୍— ଦେଖୁନାହଁ
କିଛି କି ସେଠାରେ ?

ରାଣୀ— ନାହିଁ ତ ସେଠାରେ କିଛି,
ଦେଖୁଛି ମୁଁ ଅଛି ବାତ୍ସବତା ଯାର ।

ଧ୍ୟାନ୍— ତୁମ୍ଭେ
ଶୁଣିଲ କି କିଛି ?

ରାଣୀ— ନାହିଁ, ଅମ୍ଭର ଅଳାପ
ଛଡ଼ା ଶୁଣିନାହିଁ ଅନ୍ୟ କିଛି କଥା ।

ହ୍ୟାମ୍—                                        ଦେଖ,

ଦେଖ ତେବେ କିଭଳି ସେ ହେଉଛି ଅଦୃଶ୍ୟ ।
ଏହୁ ତ ସେ ପରିଚ୍ଛଦ ଜୀବନ୍ତ କାଳରେ
କରୁଥିଲେ ପରିଧାନ ଜନକ ମୋହର;
ଦେଖ, ଏବେ ମଧ୍ୟ ଯାଉଛନ୍ତି ଧୀରେ, ଧୀରେ,
ଗୋପୁର ନିକଟେ । (୧)

( ପ୍ରେତର ପ୍ରସ୍ଥାନ )

ରାଣୀ—                                  କପୋଳ କଳ୍ପିତ ଏହା,

ବାତୁଳତା ବଶେ ଅବୟବ-ହୀନ-ମୂର୍ତ୍ତି
ନିର୍ମିଣେ ପଟୁତା ଲଭେ ଉନ୍ମତ୍ତ ମସ୍ତିଷ୍କ !

ହ୍ୟାମ୍—ବାତୁଳତା ବଶେ !

କର ସ୍ପର୍ଶ ନାଡ଼ୀ ମୋର, ଦେଖ ତ କେସନ
ଉଠୁଛି ପଡ଼ୁଛି ତାହା ନାଚି ତାଳେ ତାଳେ,
ମଣିବନ୍ଧେ ମୋର ଧୀର ସଂଯତ ଗତିରେ;
କହିଲି ମୁଁ ଯାହା ନୁହେଁ ପ୍ରମତ୍ତ ପ୍ରଳାପ
ଅମୂଳ ଅବୃତ୍ତି ପୁଣି କରିପାରେ ତାହା,
ପାଗଳର ପକ୍ଷେ କିନ୍ତୁ ପୂର୍ବକଥା ମାନ
କରିବା ସ୍ମରଣ ନୁହଁଇ ସମ୍ଭବ । ଥାଏ
ଯଦି ଚିତ୍ତେ ଲଭିବାକୁ ପ୍ରଭୁଙ୍କ କରୁଣା,
ଆପଣାକୁ ପ୍ରତାରିତ ନ କର, ଜନନି,

---

(୧)ଗୋପୁର —ପୁରଦ୍ୱାର ।

ଏହି ପ୍ରବୋଧ ବଚନେ : ମସ୍ତିଷ୍କ ବିକାର
ହେତୁ କହୁଛ ଏସନ, ନିର୍ମଳ ଚରିତ
କରିନାହିଁ ସ୍ପର୍ଶ ତବ କଳଙ୍କ-କାଳିମା;
ଏଭଳି ଧାରଣା ମାତ୍ର କରିବ ଗୋପନ,
ଢାଙ୍କିଦେଇ ଛତ ସ୍ଥୂଳ ଝିଲ୍ଲୀ ଆବରଣେ,
ଶରୀରର ରସ ରକ୍ତ ହୋଇବ ଦୂଷିତ
ବିଷାକ୍ତ ପ୍ରବାହେ ତାର କ୍ରମଶଃ ଅଲକ୍ଷ୍ୟେ ।
ଫେଡ଼ ଗୋ ହୃଦୟ ଦ୍ୱାର କର ଉନ୍ମୋଚନ
ଅସାର ଅବଗୁଣ୍ଠନ ଅକୁଣ୍ଠିତ ପ୍ରାଣେ,
ମେଲିଦିଅ ପାପବ୍ରଣ ବିଭୁଙ୍କ ଗୋଚରେ,
ଅତୀତ କଳୁଷ ଧୌତ ଅନୁତାପ ଜଳେ
କରି ପାପକର୍ମେ ଆଉ ନ ବଳାଅ ମତି,
ଆତ୍ମ-ପ୍ରବଞ୍ଚନା-ସାରେ ଚିତ୍ତ-କ୍ଷେତ୍ରେ ତବ
ନ କର ନୀବାର ବଂଶ ବର୍ଦ୍ଧିତ ଯତନେ ।
କହିଲି କର୍ତ୍ତବ୍ୟ ମଣି କ୍ଷମ ମୋ ଧୃଷ୍ଟତା,
ହିତ ଉପଦେଶ ଯେଣୁ ପାପିଷ୍ଠ ହୃଦୟେ,
ଜାଳିଦଏ କ୍ରୋଧାନଳ ପୟଃପାନ ଯଥା
କରଇ ବର୍ଦ୍ଧିତ ମାତ୍ର କାକୋଦର ବିଷ ।

ରାଣୀ—ରେ ବତ୍ସ ବିରକ୍ତ ହିଧା କରିଲୁ ଅନ୍ତର ।

ଶ୍ୟାମ୍—ଫିଙ୍ଗିଦିଅ ଦୂରେ ମାତଃ ଅବସଂଶ ତାର,
ଅପଭ୍ରଂଶେ କର ପୁଣ୍ୟ ଜୀବନ ଯାପନ,
ରହି ଧର୍ମମାର୍ଗେ । ଦେଉଛି ବିଦାୟ, କିନ୍ତୁ

କରୁଛି ମିନତି ନ କର ଗମନ ଆଜ
ଖୁଲ୍ଲତାତ କକ୍ଷେ, ନ କର ସେ ପାପ-ଶଯ୍ୟା
ସ୍ପର୍ଶ ଆଜ କେବେ; ଧର୍ମର ପ୍ରେରଣା ପ୍ରାଣେ
ନୋହିଲେ ସ୍ପନ୍ଦିତ ଆଚରଣ ଗାଢେ ତାର
କର ପରିଧାନ । ସର୍ବଗ୍ରାସୀ ପ୍ରଥା, ଯାର
ଭୀଷଣ ଦଶନେ ମନୋବୃତ୍ତିଚୟ ପଡ଼ି
ହୁଏ ନିଷ୍ପେଷିତ, ଲୌକିକତା ନାମେ ଯେହ୍ନୁ
ଲୋକେ ଲଭିଛି ପ୍ରସିଦ୍ଧ, ସ୍ୱଭାବେ ରାକ୍ଷସୀ
ହେଲେହେଁ ସମାଜ ହିତ ସାଧେ ଏହି ଭାବେ;
ସତ୍କାର୍ଯ୍ୟର ଶିରସ୍ତ୍ରାଣ ଧାରି ପୂର୍ବଭାଗେ
ଥୋଇ ବହୁ ରଙ୍ଗ ତାର ଦିଅଇ ଦର୍ଶାଇ,
ସେ କଷ୍ଟକେ କରିପାରୁଁ ଅବୃଦ୍ଧ ଶରୀର ।
ହୋଇଥାଏ ସଂଶୋଧିତ ଅଭ୍ୟାସର ବଳେ,
ଦୂଷିତ ସ୍ୱଭାବ, ଇନ୍ଦ୍ରିୟ ସଂଯମେ ତେଣୁ
ହୁଅ ଯତ୍ନବତୀ ଅବା ବିପୁଳ ପ୍ରୟାସେ
କର କାମେ ବହିରିତ ହୃଦୟ-ଆସନୁ ।

ପୁଣି ଦେଉଛି ବିଦାୟ, ନୟନ ସଲିଳେ
ଭାସି ବିଭୁଙ୍କ କରୁଣା, ଶୁଦ୍ଧ ଚିତ୍ତେ ଯେବେ
କରିବ ପ୍ରାର୍ଥନା ସେକାଳେ ଆଶିଷ ତବ
ମାଗିନେବ ନୁଆଇଁ ମସ୍ତକ । ହାୟ, ମନ୍ତ୍ରୀ
(ପଲୋନିଅସ୍ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି)
ତୁମ୍ଭ ପାଇଁ ପ୍ରାଣ ମୋର ହେଉଛି ବ୍ୟାକୁଳ

ବିଧି ଲିପି କିନ୍ତୁ କିଏ କରିବ ଖଣ୍ଡନ !
ବିଧିର ବିଧାନେ ଆଜି ନରହନ୍ତା ମୁହିଁ,
ତୁମ୍ଭେ ନିହତ ମୋ କରେ, ମୁହିଁ ମାତ୍ର କାଷ୍ଠ—
ପୁତ୍ତଳିକା ନିୟନ୍ତ୍ରିତ ଇଙ୍ଗିତେ ତାଙ୍କର ।
ରକ୍ଷିବ ଏ ଶବ ଏବେ ଏକ ଦେଶେ ମୁହିଁ
କି ହେତୁ ଏ ଘୋର ପାପେ ହୋଇଅଛି ଲିପ୍ତ,
ଦର୍ଶାଇବ ଯୁକ୍ତିସିଦ୍ଧ କାରଣ ତାହାର
ସ୍ୱର୍ଗର ଦବସେ । ପୁନଃ ନେଉଛି ବିଦାୟ ।
ନିଷ୍ଠୁର ବଚନେ ପ୍ରାଣେ ଦେଲି ତବ ବ୍ୟଥା
କରିବାକୁ ପାପକର୍ମୁଁ ନିରସ୍ତ ତୁମ୍ଭଙ୍କୁ;
ହେଲି ମାତ୍ର ନିଜର ସାମ୍ୟାନ୍ଧ, ଘୋର ନିଶା
ରହିଛି ପୂରିତେ । ଆଉ ପଦେ କଥା ଅଛି
ତୁମ୍ଭ ସହ ।

ରାଣୀ— କହ ପୁତ୍ର କି କରିବ ମୁହିଁ ?

ହ୍ୟାମ୍—କହୁଛି ମୁଁ ଯାହା ସେଭଳି ପ୍ରାଣାନ୍ତେ ତବ
ନ କରିବ କେବେ: ପାପିଷ୍ଠ ନୃପତି ତାର
ପାପ ତଳ୍ପେ ପୁନଃ ବସାଇ ତୁମ୍ଭଙ୍କୁ, ଚିପି
ଗଣ୍ଡୁଗିରେ, ମନସ୍ତୁଷ୍ଟି ଜନ୍ମାଇ ତୁମ୍ଭର,
ବଦନ-ସରୋଜୁଁ କରି ମକରନ୍ଦ ପାନ,
କଥାଛଳେ ପଶି ତବ ହୃଦୟ-ମନ୍ଦିରେ,
କରୁ ତଥ୍ୟ ଆହରଣ—ଯଥାର୍ଥତଃ ନୁହେଁ
ମୁଁ ବାତୁଳ, ମାତ୍ର ଏ ଚାତୁରୀ, କୈତବ ଏ

ବେଶ ବହିଛ ଧାରଣ କରିବାକୁ ସିଦ୍ଧ
ଗୁପ୍ତ ଅଭିସନ୍ଧି ମୋର । ଦେବା ଏ ବାରତା
ବହୁତ ତୁମ୍ଭର; ସର୍ବଗୁଣାନ୍ୱିତା ଯେହୁ
ସୁଷମା ମଣ୍ଡିତା, ସାମ୍ରାଜ୍ୟର ରାଣୀ ପୁଣ
ସତୀଶିରୋମଣି; ବିଦୁଷୀ-କୁଳ-ମଣ୍ଡନା,
ତାହା ବିନା କିଏ ଅଛି ରଖିବ ଗୋପନେ,
ଏଭଳି ରହସ୍ୟ କିମ୍ବା କରି ଉଦ୍‌ଘାଟନ,
କେଉଁ ନାରୀ ସ୍ୱାମୀ ପାଶେ ନ କହିବ ତାହା,
ହେଲେହେଁ କୁତ୍ସିତ ସେହୁ ତୁମ୍ଭ ପରି ସମ ?
ହେଲେ ମଧ୍ୟ ଗୋପନୀୟ ରଖିବା ଗୋପନେ
ନୁହଇ ସମ୍ଭବ; ଗଳ୍ପୋକ୍ତ ବାନର ସମ
ଗୃହ ଛାତ ପରେ ପେଟିକା ଗୋଟିଏ ରଖି,
ଢାଙ୍କୁଣି ତାହାର ଫେଡ଼ି ଦେଇ ଦିଅ ଉଡ଼ି
ପତତ୍ରି-ନିଚୟ, ଗଲେ ସେହୁ ଉଡ଼ି ତହୁଁ
କରଣ ପ୍ରବେଶ, ବିହାୟସେ ଲମ୍ଫ ଦେଇ
ବହିଗ ଗଡିରେ କର ସ୍ୱଗଳ ବିଚୂର୍ଣ୍ଣ ।

ରାଣୀ—ନିଶ୍ଚିନ୍ତ ନିଶ୍ଚିତ କହିଲ ଯା ମୋତେ ତୁମ୍ଭେ
ଏକବର୍ଣ୍ଣ ତାର ନ କରିବି ଉଚ୍ଚାରଣ,
କାହାରି ସମୀପେ; ଜାଣ ଏହା ଧ୍ରୁବ ସତ୍ୟ ।

ହ୍ୟାମ୍—ଯିବି ମୁଁ ବିଲାତେ ଶୀଘ୍ର ଅଛ କି ବିଦିତ ?

ରାଣୀ—ଅହୋ, ଯାଇଥିଲି ଭୁଲି; ହୋଇଛି ତା ସ୍ଥିର ।

ହ୍ୟାମ୍—ରାଜାଙ୍କ ମୁଦ୍ରିତ ଲିପି ହୋଇଛି ପ୍ରସ୍ତୁତ,

ସହାଧ୍ୟାୟୀ ଦ୍ୱୟ ତାହା କରିବେ ବହନ,
ଅଶୀବନ୍ଧ ସମ କ୍ରୁର ପ୍ରକୃତି ତାଙ୍କର,
ସହଚର ରୂପେ ସେହ୍ନ ଯିବେ ମୋ ସହିତ
ଅଶିବ ଉଦ୍ଦେଶ୍ୟ ସିଦ୍ଧ କରିବା ମାନସେ ।
ଇଚ୍ଛନ୍ତି ଅନାୟେ ମୋତେ ପକାଇବେ ନେଇ,
କରନ୍ତୁ ଯେତେ ଗର୍ତ୍ତ ସଯତ୍ନେ ଖନନ,
କଲେ ସେହି ଗର୍ତ୍ତେ ତାଙ୍କ ଉଚ୍ଛେଦ ସାଧନ,
ଲଭିବେ ସେ ଶିକ୍ଷା ସମୁଚିତ; ଶଠେ ଶାଠ୍ୟ,
ଉଚିତ ବେଶର, କିବା ସେ ଅପୂର୍ବ ଦୃଶ୍ୟ,
ଚକ୍ରରେ ଚକ୍ରରେ ଯେବେ ହୁଏ ଆଲିଙ୍ଗନ ।
ଅବଲମ୍ବେ ଏହି ଶବ ନେବି ମୁଁ ଉଠାଇ,
ପାର୍ଶ୍ୱବର୍ତ୍ତୀ ଗୃହେ ନେଇ ରଖିବି ଏହାକୁ ।
ବିଦାୟ ମାତଃ । ଥିଲା ଏ ଅମାତ୍ୟ
ନିର୍ବୋଧ, ବଚାଳ, ଧୂର୍ତ୍ତ ଜୀବିତ କାଳରେ
ହୋଇଛି ସେ ସ୍ଥାଣୁ ସମ ମୂକ, ଜଡ଼, ସ୍ଥିର ।
ଅସମନ୍ତୀ ଶେଷ ଶଯ୍ୟା ହୋଇଛି ପ୍ରସ୍ତୁତ ।
ଜନନି, ଦେଉଛି ବିଦାୟ ।

( ପୃଥକ୍ ଭାବରେ ପ୍ରସ୍ଥାନ; ହ୍ୟାମଲେଟ୍‌ର ପଲୋନିଅସ୍‌କୁ
ଟାଣି ଟାଣି ନେଇଯିବା )

---

# ଚତୁର୍ଥ ଅଙ୍କ

## ପ୍ରଥମ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ପ୍ରକୋଷ୍ଠ ]

( ରାଜା, ରାଣୀ, ରୋଜେନ୍‌କ୍ରାନ୍ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରବେଶ )

ରାଜା—ଏହି ସବୁ ମର୍ମାନ୍ତିକ ଦୀର୍ଘ ଶ୍ୱାସ ନୁହେଁ
ନିରର୍ଥକ, ମର୍ମ ତାର କର ଉଦ୍‌ଘାଟନ,
ଉଦ୍‌ଗ୍ରୀବ ମୁଁ ଜାଣିବାକୁ ତାହା । କହ କାହିଁ
ତନୟ ତୁମ୍ଭର ?

ରାଣୀ— ରହ କ୍ଷଣେ ଅନ୍ତରାଳେ ।

( ରୋଜେନ୍‌କ୍ରାନ୍ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରସ୍ଥାନ )

ହେ ପ୍ରିୟ ଦୟିତ, ଦେଖିଲି ମୁଁ କିସ ଅଦ୍ୟ
ରଜନୀରେ !

ରାଜା— କହ କିସ ଦେଖିଲ ପ୍ରେୟସି ?
କିବା ତବ ତନୟର ମନୋଭାବ କହ ।

ରାଣୀ—ଉନ୍ମତ୍ତ, ପାଗଳ ଯଥା ସିନ୍ଧୁ ବାୟୁ ବେଗ
କରନ୍ତି କଳହ ଯେବେ ପରସ୍ପର ସହ ।
ତଏ କେତେ ଶବ୍ଦ ଧର ଜାଣିବା ମାନସେ;
ବାତୁଳତା ବଶେ ସେହି, ପ୍ରଚ୍ଛଦ ପଶ୍ଚାତେ,
ଅଙ୍ଗ ସଞ୍ଚାଳନ ଶବ୍ଦ ଶୁଣି 'ମୂଷା, ମୂଷା',
ରବେ, ଅସି ନିଷ୍କୋଷିତ କରି କଲା ବୃଦ୍ଧ

ସହସେ ଅନ୍ଧାର ମୂର୍ଚ୍ଛିତା ପ୍ରସୁପ୍ତି, ହସ୍ତେ
ସଚକିତ ନେହେ ।

ରାଜା — ଅହୋ କି ନୃଶଂସ କାଣ୍ଡ ।
ଲଭିଥାନ୍ତି ସେହି ଦଶା ଥିଲେ ମୁଁ ସେଠାରେ;
ସ୍ୱାଧୀନତା ତାର ଏବେ ଶଙ୍କାର କାରଣ,
ହୋଇଅଛି ତୁମ୍ଭ, ମୋହ, ସର୍ବ ଜନ ପକ୍ଷେ ।
କେମନ୍ତେ ମୁଁ ହାୟ ଏହି ନିଧନର ହେତୁ
କରିବି ଜ୍ଞାପନ ? ଦୋଷିବେ ସରବେ ମୋତେ,
କିମ୍ପାଁ ଏହି ପାଗଳର ଗଢିବନ୍ଧି ମୁହିଁ
ନ କଲି ସଯତ୍ନ, ନ କରିଲି କିମ୍ପାଁ ପୂର୍ବେ
କାରାରୁଦ୍ଧ ତାକୁ, କିନ୍ତୁ ସ୍ନେହ ଅତିଶଯ୍ୟ
କରିଲା ଅକ୍ଷମ ମୋତେ ଉପାୟ ବିଧାନେ;
ମହା ବ୍ୟାଧିଗ୍ରସ୍ତ ନର ବ୍ୟାଧି କଥା ଯେସନ୍ତେ
ନ କରେ ପ୍ରକାଶ, ହେଲେ ମଧ୍ୟ ପଲେ, ପଲେ,
ଆୟୁଃ କ୍ଷୟ ତାର, ତେସନ ମୁଁ ସହି ଜ୍ୱାଳା
ରହିଛି ମଉନେ । କାହିଁ ଗଲା ପୁଣି ଏବେ ?

ରାଣୀ—ଗଲା ସେହି ରକ୍ଷିବାକୁ ଶବ ସଯତନେ,
ଅହା କଲା ପୁଣି ମନସ୍ତାପ କେତେ, ଭାସି
ଅଶ୍ରୁ-ଜଳେ । ତେଜି କ୍ଷଣେ ବିକଳତା ଚିତ୍ତ—
ବୃତ୍ତି ତାର, ଉଠିଲା ଝଲସି, ଯଥା ଅଗ୍ନି
କାଞ୍ଚନର, ଖଣି ଏ ଗରଭେ ମାଟି ଟାଳୁ
ମେଲେ, ଉଠଇ ଫୁଟିକ ।

ରାଜା— ପ୍ରିୟେ ଜାର୍ଟ୍ରୁଡ୍‌,
ଅସ କରିବା ପ୍ରସ୍ଥାନ । ବାଳାର୍କ କିରଣ
ଗିରି ଶୀର୍ଷ ଦେଶ ସ୍ପର୍ଶ କରିବା ପୂର୍ବରୁ,
ଅବଶ୍ୟ ସେ ପୋତ ଯିବ ତେଜି ଏହି ଦେଶ,
ରାଜଶକ୍ତି ବଳେ କରିବ ମୁଁ ସମର୍ଥନ
ଏ ନୃଶଂସ କ୍ରିୟା, କୌଶଳେ ମୁଁ ଦୋଷମୁକ୍ତ
କରିବ ତାହାକୁ । କାହିଁ ଅଛ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣ !

( ରୋଜେନ୍‌କ୍ରାନ୍ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରବେଶ )

ଯାଅ ଶୀଘ୍ର ବନ୍ଧୁଦ୍ୱୟ ଘେନ ଲୋକବର୍ଗ,
ହ୍ୟାମ୍‌ଲେଟ୍‌ ପଲୋନିଅସେ କରିଛି ନିହତ
ବାତୁଳତା ବଶେ; ନେଇଛି ସେ ଟାଣି ତାକୁ
ଜନନୀ ପ୍ରକୋଷ୍ଠୁଁ; କର ସନ୍ଧାନ ତାହାର;
ଭଲେ ବୁଝାଇ ତାହାକୁ ଆଣ ମୃତ ଦେହ
ପ୍ରାର୍ଥନା ମନ୍ଦିରେ । ଘେନ ମୋ ମିନତି, ଯାଅ
ଶୀଘ୍ର ନ କର ବିଳମ୍ବ ।

( ରୋଜେନ୍‌କ୍ରାନ୍‌ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରସ୍ଥାନ )

ଅସ ଜାର୍ଟ୍ରୁଡ୍‌,
ଜ୍ଞାନବୃଦ୍ଧ ବନ୍ଧୁଗଣେ କରିବା ଆହ୍ୱାନ,
କହିବା ତାହାଙ୍କୁ କିବା ଉଦ୍ଦେଶ୍ୟ ଆମ୍ଭର,
ଘଟିଲା ସହସା କେମନ୍ତେ ଏହି ହତ୍ୟାକାଣ୍ଡ,
ଲଭିପାରୁଁ ଏହି ଭାବେ ନିଷ୍କୃତି କଦାଚ

କବଳ୍ଲୁ; ବିଷାକ୍ତ ରସନା ଯାର ଶ୍ରବଣେ
ଶ୍ରବଣେ ବହନ କରେ ଅପଯଶ ରାଶି,
ପୃଥିବୀର ଏକ ପ୍ରାନ୍ତୁ ଅନ୍ୟ ପ୍ରାନ୍ତ ଯାଏ;
ଅବ୍ୟର୍ଥ ସନ୍ଧାନ ତାର ତୋପ ଗୋଳ ସମ
କରି ପାରୁ ଭ୍ରଷ୍ଟ ଏହୁ ଲକ୍ଷେ । ଯିବା ଚାଲ,
ଚଞ୍ଚଳ, ଦୁଶ୍ଚିନ୍ତାପୂର୍ଣ୍ଣ ହୋଇଛି ଅନ୍ତର ।

( ଉଭୟଙ୍କର ପ୍ରସ୍ଥାନ )

---

## ଦ୍ୱିତୀୟ ଦୃଶ୍ୟ

[ ଦୁର୍ଗମଧ୍ୟସ୍ଥ ଅନ୍ୟ ଗୋଟିଏ ପ୍ରକୋଷ୍ଠ ]

( ହ୍ୟାମ୍‌ଲେଟ୍‌ର ପ୍ରବେଶ )

ହ୍ୟାମ୍—ମୁଁ ତାହାକୁ ନିରାପଦ ସ୍ଥାନରେ ନେଇ ରଖି ଦେଇଅଛି ।

ରୋଜେନ୍ }
ଗିଲ୍‌ଡେନ୍ } —(ଅନ୍ତରାଳରୁ) ହ୍ୟାମ୍‌ଲେଟ୍, ଯୁବରାଜ ହ୍ୟାମ୍‌ଲେଟ୍ !

ହ୍ୟାମ୍—ଏ କି ଶବ୍ଦ ? କିଏ ହ୍ୟାମ୍‌ଲେଟ୍‌କୁ ଡାକୁଛି ? ଏଇ ତ ସେମାନେ ଆସୁଅଛନ୍ତି ।

( ରୋଜେନ୍‌କ୍ରାନ୍‌ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରବେଶ )

ରୋଜେନ୍—ଯୁବରାଜ, ସେ ମୃତଦେହକୁ କ'ଣ କଲ ?

ହ୍ୟାମ୍—ମାଟିର ଶରୀର ମାଟିରେ ମିଶିଗଲା ।

ରୋଜେନ୍—ତାକୁ କେଉଁଠି ରଖିଅଛ କହ, ଅମ୍ଭେମାନେ ତାକୁ ସେଠାରୁ ଗିର୍ଜାକୁ ନେଇଯିବୁଁ ।

ହ୍ୟାମ୍—ତୁମ୍ଭେମାନେ ଏହା ବିଶ୍ୱାସ କର ନାହିଁ ।

ରୋଜେନ୍—କ'ଣ ?

ହ୍ୟାମ୍—ତୁମ୍ଭମାନଙ୍କର ଗୁପ୍ତ ଚେଷ୍ଟା ଲୁଚାଇ ରଖି ମୋର ନିଜର କଥାଟା କହିଦେବି । ତା' ଛଡ଼ା ତୁମ୍ଭେ ଗୋଟାଏ ସାମାନ୍ୟ ସ୍ପଞ୍ଜ୍ ହୋଇ କି ସାହସରେ ମୋତେ ଏଭଳି ପ୍ରଶ୍ନ ପଚାରୁଅଛ ? ଜଣେ ରାଜକୁମାରଠାରୁ ତୁମ୍ଭେ କି ଉତ୍ତର ପ୍ରତ୍ୟାଶା କର ?

ରୋଜେନ୍—ଯୁବରାଜ, ମୋତେ କଣ ତୁମ୍ଭେ ଗୋଟାଏ ସ୍ପଞ୍ଜ୍ ବୋଲି ମନେକର ?

ହ୍ୟାମ୍—ହଁ ମହାଶୟ; କାରଣ ତାହା ରାଜାଙ୍କର ଅନୁଗ୍ରହ, ପୁରସ୍କାର ଓ ବିବିଧ କ୍ଷମତା ଶୋଷଣ କରିନିଏ । କିନ୍ତୁ ଏଭଳି କର୍ମଚାରୀମାନେ ପରିଶେଷରେ ରାଜାଙ୍କର ଖୁବ୍ କାର୍ଯ୍ୟରେ ଆସନ୍ତି; ମର୍କଟ ଯେପରି ଫଳ ପ୍ରଭୃତି ପ୍ରଥମେ ନେଇ ତାର ଗାଲ ମୁଣିରେ ରଖେ ରାଜା ମଧ୍ୟ ସେହିପରି ସେମାନଙ୍କୁ ପ୍ରଥମେ କଳରେ ରଖି ତାପରେ ଗିଳି ଦଅନ୍ତି । ତୁମ୍ଭେ ଯେଉଁସବୁ ସମ୍ବାଦ ସଂଗ୍ରହ କରିଅଛ, ତାହା ଯେତେବେଳେ ରାଜା ଜାଣିବାକୁ ଚାହିଁବେ ସେ ସବୁ ନିପୁଡ଼ି ବାହାର କରି ନେବେ ଏବଂ ତୁମ୍ଭେ ସ୍ପଞ୍ଜ୍ ପରି ଯେଉଁ ଖାଲିକି ସେହି ଖାଲି ହୋଇଯିବ ।

ରୋଜେନ୍—ମୁଁ ତୁମ୍ଭର କଥା ବୁଝି ପାରିଲି ନାହିଁ ଯୁବରାଜ ।

ହ୍ୟାମ୍—ମୁଁ ଶୁଣି ଖୁସିହେଲି; ମୂର୍ଖ ଛଳନାପୂର୍ଣ୍ଣ କଥା ବୁଝିବ କାହୁଁ ?

ରୋଜେନ୍—ଯୁବରାଜ, ସେହି ମୃତ ଦେହ କେଉଁଠି ଅଛି ତାହା
ତୁମ୍ଭକୁ କହିବାକୁ ହେବ ଏବଂ ଆମ୍ଭମାନଙ୍କ ସହିତ ତୁମ୍ଭକୁ
ରାଜାଙ୍କ ନିକଟକୁ ଯିବାକୁ ହେବ ।

ହ୍ୟାମ୍—ଦେହ ତ ରାଜାଙ୍କ ପାଖରେ ଅଛି କିନ୍ତୁ ରାଜା ଦେହରେ
ନାହାନ୍ତି । ରାଜା ଗୋଟିଏ ପଦାର୍ଥ—

ଗିଲ୍ଡେନ୍—ଗୋଟିଏ ପଦାର୍ଥ ଯୁବରାଜ !

ହ୍ୟାମ୍—ଅପଦାର୍ଥ; ମୋତେ ତାଙ୍କ ନିକଟକୁ ନେଇଯାଅ ।
ଢୋକଣିଅଳୀ ଲୁଚିଲେ ଅଜ ସମସ୍ତେ ତା ପଛରେ ଗୋଡ଼ାନ୍ତୁ ।

( ସମସ୍ତଙ୍କର ପ୍ରସ୍ଥାନ )

---

## ତୃତୀୟ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ଅନ୍ୟ ଗୋଟିଏ ପ୍ରକୋଷ୍ଠ ]

( ଅନୁଚରମାନଙ୍କସହ ରାଜାଙ୍କର ପ୍ରବେଶ )

ରାଜା—ତୁଶପ ସନ୍ଧାନେ ପୁଣି ତାର ଅନ୍ୱେଷଣେ
ଲୋକ କରିଛି ପ୍ରେରଣ; ସ୍ୱଚ୍ଛନ୍ଦ ବିହାର
ତାର ଘଟାଉଛି ରାଜ୍ୟେ କେଡ଼ିକ ଅନର୍ଥ !
ନୁହଇ ଉଚିତ କିନ୍ତୁ କରିବା ବନ୍ଧନ
ପଦ ତାର ଶାସନର ସୁଦୃଢ଼ ଶୃଙ୍ଖଳେ,
ଅନୁରକ୍ତ ପ୍ରଜାବର୍ଗ ଯେଣୁ ତାହା ପ୍ରତି,

ଜନପ୍ରୀତ ପ୍ରତିଷ୍ଠିତ ନୁହେଁ ଏହି ଦୃତ-
ଭକ୍ତ ପରେ, ନୟନ-ସୈକତେ ତାର ବନ୍ଧା
ମୂଳଦୁଅ, ନ ତଉଲି ଏହେ ଯେଣୁ ଦୋଷୀ
ଅପରାଧ, ଶାସ୍ତିର ଗୁରୁତ୍ୱ, ଲୋକେ ସଦା
କରନ୍ତି ବିଚାର । ପେଶି ତାକୁ ଅତର୍କିତେ
ଦେଶାନ୍ତରେ ମୁହିଁ ଲୋକେ କରିବ ପ୍ରଚାର
ହୋଇଥିଲା ବହୁପୂର୍ବେ ସ୍ଥିରୀକୃତ ତାହା,
ନ ହେବ ସନ୍ଦେହ ତେବେ ଜାତ ଲୋକ ମନେ;
ବ୍ୟାଧିର ପ୍ରାବଲ୍ୟ ବୁଝି ଭେଷଜ ବିଧାନ
କଲେ ତାହା ଉପଶାନ୍ତ ହୁଅଇ, ନହୁବା
ହୁଏ ଦୁରାରୋଗ୍ୟ ।

(ରୋଜେନ୍‌କ୍ରାନ୍‌ସର ପ୍ରବେଶ)

କହ କିବା ସମାଚାର ?

ରୋଜେନ୍—ମହାଭାଗ, ସେ ଶବଟି କେଉଁଠି ରଖିଛନ୍ତି ତାହା କୌଣସିମତେ ଆମ୍ଭଙ୍କୁ କହିଲେ ନାହିଁ ।

ରାଜା—ସେ କେଉଁଠି ଅଛି ?

ରୋଜେନ୍—ବାହାରେ, ମହାରାଜ; ପ୍ରହରୀମାନେ ତାଙ୍କୁ ଜଗିଛନ୍ତି; ବର୍ତ୍ତମାନ ଆପଣଙ୍କର ଆଦେଶ ଶ୍ରବଣ କରନ୍ତୁ ।

ରାଜା—ତାକୁ ଆମ୍ଭ ସମ୍ମୁଖରେ ଆଣି ହାଜର କର ।

ରୋଜେନ୍—ଗିଲ୍‌ଡେନ୍‌ଷ୍ଟାର୍ଣ୍ଣ, ଯୁବରାଜଙ୍କୁ ଏଠାକୁ ନେଇଆସ ।

(ହ୍ୟାମ୍‌ଲେଟ୍ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରବେଶ)

ରାଜା—ହ୍ୟାମ୍‌ଲେଟ୍, ପଲୋନିଅସ୍ କାହିଁ ?

ହ୍ୟାମ୍—ଭୋଜନାଳୟରେ ।

ରାଜା—ଭୋଜନାଳୟରେ ! କେଉଁଠି ?

ହ୍ୟାମ୍—ଭୋକ୍ତା ରୂପେ ନୁହେଁ, ଭୋଜ୍ୟ ରୂପେ : ଗୋଟିଏ କୀଟ-ସମ୍ପ୍ରଦାୟ ବିରାଟ ସଭା ଆହ୍ୱାନ କରି ତାଙ୍କୁ ନେଇ ଆହାରରେ ବସିଛନ୍ତି । ଯେଉଁ କୀଟବୃନ୍ଦଙ୍କ ଅମ୍ଭେମାନେ ସଚରାଚର ଦେଖିଥାଉଁ ସେହିମାନେହିଁ ତ ଆପଣଙ୍କର ଅସଲ ଭୋକ୍ତା; ଅମ୍ଭେମାନେ ଅନ୍ୟାନ୍ୟ ପ୍ରାଣୀମାନଙ୍କୁ ଖୋଇ ପେଇ ମୋଟା କରିଥାଉଁ ଅମ୍ଭମାନଙ୍କ ଆହାର ନିମିତ୍ତ, ଏବଂ ଅମ୍ଭେମାନେ ଖାଇ ପିଇ ମୋଟା ହେଉଁ, କୀଟଙ୍କ ସକାଶେ । ଆପଣଙ୍କର ହୃଷ୍ଟପୁଷ୍ଟ ରାଜା ଓ ଶୀର୍ଣ୍ଣକାୟ ଭିକ୍ଷୁକ ପୃଥକ୍ ଭାବରେ ଦୁଇଟା ଭିନ୍ନ ଭିନ୍ନ ଥାଳୀରେ ପରିବେଷିତ ହୁଅନ୍ତି ସତ୍ୟ କିନ୍ତୁ ସେମାନଙ୍କର ଭୋକ୍ତା ଏକ, ସମାନ ପରିଣତି ।

ରାଜା—ହାୟ, ହାୟ !

ହ୍ୟାମ୍—ଯେଉଁ କୀଟ ରାଜାଙ୍କର ଶରୀରକୁ ଭକ୍ଷଣ କରେ ତାକୁ ନେଇ ଲୋକେ ଥୋପ ରୂପେ ବ୍ୟବହାର କରନ୍ତି, ଏବଂ ଯେଉଁ ମତ୍ସ୍ୟ ଉକ୍ତ ଥୋପକୁ ଗିଳେ ତାକୁ ଲୋକେ ଖାଇଥାନ୍ତି ।

ରାଜା—ତୁମ୍ଭର ଏପରି କହିବା ତାତ୍ପର୍ଯ୍ୟ କ'ଣ ?

ହ୍ୟାମ୍—ଆଉ କିଛି ନୁହେଁ, କେବଳ ମୁଁ ତୁମ୍ଭକୁ କହିବାକୁ ଚାହେଁ ଯେ ରାଜା ମଧ୍ୟ ଭିକ୍ଷୁକର ମଳନାଳୀରେ ଯାତ୍ରା କରିଥାନ୍ତି ।

ରାଜା—ପଲୋନିଅସ୍ କାହିଁ ?

ହ୍ୟାମ୍—ସ୍ୱର୍ଗରେ; ତାକୁ ଖୋଜିବା ପାଇଁ ସେଠାକୁ ଲୋକ ପଠାନ୍ତୁ, ଯଦି ଆପଣଙ୍କର ଲୋକ ତାକୁ ସେଠି ଖୋଜି ନ ପାଏ ତାହା-ହେଲେ ଆପଣ ନିଜେ ଯାଇ ଅନ୍ୟ ସ୍ଥାନରେ ଖୋଜନ୍ତୁ । କିନ୍ତୁ ବାସ୍ତବିକ୍ ଆପଣ ଯଦି ତାକୁ ଏହି ଏକମାସ ମଧ୍ୟରେ ଖୋଜି ବାହାର କରି ନ ପାରନ୍ତି ତା’ହେଲେ ଆପଣଙ୍କର ସଭା-ଗୃହର ନିକଟବର୍ତ୍ତୀ ଦୋତାଲାର କୋଠରୀରେ ନିଶ୍ଚୟ ତାହାର ଗନ୍ଧ ପାଇବେ ।

ରାଜା—ଯାଅ, ସେଠି ତାକୁ ଖୋଜ । (କେତେକ ଅନୁଚରଙ୍କ ପ୍ରତି)

ହ୍ୟାମ୍—ତାର ପଳାଇ ଯିବାର କୌଣସି ଆଶଙ୍କା ନାହିଁ, ସେ ନିଶ୍ଚୟ ଅପେକ୍ଷା କରିଥିବ ।

(ଅନୁଚରମାନଙ୍କର ପ୍ରସ୍ଥାନ)

ରାଜା—ଦେଖ ହ୍ୟାମ୍‌ଲେଟ୍, କରିଅଛ ଏହି କାର୍ଯ୍ୟ
ଶଙ୍କାକୁଳ ଅତି ଅବସ୍ଥା ତୁମ୍ଭର, ନୁହେଁ
ଆଉ ନିରାପଦ ଅବସ୍ଥାନ ତବ ଏହି
ଦେଶେ, ତେଣୁ ମୁହିଁ ହୋଇଛି ଉଦ୍‌ବିଗ୍ନ, ପୁଣି
ତବ କାର୍ଯ୍ୟ, ପ୍ରାଣେ ମୋର ଦେଇଛି ଆଘାତ
ସେ ହେତୁ କହନ୍ତି ତୁମ୍ଭେ ତେଜି ଏହି ରାଜ୍ୟ
ଯାଅ ଚାଲି, ଅବଲମ୍ବେ ହୁଅ ହେ ସଜ୍ଜିତ;
ପ୍ରସ୍ତୁତ ହୋଇଛି ତରୀ, ବାୟୁ ଅନୁକୂଳ,
ସହଚରବୃନ୍ଦ ମଧ୍ୟ ଅଛନ୍ତି ପ୍ରସ୍ତୁତ,
ଇଂଲଣ୍ଡର ଯାତ୍ରା ପାଇଁ ପ୍ରସ୍ତୁତ ସମସ୍ତ ।

ହ୍ୟାମ୍—ବଙ୍ଗଳ ପାଇଁ !

ରାଜା—                ହଁ, ହ୍ୟାମ୍‌ଲେଟ୍ ।

ହ୍ୟାମ୍ —                              ଉତ୍ତମ ।

ରାଜା—ତୁମ୍ଭର ମଙ୍ଗଳ ନିମନ୍ତେ ମୁଁ ଏହି ବ୍ୟବସ୍ଥା କରୁଛି ।

ହ୍ୟାମ୍—ତାହା ପ୍ରଭୁଙ୍କୁ ଜଣା । ହେଉ, ମୋତେ ବଙ୍ଗଳ ଯିବାକୁ ହେବ।
ମା, ତେବେ ଆସେଁ, ବିଦାୟ ।

ରାଜା—ହ୍ୟାମ୍‌ଲେଟ୍, ମୁଁ ତୁମ୍ଭର ପିତା ।

ହ୍ୟାମ୍—ମୋର ମାତା; ପିତା ଓ ମାତା —ପୁରୁଷ ଏବଂ ସ୍ତ୍ରୀ; ପୁରୁଷ ଏବଂ
ସ୍ତ୍ରୀ ଏକା ମାଂସରେ ଗଢ଼ା, ଅଭିନ୍ନ; ଅତଏବ ମୋର ମାତା ।
ତେବେ ମୁଁ ବଙ୍ଗଳକୁ ବାହାରିଲି ।

(ପ୍ରସ୍ଥାନ)

ରାଜା—ଯାଅ ପଶ୍ଚାତେ ତାହାର, ଅବିଳମ୍ବେ ନେଇ
ତାକୁ ବସାଅ ତରୀରେ, କାଳକ୍ଷୟେ ନାହିଁ
ପ୍ରୟୋଜନ; ଯିବ ସେ ଅବଶ୍ୟ ଚେଡ଼ି ରାଜ୍ୟ
ମୋର, ଅଦ୍ୟ ରଜନୀରେ, ଯାଅ ହେ ବହନ,
ହୋଇଛି ପ୍ରସ୍ତୁତ ସବୁ ଜଳଯାତ୍ରା ପାଇଁ,
କରୁଛି ମିନତି ଶୀଘ୍ର କର ହେ ଗମନ ।

(ରୋଜେନ୍‌କ୍ରାନ୍‌ସ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣର ପ୍ରସ୍ଥାନ)

ଇଂଲଣ୍ଡ, ବିକ୍ରମ ମୋର ଅଛି ତୋତେ ଜଣା,
କି ଶକ୍ତ ଧାରଣକରେ ଦିନାମାର ଅସି,
ଅଦ୍ୟାପି ତା ସ୍ମୃତି-ତୁହି ନ ଥିବୁ ତ ଭୁଲି,
ରହିଛି ଅଦ୍ୟାପି ଯେଣୁ ଗାତେ ଅସ୍ତ୍ର ଲେଖା

ସଠେଜ, କରୁଛୁ ଅଦ୍ୟାପି ତୁମ୍ଭ ଆଦେଶ
ପାଳନ ନତଶିରେ, ତେଣୁ ସମ୍ଭବ ନୁହେଁ
ତୋର ପକ୍ଷେ କରିବା ଅବଜ୍ଞା ରାଜ-ଆଜ୍ଞା
ମୋର; ଲେଖିଛି ମୁଁ ସ୍ପଷ୍ଟାକ୍ଷରେ କରିବାକୁ
ବଧ ତାକୁ ଉପସ୍ଥିତ ମାତ୍ରେ, ହ୍ୟାମ୍‌ଲେଟ୍‌ର
ଅଶୁ ହତ୍ୟା ଆଦେଶ ମୋହର । କର ତାହା
ପାଳନ ଇଂଲଣ୍ଡ; ଜଳୁଛି ଯେ ବହ୍ନି ସଦା
ଅନ୍ତରେ ମୋହର କର ତୁମ୍ଭ ନିର୍ବାପିତ;
ଯଦବଧି ଏହି କାର୍ଯ୍ୟ ନ ହେବ ସମ୍ପନ୍ନ
ଥିଲେ ମାତ୍ର ଶାନ୍ତ ପ୍ରାଣେ ନ ଲଭିବ ମୁହିଁ ।

(ପ୍ରସ୍ଥାନ)

---

## ଚତୁର୍ଥ ଦୃଶ୍ୟ

[ ଡେନ୍‌ମାର୍କର ପ୍ରାନ୍ତର ]

( ଫୋର୍ଟିନ୍‌ବ୍ରାସ୍, ଜନୈକ ସୈନ୍ୟାଧ୍ୟକ୍ଷ ଓ ସୈନ୍ୟମାନଙ୍କର ସାମରିକ ଗତିରେ ପ୍ରବେଶ )

ଫୋର୍ଟିନ୍—ଯାଅ ଚମ୍ପତି ଦନାମାର ନୃପତିଙ୍କି
ଜଣାଅ ପ୍ରଣତି, କହ ଯାଇ ଅନୁମତି
ଲଭିଲେ ତାଙ୍କର ପୂର୍ବ ପ୍ରତିଶ୍ରୁତି ମତେ
ନେବ ମୁଁ ବାହିନୀ ତାଙ୍କ ରାଜ୍ୟ ମଧ୍ୟ ଦେଇ ।

ଜାଣ କାହିଁ ଭେଟିବ ଆମ୍ଭଙ୍କୁ । ଥାଏ ଯଦ
ଅନ୍ୟ କିଛି କଥା ମୋ ସମ୍ବନ୍ଧେ, ଜଣାଇବ
ନୃପତିଙ୍କି, ସାକ୍ଷାତେ ତାଙ୍କର ଉପସ୍ଥିତ
ହୋଇ ରାଜଭକ୍ତି ମୋର କରିବ ଜ୍ଞାପନ ।

ସୈନ୍ୟ—ଜଣାଇବ ପ୍ରଭୁ ।

ଫୋର୍ଟିନ୍—ଯାଅ ଧୀରେ ସୈନ୍ୟସଙ୍ଘ ।

(ଫୋର୍ଟିନ୍‌ବ୍ରାସ୍ ଓ ସୈନ୍ୟମାନଙ୍କ ପ୍ରସ୍ଥାନ)

(ହ୍ୟାମ୍‌ଲେଟ୍, ରୋଜେନ୍‌କ୍ରାନ୍‌ସ, ଗିଲ୍ଡେନ୍‌ଷ୍ଟାର୍ଣ୍ଣ ଓ ଅନ୍ୟାନ୍ୟମାନଙ୍କ ପ୍ରବେଶ )

ହ୍ୟାମ୍—ମହାଶୟ, ଏ ସୈନ୍ୟ କାହାର ?

ସୈନ୍ୟ—ମହାଶୟ, ନରୱେ ନରପତିଙ୍କର ।

ହ୍ୟାମ୍—ମହାଶୟ, କି ଉଦ୍ଦେଶ୍ୟରେ ସେମାନେ ଏଠାକୁ ଆସିଅଛନ୍ତି ଅନୁଗ୍ରହ କରି କହ ।

ସୈନ୍ୟ—ସେମାନେ ପୋଲଣ୍ଡ ବିରୁଦ୍ଧରେ ଯାତ୍ରା କରୁଅଛନ୍ତି ।

ହ୍ୟାମ୍—ସେମାନଙ୍କର ଅଧିନାୟକ କିଏ ମହାଶୟ ?

ସୈନ୍ୟ—ବୃଦ୍ଧ ନରୱେ ନୃପତିଙ୍କର ଭ୍ରାତୃଷ୍ପୁତ୍ର ଫୋର୍ଟିନ୍‌ବ୍ରାସ୍ ।

ହ୍ୟାମ୍—ଏହି ଅଭିଯାନ ପୋଲଣ୍ଡ ବିରୁଦ୍ଧରେ ଅଥବା ତାର କୌଣସି ସୀମାନ୍ତ ପ୍ରଦେଶକୁ ଲକ୍ଷ୍ୟକରି ଗୃହୀତ ହୋଇଛି, ମହାଶୟ ?

ସୈନ୍ୟ—କହିଲେ ଯଥାର୍ଥ ଭାବେ ନ କରି ଅତ୍ୟୁକ୍ତି,
ଅତ୍ୟଳ୍ପ ଭୂଖଣ୍ଡ ଛଡ଼ା ଅନ୍ୟ କିଛି ଲାଭ
ନାହିଁ ଏହି ଅଭିଯାନେ, ନାମ ମାତ୍ର ସାର ।

କହିଲେ କର୍ଷଣ ତାହା ଜମା ପଞ୍ଚମୁଦ୍ରା
ନ ଦେବ ତାହାର, ତଦଧିକ ଅସ୍ତୁ ମଧ୍ୟ
ନରୱେ ପୋଲଣ୍ଡ ଏବା ନ ଲଭିବେ ତହୁଁ
କହିଲେ ନିଶ୍ଚୟ ।

ହ୍ୟାମ୍—ପୋଲଣ୍ଡ ନିବାସୀ ତେବେ
ନିର୍ବିବାଦେ ଛାଡ଼ି ଦେବେ ନ କରି ସମର ।

ସୈନ୍ୟ—ହୋଇଛି ପୋଲର ସୈନ୍ୟେ ତାହା ସୁରକ୍ଷିତ ।

ହ୍ୟାମ୍—ଦ୍ୱି ସହସ୍ର ପ୍ରାଣୀ, ମୁଦ୍ରା ବିଂଶତି ସହସ୍ର,
ହେବ ଲୋଡ଼ା କରିବାକୁ ତୃଣ ସମ କ୍ଷୁଦ୍ର
ଏହି ବିବାଦ ଭଞ୍ଜନ । ବହୁକାଳ ଶାନ୍ତି
ଫଳେ ଧନ ବୃଦ୍ଧି ହେତୁ, ଆଳସ୍ୟ ପ୍ରସୂତ
ଦୁର୍ବୁଦ୍ଧି-ଦୂଷିତ-ବ୍ରଣ ହୋଇ ଜାତ ରାଜ୍ୟ—
କଳେବରେ, କରେ ତାର ଉଚ୍ଛେଦ ସାଧନ,
ଅନ୍ତର୍ମୁଖୀ ହେତୁ କିନ୍ତୁ ତାର ବହିର୍ଦ୍ଦେଶେ
ନ ହୁଏ ଲକ୍ଷିତ । ଘେନ ଧନ୍ୟବାଦ ମୋର ।

ସୈନ୍ୟ—ମହାଭାଗ, ପ୍ରଭୁ ତବ କରନ୍ତୁ ମଙ୍ଗଳ । (ପ୍ରସ୍ଥାନ)

ରୋଜେନ୍—ଯୁବରାଜ ଅଗ୍ରସର ହୋଇବ କି ଏବେ ?

ହ୍ୟାମ୍—ଚାଲ ତୁମ୍ଭେ, ତୁମ୍ଭ ସହ ମିଳିବି ବହନ ।

( ହ୍ୟାମ୍‌ଲେଟ୍ ବ୍ୟତୀତ ଅନ୍ୟ ସମସ୍ତଙ୍କର ପ୍ରସ୍ଥାନ )

କେମନ୍ତେ ଘଟନାଚକ୍ର ପ୍ରତିଅବସ୍ଥିତେ,
କରୁଛି ଧିକ୍କାର ଶତ ନିଶ୍ଚେଷ୍ଟତା ମୋର,

ମନ୍ଦ ପ୍ରତିହିଂସାନଳ କରୁଛି ଦୀପିତ !
ଅଛି କି ବା ନର ଏହି ଭବ-ଦର୍ପଣିରେ,
ଜନମସ୍ତେ ବହୁମୂଲ୍ୟ ଜୀବନ ତାହାର,
କରିବାକୁ ବ୍ୟୟ ମାତ୍ର ଅଶନ, ଶୟନ ?
କେଉଁ ଗୁଣେ ପଶୁଠାରୁ ରହିଲା ପାର୍ଥକ୍ୟ
ମାନବର ତେବେ ? ଯେଉଁ ବିଧି ବିଶ୍ୱକର୍ମା
ବିଚିତ୍ର କୌଶଳେ, ବିବିଧ ଗୁଣଭୂଷିତ
ମାନବ ସମାଜ କରିଛନ୍ତି ସୃଷ୍ଟି, ତାର
ହୃଦୟ-ମନ୍ଦିରେ ହେମ-ବର୍ତ୍ତୀ ବିବେକର
ଦେଇଛନ୍ତି ଜାଳି, କରିବାକୁ ନିରୂପଣ
ଆପଣା କର୍ତ୍ତବ୍ୟ ସିନା ସେ ଦିବ୍ୟ ଆଲୋକେ !

ଅନ୍ତର ନିଭୃତ ଦେଶେ ରଖି ସଂଗୋପନେ
କରିବା ବିବର୍ଣ୍ଣ ତାର ମହନୀୟ କାନ୍ତି
ବ୍ୟବହାର ବିନା, ନୁହେଁ ବିଭୁଙ୍କ ଉଦ୍ଦେଶ୍ୟ ।
କି ହେତୁ ଜଡ଼ତା ମୋତେ କରିଛି ଅଚଳ,
ଯେ କାରଣେ ଅଦ୍ୟାବଧି ନ କରି ନିଷ୍ପନ୍ନ
ଏହି କାର୍ଯ୍ୟ, ରହିଛି ଜୀବିତ ନ ପାରଇଁ
ବୁଝି; କରିବାକୁ ସମ୍ପନ୍ନ ଏ କାର୍ଯ୍ୟ ମୋର
ପ୍ରକୃଷ୍ଟ କାରଣ ଅଛି, ଅଛି ତ ସଂକଳ୍ପ,
ଅଛି ପୁଣି ସାମର୍ଥ୍ୟ, ଉପାୟ; ତେବେ କିପାଁ
ରହିଛି ନିଶ୍ଚେଷ୍ଟ ? ହୋଇପାରେ ସ୍ମୃତିଭ୍ରଂଶ,
ଚିତ୍ତଦୁର୍ବଳତା ଅବା କାରଣ ତାହାର;

ଧର୍ମହାନ ଭୟେ ମୁହିଁ ବହୁ ଗବେଷଣା
କରଛି ଏ ଘଟନାର, ମାତ୍ର ଅମୂଳକ
ଧର୍ମଭୟ, ଭୀରୁତାର ନାମାନ୍ତର ସିନା !
ବହୁଳ ଦୃଷ୍ଟାନ୍ତ ମୋର ରହିଛି ପୁରତେ,
କହିବାକୁ ବୃଥା ମୋତେ ଏ କାର୍ଯ୍ୟ ସାଧନେ;
ବିପୁଳ ବାହିନୀ ଦେଖ ବହି ବୀର୍ଯ୍ୟଭର,
ହେଉଛି ଚାଳିତ କେଉଁ ଅର୍ଭକ ଇଙ୍ଗିତେ;
ସୁକୁମାର ବପୁ ଯାର ଶିକ୍ଷିତ ସଦ୍‌ଗୁଣ
ଦେଖିନାହିଁ ଦିନେ ସୁଦ୍ଧା ସମର ପ୍ରାଙ୍ଗଣ,
ସେହି ପୁଣି ସ୍ଫୀତ ହୋଇ ଉଚ୍ଚାକାଂକ୍ଷା ବଶେ,
ପରିଣାମ ପ୍ରତି ଥରେ ନ କରି ଭ୍ରୂକ୍ଷେପ;
ଭଙ୍ଗୁର ଏ ଜୀବନର ମାୟା ତେଜି ହେଲେ,
ଧାଉଁଛି କେମନ୍ତ ଯଶଃ-ମରୀଚିକା ଲୋଭେ,
ସଦର୍ପେ ଶମନ ଶିରେ କରି ପଦାଘାତ,
ଲଭିବାକୁ ମାତ୍ର ତୁଚ୍ଛ ଡିମ୍ବ ଆବରଣ !
ଆପଣା ମର୍ଯ୍ୟାଦା ଯେବେ ହୁଅଇ ବିପନ୍ନ,
ଦେଶ, କାଳ, ପାତ୍ର ତହିଁ ନ କରି ବିଚାର,
ଉପୁଜାଇ ବିସମ୍ବାଦ ସାମାନ୍ୟ କାରଣେ,
ଆତ୍ମସମ୍ମାନର ଟେକ ରଖିବା ଅହେତୁ,
ମହତ୍ତ୍ୱର ଅଟେ ସିନା ଯଥାର୍ଥ ଲକ୍ଷଣ ।
ଅହୋ କିବା ନିନ୍ଦନୀୟ ଅବସ୍ଥା ମୋହର !
ଯାହାର କୁଳ ମର୍ଯ୍ୟାଦା ବଂଶର ଗୌରବ

ରହିଛ ମୁଁ ଏତେକାଳ ସ୍ଥିର ସ୍ଥାଣୁ ପରି
ଭୁଲି ମୋ କର୍ତ୍ତବ୍ୟ : ନିହତ ଜନକ ମୋର,
ଅପଯଶ ଗାଥା ଦେଶବ୍ୟାପୀ ଜନଗଣ
ହେଉଛି ଘୋଷିତ, ତଥାପି ନିର୍ଜ୍ଜୀବ ପ୍ରାଣେ
ନ କଲି ମୁଁ ଅନୁଭବ ସ୍ପନ୍ଦନ ତାହାର,
ଶୋଣିତ ପ୍ରବାହ ମୋର ନ ହେଲା ଉତ୍ତପ୍ତ,
ଛି, ଛି, କି ଲଜ୍ଜାର କଥା ! ନୟନ ସମକ୍ଷେ
ବିଂଶତି ସହସ୍ର ପ୍ରାଣୀ ମାତି ଯଶଃମଦେ
ଯାଉଛନ୍ତି ଦେବାପାଇଁ ପତଙ୍ଗ ସଦୃଶ
ସମର ଅନଳେ ଝାସ, କରୁଛନ୍ତି ଜ୍ଞାନ
ଶମନ ସଦନ ଯଥା ଶୟନ ଅଗାର,
କି ହେତୁ ଏ ରଣସଜ୍ଜା ? ଏକାଣ୍ଡ ଭୂଖଣ୍ଡ
ମାତ୍ର ଅଟଇ କାରଣ, କ୍ଷୁଦ୍ର ଗର୍ଭେ ତାର
ନାହିଁ ସ୍ଥାନ ଏତେ ଲୋକ ପାଇବ ସମାଧି,
ନାହିଁ ପୁଣି ସ୍ଥାନ ତହିଁ ହତ ବ୍ୟକ୍ତିଙ୍କର
ତୋଳିବାକୁ ସ୍ମୃତିସ୍ତମ୍ଭ, କରିବାକୁ ଅବା
କବର ନିର୍ମାଣ ! ଘେନୁଛି ଏ ପଣ ମୁହିଁ
ପ୍ରତିହିଂସା ଛଡ଼ା ଅନ୍ୟ କିଛି ଭାବ ଆଜି
ଅଙ୍କଠାରୁ ମନୋମଧ୍ୟେ ନ ଲଭିବ ସ୍ଥାନ ।
(ପ୍ରସ୍ଥାନ)



## ପଞ୍ଚମ ଦୃଶ୍ୟ

[ ଦୁର୍ଗମଧ୍ୟସ୍ଥ ପ୍ରକୋଷ୍ଠ ]

( ରାଣୀ, ହୋରାସିଓ ଓ ଜନୈକ ଭଦ୍ରବ୍ୟକ୍ତିଙ୍କର ପ୍ରବେଶ )

ରାଣୀ—ଆଳାପ ମୁଁ ନ କରିବି ତାହାର ସହିତ ।
ଭଦ୍ର—କରୁଛି ସେ ସନିର୍ବନ୍ଧ ଅନୁରୋଧ, ନାହିଁ
   ତାର ମନ ସ୍ଥୈର୍ଯ୍ୟ ପୁଣି, ଆହା, ତା ଅବସ୍ଥା
   ଦେଖିଲେ କରୁଣା ସ୍ୱତଃ ହେବ ସଞ୍ଚାରିତ !
ରାଣୀ—କିବା ଉଦ୍ଦେଶ୍ୟ ତାହାର ?
ଭଦ୍ର—                    କହୁଛି ସେ କେତେ
   କଥା ପିଅର ସମ୍ବନ୍ଧେ; କହଇ ସେ ପୁଣି
   ବାଜୁଛି ତା ଶୁଣ ମୂଳେ ଅଶ୍ରୁତ ଝଙ୍କାର,
   କହଇ ଜଗତର ଚତୁର ବାରତା;
   ଅଳପେ, ଅଳପେ କାସି ବକ୍ଷେ କରାଘାତ
   କରୁଛି ସଘନେ; କ୍ରୋଧେ ମତ୍ତ ହୋଇ, ପୁଣି
   ସାମାନ୍ୟ କାରଣେ କରୁଛି ସେ ପଦାଘାତ,
   ଦେଖଇ ଯେ ତୃଣ ଖଣ୍ଡ ସମ୍ମୁଖେ ତାହାର;
   ଅସଂବଦ୍ଧ କଥାମାନ କହୁଛି ସେ କେତେ
   ଅର୍ଥ ତାର ନୁହେଁ ପରିସ୍ଫୁଟ, ତଥାପି ସେ
   କଥା ଶୁଣି ବିବିଧ କଳ୍ପନା କରୁଛନ୍ତି
   ଶ୍ରୋତୃବର୍ଗ ଯେ ଯାହାର ମତେ । ଦେଖିଲେ ତା
   ଅଙ୍ଗଭଙ୍ଗୀ, ନୟନ ନର୍ତ୍ତନ ପୁଣି ଶିରଃ

ବଧୂନନ, ହେବ ଏ ଧାରଣା ଜାତ ଚିତ୍ତେ
ଦର୍ଶକର, ଶିବେତର ବାଞ୍ଛା କିଛି ବାକ୍ୟ
ତାର ଅନିଶ୍ଚିତଭାବେ କରୁଛି ପ୍ରକାଶ ।

ହୋରା—କଥା ତାର ଶୁଣିବା ଉଚିତ, ବହୁବାଧ
ଶଙ୍କା ଯେଣୁ କୁଜନ ମାନସେ ଜନ୍ମିପାରେ
ଶୁଣି ତାର ପ୍ରଲାପ ବଚନ ।

ରାଣୀ— ଆଣ ତାକୁ ।

(ହୋରାସିଓର ପ୍ରସ୍ଥାନ)

ପାପଦଗ୍ଧ ପ୍ରାଣ ମୋର ତୁଚ୍ଛ ଜୀବନକ
ଦେଖି ଭାଳେ ହେଲା ପଛେ ! ବିଷମ ଅନର୍ଥ,
ଦୁଷ୍କୃତର ପାତ୍ର ସଦା ପୂର୍ଣ୍ଣ ଶଙ୍କାମାରେ,
ଚଳଚଳ ହୋଇ ଅପେ ଢଳଇ ଅତରେ ।

( ଓଫିଲିଆ ସହିତ ହୋରାସିଓର ପୁନଃ ପ୍ରବେଶ )

ଓଫି—କାହିଁ ଛନ୍ତି ଡେନମାର ରାଜ୍ଞୀକୁଳେଶ୍ୱରୀ ?

ରାଣୀ—ଓଫିଲିଆ, କହ କି ସମ୍ବାଦ ?

ଓଫି—(ଗାନ) ସରଳ ପ୍ରୀତି ମୋ ପତି ତୁମର
ଅନ୍ୟ ପ୍ରୀତି ଠାରୁ କେତେ ଅନ୍ତର,
କେମନ୍ତେ ମୁଁ ତାହା ପାରିବ ଜାଣି
କେଉଁଣ ଭାବ ତା କହ ବଖାଣି;
ଥିଲା ତ ଶାମୁକା-ଖୋଳ ଟୋପିରେ
ପଦ୍ମତରେ ପାଦୁକା ଦଣ୍ଡ ତା କରେ । (୧)

---

(୧)ଶାମୁକାଖୋଳ, ପାଦୁକା ଓ ଦଣ୍ଡ—ପୂର୍ବକାଳରେ ଜେରୁଜେଲମ ଯାତ୍ରୀମାନେ ଏ ଚିହ୍ନ ସବୁ ଧାରଣ କରୁଥିଲେ । ମଧ୍ୟ ପଥରେ ଜେରୁଜେଲମ୍ ଯାତ୍ରାଭିଳାଷୀ ବ୍ୟକ୍ତିମାନେ ଟୋପିରେ ଶାମୁକା ଖୋଳ ଧାରଣ କରୁଥିଲେ ।

ରାଣୀ—କହ ଲୋ ସୁନ୍ଦରି, କିସ ତାତ୍ପର୍ଯ୍ୟ ଏହାର ?

ଓଫି—କି କହୁଛ ? ଧୈର୍ଯ୍ୟ ଧର ଶୁଣ ମୋ ବଚନ ।

(ଗାନ) ନାହୁଁ ତ ସେ ଅଉ ଯାଇଛି ଚାଲି,
ସୁନା ପିଞ୍ଜରଟି ପଡ଼ିଛି ଖାଲି;
ଶିରୋଦେଶେ ଶୋଭେ ତୃଣ ଶ୍ୟାମଳ
ପାଦ ଦେଶେ ତାର ରହିଛି ଉପଳ । (୧)

ରାଣୀ—କହ ଓଫିଲିଅ—

ଓଫି— ଦୟା କରି ଶୁଣ ମୋ ବଚନ ।

(ଗାନ) ଶୁଭ୍ର ଆଚ୍ଛାଦନୀ ତୁଷାର ପରି,—

(ରାଜାଙ୍କର ପ୍ରବେଶ)

ରାଣୀ—ଅହା, କର, ପ୍ରଭୁ, ବାରେ ନିରୀକ୍ଷଣ !

ଓଫି—(ଗାନ) ମନୋହର ପୁଷ୍ପେ ଥିଲା ତା ପୂର;
ଶବ ଯାହାକାଳେ ଶୋକେ ଅଧୀର
ହୋଇ ମୁହ୍ୟ ଥିଲେ ଲୋତକ ଧାର ।

ରାଜା— ସୁନ୍ଦରି, ତୁମ୍ଭେ କିପରି ଅଛ ?

ଓଫି—ଭଲ ଅଛି, ଭଗବାନ ତୁମ୍ଭଙ୍କୁ ଯଶସ୍ୱୀ କରନ୍ତୁ । ପ୍ରବାଦ ଅଛି ଯେ ପେଚକ ଜଣେକ ରୁଟିବାଲାର କନ୍ୟା ଥିଲା । (୨) ପ୍ରଭୁ,

---

(୧) ସାଧାରଣତଃ ନୀଚ ଶ୍ରେଣୀର ଲୋକମାନଙ୍କ କବରରେ ତୃଣ ଓ ପ୍ରସ୍ତର ଫଳକ ବ୍ୟବହୃତ ହୁଏ ।

(୨) ଜନଶ୍ରୁତି ଅଛି ଯେ ଥରେ ଯୀଶୁଖ୍ରୀଷ୍ଟ ଗୋଟିଏ ରୁଟିବାଲାର ଦୋକାନକୁ ଯାଇ ଖଣ୍ଡିଏ ରୁଟି ମାଗିବାରୁ ରୁଟିବାଲାର ସ୍ତ୍ରୀ ତାଙ୍କୁ ଖଣ୍ଡିଏ ବଡ଼ ରୁଟି ଦେଲା; ସେଥିପାଇଁ ତାହାର କନ୍ୟା ତାହାକୁ ଭର୍ତ୍ସନା କଲା । ତାର ଏହି କାର୍ପଣ୍ୟ ଦୋଷ ନିମନ୍ତେ ସେ ପେଚକ ରୂପେ ପରିଣତ ହେଲା ।

ଆମ୍ଭମାନଙ୍କର ବର୍ତ୍ତମାନ ଅବସ୍ଥା କ'ଣ ତାହା ଆମ୍ଭେମାନେ ଜାଣୁ କିନ୍ତୁ ଭବିଷ୍ୟତରେ କଣ ହେବୁ ତାହା ଜାଣୁନାହୁଁ । ତୁମ୍ଭର ଅଦ୍ଭୁତ ସମୟରେ ଭଗବାନ୍ ତୁମ୍ଭ ନିକଟରେ ବିଦ୍ୟମାନ ରହନ୍ତୁ ।

ରାଜା—ତାହାର ପିତାର ମୃତ୍ୟୁ ବିଷୟକ ଚିନ୍ତା ତାହାକୁ ଏପରି ବିଚଳିତ କରିଦେଇଅଛି ।

ଓଫି—ମହାରାଜ, ଏ ବିଷୟରେ ତର୍କ କରିବାର ପ୍ରୟୋଜନ ନାହିଁ; ତେବେ ଯଦି କେବେ ଏହାର ତାତ୍ପର୍ଯ୍ୟ ଜାଣିବାକୁ ଚାହାନ୍ତି ତାହାହେଲେ ଏହି କଥା କହିବି ।

(ଗାନ) କାଲି ହେବ ମହୋତ୍ସବ ଦିବସ (୧)
ପାହିଲେ ରଜନୀ ତୁମାରି ବେଶ
ଧରି ମୁଁ ବସିବି ଗବାକ୍ଷ ପାଶେ,
ଦେବ ଗଲେ ତବ ଦ୍ୱାର ହରଷେ ।

ରାଜା—କେତେଦିନ ହେଲା ସେ ଏପରି ହୋଇଅଛି ?

ଓଫି—ମୁଁ ଆଶା କରେ ସବୁ ମଙ୍ଗଳ ହେବ । ଆମ୍ଭମାନଙ୍କର ଧୈର୍ଯ୍ୟ ଧରିବା ଉଚିତ, କିନ୍ତୁ ସେମାନେ ଯେ ତାହାକୁ ନେଇ କାକର ଭୂଇଁରେ ଶୁଆଇ ଦେଇ ଅଛନ୍ତି ଏହା ଭାବିଲେ ମୁଁ ନ କାନ୍ଦି ରହି ପାରୁନାହିଁ । ମୋର ଭାଇ ଏ କଥା ନିଶ୍ଚୟ ଜାଣିବ, ଅତଏବ ତୁମ୍ଭର ସତ୍ ପରାମର୍ଶ ପାଇଁ ମୁଁ ତୁମ୍ଭକୁ ଧନ୍ୟବାଦ

---

(୧) ମହୋତ୍ସବ ଦିବସ—ଫେବୃଆରୀ ମାସ ୧୪ ତାରିଖରେ ସେଣ୍ଟ ଭେଲେଣ୍ଟାଇନ୍‌ଙ୍କ ଦିବସ ପାଳନ ହୁଏ । ପୂର୍ବକାଳରେ ଏହା ନାୟକ ନାୟିକା ମାନଙ୍କର ମିଳନର ଗୋଟିଏ ପ୍ରଧାନ ଦିବସ ଥିଲା ।

ଦେଉଅଛ । ଅସ ଯିବା । ବଦାୟ୍ ମଣ୍ଡଳୀବୃନ୍ଦ, ବଦାୟ୍, ବଦାୟ୍; ବଦାୟ୍ । (ପ୍ରସ୍ଥାନ)

**ରାଜା**—ତାର ପଛେ ପଛେ ଯାଅ; ଦେଖ ତାକୁ ଖୁବ୍ ଭଲକରି ଜଗିଥିବ ।

(ହୋରସିଓର ପ୍ରସ୍ଥାନ )

ଦୁଃଖ ହଳାହଳ; ଅହା କୋମଳ ଅନ୍ତର
ତାର ପକାଇଛି ଘାରି, ପିତୃ ଶୋକେ ସେହୁ
ହୋଇଛି ବାତୁଳୀ । ଜାଣ ପ୍ରିୟେ ଜାର୍ଟ୍ରୁଡ୍,
ଦୁଃସମୟ ଅସେ ଯେବେ, ବହୁଳ ଅନର୍ଥ
ଘେରି ନରେ ଚଉପାଶେ କରେ ବ୍ୟତିବ୍ୟସ୍ତ ।
ନିହତ ଜନକ ତାର. ନିର୍ବାସିତ ପୁଣି
ଅପଣା ଦୁଷ୍କର୍ମ ଫଳେ ତନୟ ତୁମ୍ଭର;
ଦୂଷିତ ସ୍ୱଭାବ ବଶେ ପୁଣି ନାନା ଲୋକେ;
ସତବର ମୃତ୍ୟୁବାର୍ତ୍ତା ବିଭିନ୍ନ ଅକାରେ
କରଣ ରଚିତ, ନାନା ଭାବ ଲୋକ ମନେ
କରୁଛନ୍ତି ଜାତ; ଅବିବେକ ବଶେ ମୁହିଁ
କରିଛି ସହସା ତାକୁ ସମାଧିସ୍ଥ ପୁଣି
ସଗୋପନେ; ଅହା ଅଭାଗିନୀ ଓଫିଲିଅ,
ହରିଇଛି ପୁଣି ତାର ବଗୃର ଶକତି
ନର ମାନ ଜଡ ଚିନ୍ ଯାହାର ବହୁନେ,
ଅବା ପଶୁ ପୁଚ୍ଛହୀନ; ସର୍ବ ଶେଷେ ପୁଣି,
ଗୁପତେ ତାହାର ଭ୍ରାତା ଫରିସି ଦେଶରୁ
ଅସି, ପିତୃ ଶୋକେ ସଦା ହୋଇ ମୁହ୍ୟମାନ
ଭାଳଇ ଘଟିଲା କେମନ୍ତେ ଅଶ୍ରୁତ ଏ ମୃତ୍ୟୁ,

ବନ୍ଧୁ ତାହା ଜନଶ୍ରୁତି ଲଭି ସେ ସୁଯୋଗ,
ହେଉଛୁ ତାର ନାନା ବର୍ଣ୍ଣେ ବର୍ଣ୍ଣ ରଞ୍ଜିତ,
ଘୋଷଇ ନଗରେ ତାହା ଶ୍ରୁତି ମୂଳେ ତାର;
ଏ ସ୍ଥଳେ ବିପକ୍ଷେ ମୋର ବିବିଧ କଳ୍ପନା,
ଶ୍ରୁତ ହେବା ଲୋକ ମୁଖେ ନୁହଇ ବିଚିତ୍ର ।
ହାୟ ପ୍ରିୟେ କାଠରୁଦ୍ଧ, ତୋପ ଗୋଳା ସମ
ସଂହାରଣୀ ଶକ୍ତି ତାର ବକ୍ଷସ୍ଥଳେ ମୋତେ
କରୁଛି ନିହତ ।

ରାଣୀ— (ଅନ୍ତରାଳରେ କୋଳାହଳ ଧ୍ୱନି)

ରାଜା— କି ହେଉଛୁ ଏ କୋଳାହଳ ?
କାହିଁ ଗଲେ ଦୌବାରିକ ଦଳ ? କରନ୍ତୁ ସେ
ଦ୍ୱାର ରକ୍ଷା ଭଲେ । (ଅନ୍ୟ ଏକ ଭଦ୍ର ବ୍ୟକ୍ତିର ପ୍ରବେଶ )

ଭଦ୍ର— କହ କି ବାରତା ?
ଆତ୍ମରକ୍ଷା କରନ୍ତୁ ନୃମଣି; କରେ ଯେବେ
ସିନ୍ଧୁ ତାର ବେଳା ଅତିକ୍ରମ, ମାତ୍ର ଅସି
ଉଚ୍ଛଳ ତରଙ୍ଗମାଳା ଦଅଇ ଭସାଇ
ଯେତେକ ସମତଳ ଦେଶ, ପ୍ରବଳ ପ୍ଲାବନେ,
ରାଜଦ୍ରୋହୀ ନାଗରିକ ସୈନ୍ୟ ବୃନ୍ଦ ଘେନି
ତେସନ ଲର୍ଟିସ ତବ କର୍ମଚାରିଦଳେ
କରନ୍ତି ବିଧ୍ୱସ୍ତ । ଅସଇ ସେ ଝଡ଼ାକାରେ,
ତୃଣଦଳ ସମ କ୍ଷୁଦ୍ର ପୁର-ବାସି-ବର୍ଗ,
ନତଶିରେ କରୁଛନ୍ତି ବଶ୍ୟତା ସ୍ୱୀକାର,

ସୃଷ୍ଟିର ପ୍ରାରମ୍ଭ ହବା ହେଲା ଭୁଲ ମନେ
ଭୁଲି ଚିରନ୍ତନ ନୀତି, ଦେଶର ଆଚାର,
ଚିତ୍କରନ୍ତି ସମସ୍ୱରେ ମଣି ଆପଣାକୁ
ହର୍ତ୍ତା କର୍ତ୍ତା ଏ ରାଜ୍ୟର, "ଜନଙ୍କ ମନୋନୀତ,
ହୋଇବ ଲାଏର୍ଟିସ ରାଜା ଏହି ଭୂଖଣ୍ଡର;"
ଫିଙ୍ଗିଦେଇ ଊର୍ଦ୍ଧ୍ୱେ ଟୋପି, ମାରି କରତାଳି
କରୁଛନ୍ତି ସମର୍ଥନ କମ୍ପାଇ ଗଗନ
ତାର ସ୍ୱରେ ସିଦ୍ଧାନ୍ତ ତାଙ୍କର, "ଏ ଦେଶର
ଲାଏର୍ଟିସ ହୋଇବ ରାଜା, ଲାଏର୍ଟିସ ଭୂପତି !"
ରାଣୀ—ଅରେ ରେ ଘୃଣିତ ଶ୍ୱାନ ଦନାମାର-ବାସି,
ହୃଡ ମର୍ଗ ବୃଥା କର୍ପା କରୁଛ ଚିତ୍କାର,
ଯାଉଛି ଶିକାର-ଗନ୍ଧ ବିପରୀତ ମାର୍ଗେ ।
ରାଜା—ହେଲା ଦ୍ୱାର ଭଗ୍ନ । ( ଅନ୍ତରାଳରେ କୋଳାହଳ ଧ୍ୱନି )
( ସଶସ୍ତ୍ର ଲାଏର୍ଟିସର ପ୍ରବେଶ, ପଶ୍ଚାତ୍ ଦନାମାରମାନଙ୍କ ଆଗମନ )
ଲାଏର୍ଟିସ୍— କାହିଁ ସେହି ରାଜା ? କର
ମହାଶୟଗଣ, ଅପେକ୍ଷା ବାହାରେ ।
ଦନାମାରଗଣ— ନାହିଁ,
ଦିଅ ଆମ୍ଭ ଭିତରୁଁ ପ୍ରବେଶ ।
ଲାଏର୍ଟିସ୍— ରହ ତୁମ୍ଭେ
ବହିର୍ଦ୍ଦେଶେ, ଘେନ ମୋ ମିନତି ।
ଦନାମାରଗଣ— ହେଉ ତାହା ।
( ଦ୍ୱାରର ବହିର୍ଦ୍ଦେଶକୁ ଗମନ )

ଲର୍ଟିସ୍—ଧନ୍ୟବାଦ; କର ଦ୍ୱାର ରକ୍ଷା ଭଲେ ।
ଅରେ ପାପିଷ୍ଠ ନୃପତି, କାହିଁ ପିତା ମୋର ?
ଦେରେ ଫେରାଇ ତାହାଙ୍କୁ ।

ରାଣୀ— ଶାନ୍ତ ହୁଅ, ଲର୍ଟିସ ।

ଲର୍ଟିସ୍—କଣିକାଏ ରକ୍ତ ଯେବେ ଶରୀରେ ମୋହର
ରହେ ଶାନ୍ତ, ଜାରଜ ମୁଁ ଜାଣ ହେ ନିଶ୍ଚୟ ।

ରାଜା—କହେହୁ ଲର୍ଟିସ କହ ତୁମୁଳ ବିପ୍ଳବ
ଘଟାଇଛ ରାଜ୍ୟେ ମୋର ? ଶୁଣ ଜାର୍ଟ୍ରୁଡ,
କରିବା ନିରସ୍ତ ତାକୁ ନୁହେଁ ପ୍ରୟୋଜନ,
ବୃଥା କିପାଁ ଚିନ୍ତାନ୍ୱିତା ହେଉଛ ମୋ ପାଇଁ;
ଐଶୀ ଶକ୍ତି ବୃତି ସମ ନୃପତି ଶରୀରେ (୧)
ବେଢିଥାଏ, ରାଜଦ୍ରୋହ ନ ପାରେ ପରଶି
ତାଙ୍କ ଅଙ୍ଗ ତେଣୁ,ରହି ଦୂରେ କରେ ମାତ୍ର
କୁଦୃଷ୍ଟି ନିକ୍ଷେପ । କହ ହେ ଲର୍ଟିସ କିପାଁ
ରୁଷ୍ଟ ହୋଇଛ ଏମନ ? ନ କର ନିରସ୍ତ
ତାକୁ, ଜାର୍ଟ୍ରୁଡ । କହ ବକ୍ତବ୍ୟ ତୁମ୍ଭର ।

ଲର୍ଟିସ୍— କାହିଁ ପିତା ମୋର ?

ରାଜା— ମୃତ ।

ରାଣୀ— କିନ୍ତୁ ନୁହେଁ ହତ
ତାହାଙ୍କ କରିବ ।

ରାଜା— କହୁ ସେ ବକ୍ତବ୍ୟ ତାର ।

(୧) ବୃତି—ବାଡ଼ ।

ଲାର୍ଟିସ୍—କହ କେମନ୍ତେ ହୋଇଲେ ସେ ମୃତ ? ସ୍ତୋକ ବାକ୍ୟେ
ନ ଭୁଲିବ ମୁହିଁ ; ରାଜଭକ୍ତି ହେଉ ମୋର
ରୌରବଗାମିନୀ, ପ୍ରତିଶ୍ରୁତି କରୁ ବାସ
ପ୍ରେତପତି ସହ, ଧର୍ମ, କର୍ମ, ଜାତି, ଜ୍ଞାନ
ପଶୁ ଅତଳ ଗହ୍ୱରେ ! ଅନନ୍ତ-ନରକ—
ଭୋଗ ହେଉ ପଛେ ମୋର, ତିଳାର୍ଦ୍ଧ ଶୋଚନା
ନାହିଁ ତହିଁ ପ୍ରତି ; ଇହ ପର ବେନି କାଳ
ଯାଉ ପଛେ ପୋଡ଼ି, ଅଟଳ ପ୍ରତିଜ୍ଞା ମୋର
କରିବ ପାଳନ, ରିପୁଲୋହେ କରିବ ମୁଁ
ଧୌତ ପିତୃଶୋକ, ଦୃଢ଼ ପ୍ରତିଜ୍ଞା ମୋହର !

ରାଜା—ତହିଁରୁ ନିବୃତ୍ତ କିଏ କରିବ ତୁମ୍ଭଙ୍କୁ ?

ଲାର୍ଟିସ୍—ସ୍ୱଇଚ୍ଛା ବ୍ୟତୀତ ନାହିଁ ଶକତି କାହାର
କରିବ ନିବୃତ୍ତ ମୋତେ ; ହେଲେହେଁ ସମ୍ବଳ-
ହୀନ, ଉପାୟ ବିଧାନେ, ବୁଦ୍ଧି ବୃତ୍ତି ଯଥା-
ଶକ୍ତି କରିବ ପ୍ରୟୋଗ !

ରାଜା— ହେ ପ୍ରିୟ ଲାର୍ଟିସ,
ଜାଣିବାକୁ ସତ୍ୟେ ଯଦି ଥାଏ ଏ ବାସନା,
କେମନ୍ତେ ଜନକ ତବ ହୋଇଛନ୍ତି ମୃତ,
ପ୍ରତିହିଂସା ଗ୍ରନ୍ଥେ ତବ ରଖିଛ କି ଲେଖି,
ସମଭାବେ କୋପାନଳ କରିବ ବର୍ଷଣ
ସର୍ବଜନ ଶିରେ, ଅରି ମିତ୍ର ମଧ୍ୟେ ଭେଦ
ନ କରି ବିଚାର ?

ଲର୍ଟିସ୍— ପିତୃ ବୈଶ୍ୱ ଶନା ମୋର
ନାହିଁ ଲେଡ଼ା ଅନ୍ୟଙ୍କଠନେ ।
ରଜା— ତେବେ କ ତାହାଙ୍କ
ତୁମ୍ଭେ ଗୃହି ଜାଣିବାକୁ ?
ଲର୍ଟିସ୍— ପିତୃବନ୍ଧୁଗଣେ
କରିବି ମୁଁ ଆଲିଙ୍ଗନ, ଏହି ଭାବେ କରି
ବାହୁ ପ୍ରସାରିତ, ନିଜ ରକ୍ତ ଦେଇ ପୁଷ୍ଟ
କରିବି ମୁଁ ଶରୀର ତାଙ୍କର ।
ରଜା— ଏବେ ତୁମ୍ଭେ
ସୁବୋଧ ବାଳକ୍ଷୁ ସମ ଭଦ୍ର ବ୍ୟକ୍ତି ପରି
କହିଲ ବଚନ । ଦିବାଲୋକ କରେ ଯଥା
ନୟନେ ପ୍ରବେଶ, ତାଦୃଶ ଏ ସତ୍ୟ ତବ
ମନୋମଧ୍ୟେ ଲଭିବ ଆଶ୍ରୟ, ପିତୃରକ୍ତେ
ଲିପ୍ତ ତବ ନୁହିଁଇ ଏ କର, ତାଙ୍କ ପାଇଁ
କରୁଛି ଏ ପ୍ରାଣ ମୋର ସତତ କ୍ରନ୍ଦନ ।
ଦନାମାରଗଣ—ଛାଡ଼ିଦିଅ ପଥ ତାକୁ ଯାଉ ଗୃହ ମଧ୍ୟେ (ଅନ୍ତରାଳରୁ)
ଲର୍ଟିସ୍—କ ହେଲୁ ଏ କୋଳାହଳ ? କାହାର ଏ ସ୍ୱର ?
( ଓଫିଲିଆର ପୁନଃ ପ୍ରବେଶ )
କରଦେ ଜଗ୍ଧପ ଶୁଷ୍କ ମସ୍ତିଷ୍କ ମୋହର,
ଲବଣାକ୍ତ ଅଶ୍ରୁ ଧାର, ଦେରେ ଅନ୍ଧୀଭୂତ
କର ଦୃଷ୍ଟିଶକ୍ତି ମୋର; ଯେଉଁ ଅପକର୍ଷ
ଫଳେ ଲଭିଛୁ ଟେ ଭୂହ ଦୁର୍ଗନ୍ଧ ଏସନ,

ତୁଳାଦଣ୍ଡେ ତୁଳ ତାର ନେବ ପ୍ରତିଶୋଧ,
ହେବ ଯେସନ୍ତେ ଅବନତ ପ୍ରତିହିଂସା-ଭରେ :
ଦଣ୍ଡ ତସ୍କରୁର ! ପ୍ରଫୁଲ୍ଲ ନଳିନ ଅରେ
ଭଗ୍ନି ସ୍ନେହମୟି, କୁମାରୀ-କୁଳ-ମଣ୍ଡନା
ସ୍ୱଚ୍ଛ ଓଫିଲିଅ ! ଦେଖି ତୋ ଦୁର୍ଦ୍ଦଶା ଅହା
ଫାଟିଯାଏ ହୃଦ ! ସମ୍ଭବ କି କେବେ, ଅହେ
ଦେବବୃନ୍ଦ, ଯୁବତୀର କ୍ଷୀଣ ପ୍ରାଣସମ,
କୁମାରୀ-ସୁବର୍ଣ୍ଣ-ମତି ହେବା କ୍ଷୟଶୀଳ ?
ପ୍ରୀତିର ଅବେଶେ ହୁଏ ସରସ ପ୍ରକୃତି,
କୋମଳତା ବଶେ ତେଣୁ କରଇ ଅର୍ପଣ
ଶ୍ରେଷ୍ଠ ଉପହାର ତାର ପ୍ରୀତି-ପାତ୍ର ପଦେ,
ଚେଳକ ମର୍ତ୍ତ୍ୟଧାମ ଯେବେ ଯାଏ ସେହୁ ସ୍ଥଳ ।
ଓଫି —(ଗାନ) ଶବଯାନେ ଯେବେ କଲେ ବହନ,
ଅନାବୃତ ଥିଲା ତାର ବଦନ;
ଅଶ୍ରୁଧାର କେତେ କବରେ ତାର,
ବରଷିଲେ ହୋଇ ଶୋକେ ଅତୁର
ମଧୁର ସ୍ୱପ୍ନେ ବାଜେ ମୁରଲୀ,
ଦେଉଛୁ ମେଲଣି ପ୍ରାଣ ସଖାଳି । (୧)
ଲାଏର୍ଟିସ୍—ବୁଦ୍ଧି ତୋର ଅବିକୃତ ଥିଲେ ଲୋ ଭଗିନ,
ନ ପାରନ୍ତୁ ଜାଳି ଚିତ୍ତେ ଏ ଭଳି ପ୍ରଖର
ପ୍ରତିହିଂସାନଳ ।

---

(୧)—ଓଫିଲିଅ ବାତୁଳତା ବଶତଃ ତାର ଭାଇକୁ ତାର ପ୍ରେମିକ ରୂପେ ସଂବୋଧନ କରୁଥିଲା ।

ଓଫି—(ଗାନ) ଗାଅ ରେ ସଙ୍ଗୀତ ଲଳିତ ସ୍ୱରେ
ବାଜୁ ତାର ନାମ ପ୍ରତି ଝଙ୍କାରେ ।
ଅହା, କି ସୁଲଳିତ ତାନ, କି ମଧୁର ଝଙ୍କାର !

ଲାଏର୍ଟିସ୍—ତାର ଏହି ଅସଂଲଗ୍ନ କଥା ଗୁଡ଼ିକ ମୋର ହୃଦୟକୁ ଅତ୍ୟନ୍ତ ବିଚଳିତ କରି ଦେଉଛି ।

ଓଫି—ସ୍ମୃତିଚିହ୍ନ ସ୍ୱରୂପ ଏହି ମାଧବୀ ଲତାଟିକୁ ଗ୍ରହଣ କର; ହେ ପ୍ରିୟତମ ମନେ ପକାଉଥିବ; ଏହି କୁରୁବକଟି ତାର ସହିତସ୍ତି, ସ୍ମୃତିର ସହାୟତା କରିବ ।

ଲାଏର୍ଟିସ୍—ବାତୁଳତା ସମ୍ବନ୍ଧରେ ଏହା ଗୋଟିଏ ସୁନ୍ଦର ଶିକ୍ଷା—ସ୍ମୃତିର ସହିତ ତାର ନିଦର୍ଶନର କି ଚମତ୍କାର ସଂଯୋଗ !

ଓଫି—(ରାଜାଙ୍କ ପ୍ରତି) ତୁମ୍ଭପାଇଁ କେତେଗୁଡ଼ିଏ କନିଅର ଓ ପଳାଶ ଫୁଲ ଅଣିଛି; (ରାଣୀଙ୍କ ପ୍ରତି) ତୁମ୍ଭପାଇଁ କେତେକ କରବୀର ଅଣିଛି ଏବଂ ମୋପାଇଁ ମଧ୍ୟ କିଛି ରଖିଛି । ଗୋଟିଏ ସୂର୍ଯ୍ୟମୁଖୀ ଫୁଲ ମଧ୍ୟ ଅଛି; ତୁମ୍ଭଙ୍କୁ କେତେ ଗୁଡ଼ିଏ ପାଟଳୀ ଫୁଲ ଦେଇଥାନ୍ତି, କିନ୍ତୁ ମୋର ପିତାଙ୍କର ମୃତ୍ୟୁ ସଙ୍ଗେ ସଙ୍ଗେ ସେ ସବୁ ମଉଳିଗଲା । ଲୋକେ କହୁଛନ୍ତି ଯେ ସେ ମୃତ୍ୟୁ ସମୟରେ ଈଶ୍ୱରଙ୍କର ନାମ ଉଚ୍ଚାରଣ କରୁ କରୁ ଶାନ୍ତିର ସହିତ ପ୍ରାଣ ତ୍ୟାଗ କରିଥିଲେ—
(ଗାନ) ତୋ କାକଳୀ ତାନେ ରେ ପିକବର,
ଥିଲା ଶତ-କୁଞ୍ଜ ନିତ୍ୟ ମୁଖର ।

ଲର୍ଟିସ୍‌— ଶବ୍ଦ-ତାପ-ଜ୍ୱାଳା ତାର ଭେଦ ମର୍ମସ୍ଥଳ,
ମନୋହର ଛନ୍ଦାକରେ ହେଉଛି ନିଃସୃତ ।
ଓଫି—(ଗାନ) ସତେ କି ରେ ଧନ, ଫେରିବୁ ନାହିଁ ?
ଆଜ କି ମୁଁ ତୋତେ ଦେଖିବି ନାହିଁ ?
ଅଶ୍ରୁ-ସ୍ରୋତେ ଭସି ଅପାର କାଳ,
ଡାକିଲେ କି ଆଜ ଶୁଣିବ କାଳ ।
ଶ୍ମଶ୍ରୁ ତୋର ଶୁଭ୍ର ଯେସନେ ତୁଷାର,
ଶଣ-ସ୍ତୂପ ସମ ଶୁଭ୍ର ତୋ ଶିର;
ଅମର ଧାମେ ତୁ ଯାଇଛୁ ଚଳି
ଗତ କଥା ଆଜ କି ହେବ ଭୁଲି ।
ହତ୍ଭ ପଦେ ଏହି ଜଣାଣ ମୋ'ର,
ଲଭୁ ଚିର ଶାନ୍ତି ଆତ୍ମା ତୋହର ।
ପ୍ରଭୁ, ତୁମ୍ଭର ଚିର ଆଶ୍ରିତ ଭକ୍ତ ମାନଙ୍କରଆତ୍ମା ସଦା ଶାନ୍ତି ସୁଖ ଲାଭ କରୁ ଏହାହିଁ ମୋର ପ୍ରାର୍ଥନା । ଭଗବାନ ତୁମ୍ଭମାନଙ୍କର ମଙ୍ଗଳ କରନ୍ତୁ । (ପ୍ରସ୍ଥାନ)
ଲର୍ଟିସ୍‌—ଦେଖୁଛ କି ବିଧେ, ଏହି ନିଦାରୁଣ ଦୃଶ୍ୟ ?
ରାଜା—ଦୁଅ ବନ୍ଧୋ କରିବାକୁ ଚିନ୍ତ ବିନମସ୍ତ
ଏହି ଅସମୟେ ତବ, ନ କର ବାରଣ,
କହ ମନୋଜ୍ଞାତ ଫେଡ଼ି ହୃଦୟ ତୁମ୍ଭର ।
ଯାଅ ଏହିସ୍ଥଳୁ, ବାଛି ବନ୍ଧୁଗଣେ ତବ
ଆଣ କରି ଅନ୍ୱେଷଣ, ତାଙ୍କର ସମକ୍ଷେ,
ସମସ୍ତ ବୃତ୍ତାନ୍ତ ମୁହିଁ କହିବି ବିସ୍ତାରି,

ରହ ତହିଁ ତୁମ୍ଭେ ମଧ୍ୟ ଶୁଣିବ ସମସ୍ତ,
ହେବ ଯେବେ ପ୍ରମାଣିତ ଅପରାଧ ମୋର,
ସର୍ବେ ମିଳି ଦୋଷୀ ମୋତେ କରିବେ ସିଦ୍ଧାନ୍ତ,
ଥିବ ଏ ବ୍ୟାପାରେ ଯେବେ ଲବ ମାତ୍ର ମୋର
ସମ୍ପର୍କ, ପରୋକ୍ଷ ଅବା ଅପରୋକ୍ଷ ଭାବେ,
କରିବି ପ୍ରଦାନ କ୍ଷତି, ଦେଇ ତୁମ୍ଭ କରେ
ସମଗ୍ର ସାମ୍ରାଜ୍ୟ ପୁଣି ସ୍ୱବଂଶ ମୁକୁଟ,
ପ୍ରାଣ ସହ ସର୍ବସ୍ୱ ମୋହର; କିନ୍ତୁ ଯେବେ
ହୋଇବ ଅନ୍ୟଥା, ଧୀର ଭାବେ ବାକ୍ୟ ମୋର
କରିବ ଶ୍ରବଣ, ପ୍ରତିକାର କଲେ ମୁହିଁ,
ତେବେ ପ୍ରାଣ ସମସ୍ତନେ କରିଣ ଗ୍ରଥିତ,
ହେବ କାର୍ଯ୍ୟେ ଅଗ୍ରସର, ଲଭିବ ଯେସନ
ଶାନ୍ତି ତବ ସନ୍ତପ୍ତ ପରାଣ ।

ଲାଏର୍ଟିସ୍—
ହେବ ତାହା;
କେମନ୍ତେ ହେଲେ ସେ ମୃତ, କି ହେତୁ ତାଙ୍କର
ପ୍ରେତ-କ୍ରିୟା ଗୋପନେ ହେଲା ସମାହିତ,
ନାହିଁ କିପାଁ ସ୍ମୃତି ଚିହ୍ନ କବରେ ତାଙ୍କର,
କି କାରଣେ ଶବପାଶେ ହୋଇଲା ସମ୍ପନ୍ନ,
ବିନା ସମାରୋହ, ଅନ୍ତ୍ୟେଷ୍ଟି ସମୟେ କିପାଁ,
ନ ହେଲା ପାଳିତ କୌଳିକ ଆଚାର, ଏହି
ପ୍ରଶ୍ନପୁଞ୍ଜ ଦଜ୍ରନିର୍ଘୋଷେ ଡାକୁଛି ମୋ କର୍ଣ୍ଣେ,
ଭେଦି ଅନନ୍ତର ଦେଶ ଅବନୀ ମଣ୍ଡଳ,
ଲଭିବାକୁ ତୁହେଁ ତାର ଯଥାର୍ଥ ଉତ୍ତର ।

ରାଜା—ଲଭିବ ଉତ୍ତର ତାର, ନ କର ସଂଶୟ,
ପଡ଼ିବ କୁଠାର ଶିରେ ଦୋଷୀର ନିଶ୍ଚୟ ।
ଗୃହ, ବନ୍ଧୋ, ଯିବ ମୋ ସହିତ ।
(ସମସ୍ତଙ୍କର ପ୍ରସ୍ଥାନ)



## ଷଷ୍ଠ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ଅନ୍ୟ ଏକ ପ୍ରକୋଷ୍ଠ ]

( ହୋରେସିଓ ଓ ଜନୈକ ଭୃତ୍ୟର ପ୍ରବେଶ )

ହୋରେ—କିଏ ମୋର ସହିତ ସାକ୍ଷାତ କରିବାକୁ ଚାହୁଁ ଅଛି ?

ଭୃତ୍ୟ—କେତେ ଗୁଡ଼ିଏ ନାବିକ, ମହାଶୟ; ସେମାନେ କେଉଁଠୁ ଆପଣଙ୍କ ନିକଟକୁ ପତ୍ର ଆଣିଛନ୍ତି ବୋଲି କହୁଅଛନ୍ତି ।

ହୋରେ—ସେମାନଙ୍କୁ ଡାକି ଅଣ । (ଭୃତ୍ୟର ପ୍ରସ୍ଥାନ)
ଜାଣେ ନା ମୁଁ ଅଛି କିଏ ହ୍ୟାମ୍‌ଲେଟ୍‌ ବ୍ୟତୀତ,
ଅଛି ଏ ଜଗତେ ମୋତେ କରିବ ସ୍ମରଣ ।

( ନାବିକମାନଙ୍କର ପ୍ରବେଶ )

ପ୍ରଥମ ନାବିକ—ଭଗବାନ୍‌ ଆପଣଙ୍କର ମଙ୍ଗଳ କରନ୍ତୁ, ମହାଶୟ ।

ହୋରେ—ସେ ତୁମ୍ଭର ମଧ୍ୟ ମଙ୍ଗଳ କରନ୍ତୁ

ପ୍ର: ନା:—ତାଙ୍କର ଦୟା ହେଲେ ସେ ନିଶ୍ଚୟ କରିବେ । ଆପଣଙ୍କ ପାଇଁ ଖଣ୍ଡିଏ ପତ୍ର ଅଣିଛୁ, ମହାଶୟ; ଯେଉଁ ରାଜଦୂତ ବିଲାତ

ଯାହା କରୁଥିଲେ ସେ ଏହି ପତ୍ର ଖଣ୍ଡିକ ଦେଇଅଛନ୍ତି; ଆପଣଙ୍କର ନାମ ଯଦି ହୋରସିଓ ହୋଇଥାଏ, ଆପଣ ଏହାକୁ ଗ୍ରହଣ କରନ୍ତୁ ।

ହୋର—(ପଠନ) ହୋରସିଓ, ତୁମ୍ଭେ ଏହି ପତ୍ର ପାଠ କରିସାରି, ଏହି ଲୋକମାନେ ଯେପରି ରାଜାଙ୍କ ସହିତ ସାକ୍ଷାତ୍ କରି ପାରିବେ ତାର ବନ୍ଦୋବସ୍ତ କରିବ; ସେମାନଙ୍କ ହସ୍ତରେ ମୁଁ ରାଜାଙ୍କ ନିକଟକୁ ପତ୍ର ଦେଇଅଛି । ଆମ୍ଭମାନଙ୍କର ଜଳଯାତ୍ରା ଦୁଇଦିନ ପୂର୍ଣ୍ଣ ନ ହେଉଣୁ, ଦଳେ ସଶସ୍ତ୍ର ଜଳଦସ୍ୟୁ ଆମ୍ଭମାନଙ୍କର ଅନୁସରଣ କଲେ । ଆମ୍ଭମାନଙ୍କର ଜାହାଜ ତେତେ ଦ୍ରୁତଗାମୀ ନ ଥିବାରୁ, ସେମାନେ ଅଳ୍ପ ସମୟ ମଧ୍ୟରେ ଆମ୍ଭମାନଙ୍କର ନିକଟବର୍ତ୍ତୀ ହେଲେ; ଉପାୟାନ୍ତର ନ ଦେଖି ବାଧ୍ୟ ହୋଇ ଆମ୍ଭମାନଙ୍କୁ ସାହସର ଆବରଣ ଧାରଣ କରିବାକୁ ହେଲା । ଲୌହ-ଆକର୍ଷଣୀ ଦ୍ୱାରା ସେମାନଙ୍କ ଜାହାଜକୁ ଟାଣି ଧରି, ତହିଁରେ ମୁଁ ଲମ୍ଫ ପ୍ରଦାନ କଲି; ସେମାନେ ମଧ୍ୟ ଠିକ୍ ସେହି ସମୟରେ ଆମ୍ଭର ଜାହାଜରୁ ଚାଲି ଆସିଲେ—ଅତଏବ ମୁଁ ଏକାକୀ ସେମାନଙ୍କ ହସ୍ତରେ ବନ୍ଦୀ ହେଲି । ସେମାନେ ମୋ ପ୍ରତି ସଦୟ ବ୍ୟବହାର କରି ଅଛନ୍ତି, ସେମାନଙ୍କର ଅଭିସନ୍ଧି ସିଦ୍ଧ କରିବା ପାଇଁ—ମୋର ସାହାଯ୍ୟରେ ସେମାନେ ରାଜାଙ୍କର ଅନୁଗ୍ରହ ଲାଭ କରିବାକୁ ଇଚ୍ଛା କରନ୍ତି । ମୋର ପତ୍ର ରାଜାଙ୍କର ହସ୍ତଗତ ହେବାପରେ, ତୁମ୍ଭେ କାଳବିଳମ୍ବ ନ କରି ମୋର ସହିତ ସାକ୍ଷାତ୍ କରିବ—ମୃତ୍ୟୁମୁଖରୁ ଲୋକେ ଯେପରି ସ୍ୱବେଗେ ପଳାଇ ଯାଆନ୍ତି, ତଦ୍ରୂପ ଗତିରେ ତୁମ୍ଭେ ମୋ

ନିକଟକୁ ଆସିବ । ମୁଁ ତୁମ୍ଭକୁ ଏପରି କଥା କହିବ, ଯାହା ଶୁଣିଲେ ତୁମ୍ଭେ ଅବାକ୍ ହୋଇଯିବ—ବସ୍ତୁତଃ ତାହା ଅବର୍ଣ୍ଣନୀୟ । ଏହି ଲୋକ ଗୁଡ଼ିକ ତୁମ୍ଭକୁ ମୋ ନିକଟକୁ ନେଇ ଆସିବେ । ରୋଜେନ୍‌କ୍ରାନ୍ସ୍ ଓ ଗିଲ୍‌ଡେନ୍‌ଷ୍ଟାର୍ଣ୍ଣ୍ ଇଂଲଣ୍ଡ ଅଭିମୁଖରେ ଯାତ୍ରା କରୁ ଅଛନ୍ତି—ସେମାନଙ୍କ ସମ୍ବନ୍ଧରେ ତୁମ୍ଭକୁ ମୋର ଅନେକ କଥା କହିବାର ଅଛି । ବିଦାୟ କମିଛି ।

ତୁମ୍ଭର ଅନ୍ତରଙ୍ଗ ବନ୍ଧୁ

ହ୍ୟାମ୍‌ଲେଟ୍ ।

ଆସ ସେନା ପଥ ତୁମ୍ଭେ ରାଜାଙ୍କ ସମୀପେ,
ସାକ୍ଷାତର ସୁବ୍ୟବସ୍ଥା କରିବ ବହନ,
ଉଦ୍‌ବଗ୍ନ ଅଟେ ମୁଁ ଯେଣୁ ଭେଟିବାକୁ ତାଙ୍କୁ,
ଆଣିଛ ଏ ପତ୍ର ତୁମ୍ଭେ ନିକଟୁଁ ଯାଙ୍କର ।

( ସମସ୍ତଙ୍କର ପ୍ରସ୍ଥାନ )



## ସପ୍ତମ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ଅପର ଏକ ପ୍ରକୋଷ୍ଠ ]

( ରାଜା ଓ ଲର୍ଟିସ୍‌ର ପ୍ରବେଶ )

ରାଜା—କର ଏବେ ମୁକ୍ତକଣ୍ଠେ ଦୋଷମୁକ୍ତ ମୋତେ,
ବନ୍ଧୁରୂପେ ଦିଅ ସ୍ଥାନ ହୃଦୟ-ଆସନେ,
ଶୁଣିଲ ତ ଧୀର ଶବ୍ଦେ ସମସ୍ତ ବୃତ୍ତାନ୍ତ;

କରଛନ୍ତି ନିହତ ଯେହ୍ନେ ଜନକଙ୍କୁ ତା',
ଥିଲା ତାର ଲକ୍ଷ୍ୟସ୍ଥଳ ଏ ପ୍ରାଣ ମୋହର ।

ଲିଏର୍ଟିସ୍—ବୁଝିଲି ସମସ୍ତ; କିନ୍ତୁ କି କାରଣେ କହ,
ଦେଖି ତାର କାର୍ଯ୍ୟାବଳୀ କର୍‌ସ ଦୋଷାବହ,
ନ ହେଲ ତତ୍ପର ତୁମ୍ଭେ ଅପ୍ରତିକ୍ଷା କଲେ,
ଦେବାକୁ ଉଚିତ ଦଣ୍ଡ ଜଜନ୍ଧିମତେ ?

ରାଜା—ଅଛି ତାର, ବତ୍ସେ, ବେନି ବିଶିଷ୍ଟ କାରଣ;
ହୋଇପାରେ ଅତି ତୁଚ୍ଛ ତୁମ୍ଭ ପକ୍ଷେ ତାହା,
ମାତ୍ର ମୋ ପକ୍ଷେ ପ୍ରବଳ । ଜନନୀ ତାହାର,
ନ ଦେଖିଲେ ଦଣ୍ଡେ ତାକୁ ମଣେ ଶତଯୁଗ,
ତାର ନୟନ-ପୁତ୍ତଳୀ ସେହ୍ନେ, ମୋର ପୁଣି,
ଜୀବନ-ସର୍ବସ୍ୱ ରାଣୀ, ଅଚ୍ଛେଦ୍ୟ-ବନ୍ଧନେ
ବନ୍ଧା ବେନି ପ୍ରାଣ, ତାରକା ଯେସନ ନଭେ
ତେଜି କକ୍ଷ ଅନ୍ୟମାର୍ଗେ ନ କରେ ଭ୍ରମଣ,
ତେସନ ସେ ଗତି ମୋର କରେ ନିୟନ୍ତ୍ରିତ ।
କହୁଛି ତୁମ୍ଭଙ୍କୁ ଏବେ ଦ୍ୱିତୀୟ କାରଣ,
କି ହେତୁ ମୁଁ କରିନାହିଁ ଅଗତ ତାହାର
ଅପରାଧ ରାଜଦରବାରେ; ପ୍ରଜାବୃନ୍ଦ
ତାହାପ୍ରତି ଏତେ ଅନୁରକ୍ତ, କଲେ ତାର
ଶାସ୍ତିର ବିଧାନ, ସ୍ନେହ-ସରେ ଦୋଷାବଳୀ
କରି ନିମଜ୍ଜିତ, କରିବେ ଗୌରବ ତାର
ଗୁଣ ମୁକ୍ତକଣ୍ଠେ, ହେବ ନିଗଡ଼ ଭୂଷଣ,

ଲଭେ ଲୌହ ସ୍ପର୍ଶକାନ୍ତ ମଣି ସ୍ପର୍ଶେ ଯଥା, (୧)
ସ୍ୱଳ୍ପସ୍ଥଳେ ବଦ୍ଧ ବାୟୁ ବିପରୀତ ମୁଖେ,
ଫେରିବ ସ୍ଖଳିତ ଲଘୁ ଶରପୁଞ୍ଜ ମୋର,
ହୋଇ ନିରୁପାୟ ତାହା ଲଭିବ ଆଶ୍ରୟ
ପୁଣି ତୂଣୀରେ ମୋହର, ନ ଭେଦି ଶରବ୍ୟ ।

ଲିଅର୍ଟିସ୍—ଫଳେ ତାର, ଜନକଙ୍କୁ ହରାଇଲି ମୁହିଁ,
ହେଲେ ଭଗ୍ନୀ ପିତୃଶୋକେ ବାତୁଳୀ ମୋହର;
ହାୟ ରେ ତା ଗୁଣରାଶି ଅତୁଳ ଭୁବନେ
କରିଥିଲା ମ୍ଳାନ ଧନେ ରମଣୀ-ସମାଜ ।
ନେବି ତାର ପ୍ରତିଶୋଧ କହୁଛି ନିଶ୍ଚୟ ।

ରାଜା—ନ କର ଭାବନା ବତ୍ସ, ଭଞ୍ଜ ନିଦ୍ରା ଭଲେ;
ମଣ ନାହିଁ ମୋତେ ତୁମ୍ଭେ ଏଡ଼େ ଅପଦାର୍ଥ,
ଉପାଡ଼ିବ ବଳେ ଯେ ବା ଶ୍ମଶ୍ରୁ ଧରି ମୋର
କରିବ ମାର୍ଜନା ତାକୁ; ଲଭିବ ଅଚିରେ
ସେହୁ ପ୍ରତିଫଳ ତାର; ପ୍ରିୟ ମୋର ଥିଲେ
ତବ ପିତା, ପୁଣି ପ୍ରାଣ ଅତି ପ୍ରିୟ ମୋର,
ବୁଝିବ ତହିଁରୁ ଭଲେ ବିଶ୍ୱାସ ମୋହର—

(ଦୂତର ପ୍ରବେଶ)

କି ସମ୍ବାଦ ଦୂତ ?

---

(୧) ମଣି—ସ୍ପର୍ଶମଣି ।

ଦୂତ—                    ଆସିଛି ଏ ପତ୍ରଦ୍ୱୟ
ହ୍ୟାମ୍‌ଲେଟ୍‌ ସମୀପୁଁ—ନରନାଥଙ୍କର ଏହା,
ଏହା ରାଣୀଙ୍କର ।

ରାଜା—                    ହ୍ୟାମ୍‌ଲେଟ୍‌ ସମୀପୁଁ !
କିଏ ପତ୍ର-ବାହ ?

ଦୂତ—                    ଶୁଣିଲି ନାବିକବୃନ୍ଦ,
ଦେଖିନାହିଁ ତାଙ୍କୁ; ପତ୍ରବାହ ହସ୍ତୁ ଆଣି
ଦେଇଛି କ୍ଲଡ଼ିଓ ଏହି ଲେଖିଦ୍ୱୟ ମୋତେ ।

ରାଜା—ଲେର୍ଟିସ୍‌, ଶୁଣିବ ଏ ପତ୍ର ତୁମ୍ଭେ । ଯାଅ ଦୂତ ।

(ଦୂତର ପ୍ରସ୍ଥାନ)

(ପଠନ) ପ୍ରବଳ ପ୍ରତାପଶାଳୀ, ମହାମହିମାନ୍ୱିତ ଦନାମାର ଅଧୀଶ୍ୱର, ଏ ପତ୍ରଦ୍ୱାରା ଆପଣଙ୍କୁ ଜଣାଉଅଛି ଯେ ମୁଁ ନଗ୍ନ ଅବସ୍ଥାରେ ଆପଣଙ୍କର ରାଜ୍ୟମଧ୍ୟରେ ଆସି ପଡ଼ିତ ହୋଇଅଛି । କାଲି ଶ୍ରୀଛାମୁଙ୍କ ସହିତ ସାକ୍ଷାତ୍‌ କରିବି ଏବଂ ଶ୍ରୀଛାମୁଙ୍କର କୃପା ଭିକ୍ଷା କରି ମୋର ଏହି ଅକସ୍ମାତ୍‌ ଓ ବିସ୍ମୟକର ପ୍ରତ୍ୟାବର୍ତ୍ତନର କାରଣ ଶ୍ରୀଚରଣରେ ନିବେଦନ କରିବି ।

(ହ୍ୟାମ୍‌ଲେଟ୍‌) ।

କି ମର୍ମ ଏହାର ? ଆସିଲେ କି ସର୍ବେ ଫେରି ? କି
ଅବା ମାତ୍ର ପ୍ରବଞ୍ଚନା ଏହା ?

ଲେର୍ଟିସ୍— ତାହାର ଏ
ହସ୍ତଲିପି ପାରୁଛ କି ଚିହ୍ନି ?

ରାଜା— ହ୍ୟାମ୍‌ଲେଟ୍‌ର
ହସ୍ତଲିପି । ଲେଖିଛି ସେ 'ନଗ୍ନ', ଶେଷେ ପୁଣି
ଲେଖିଛି 'ଏକାକୀ', କହ କି ବୁଝୁଛ ତୁମ୍ଭେ ?

ଲେର୍ଟିସ୍—ବୁଦ୍ଧି ମୋର ପରାଜିତ, ପ୍ରଭୁ । ଆସୁ ସେହୁ,
ନାହିଁ କିଛି କ୍ଷତି; କରୁଛି ଏ ବାଢ଼ି ମୋର
ସୁପ୍ତ ଦୁଃଖାନଳ, ଆସିଲେ ସେ କହିବି ମୁଁ
ସୁସ୍ପଷ୍ଟ ବଚନେ, 'କରିଛୁ ଏ କର୍ମ ତୁହି' ।

ରାଜା—ଘଟେ ଯଦି ତାହା—କିନ୍ତୁ ସମ୍ଭବ କି କେବେ ?
ଅସମ୍ଭବ କହିବି କେମନ୍ତେ ?—ବାକ୍ୟ ମୋର
ଶୁଣିବ କି, ବନ୍ଧୋ ?

ଲେର୍ଟିସ୍— ଶୁଣିବି ମୁଁ ନରପତି,
ନ କର ପ୍ରସ୍ତାବ ଯେବେ ସନ୍ଧି ତା ସହିତ ।

ରାଜା—ତାଜିବ ପ୍ରସ୍ତାବ ମୋର ଶାନ୍ତ ତବ ପ୍ରାଣେ ।
ଆସିଥାଏ ଫେରି ଯେବେ କରି ଅବହେଳା
ଆଦେଶ ମୋହର, ନ ଥାଏ ବାସନା ତାର
ଯିବାକୁ ବଙ୍ଗତେ, ରଖିଛି କୌଶଳେ ଜାଲ
ସକାଶେ ତା ପାଇଁ କରିବି ପ୍ରବୃତ୍ତ ତାକୁ
ଚତୁରତା ସହ ବୀରୋଚିତ କାର୍ଯ୍ୟେ, ଯେଉଁଥେ
ସୁରୁଷ୍ପରେ ହେବ ଧ୍ରୁବ ପତନ ତାହାର;

ମୃତ୍ୟୁ ହେଉ ପୁଣି ନ ବହିବ ମୃଦୁ ଶ୍ୱାସ
ଯାହାର ଶରୀରେ, ନ ହେବ ସଂଶୟ ଜାତ
ଶତ୍ରେ ଜନନୀର, ଭାଳିବ ସେ ହେଲା ମୃତ୍ୟୁ
ଦୁର୍ବିପାକ ବଶେ ।

ଲର୍ଟିସ୍—                    ପାଳିବି ନିଦେଶ ତବ
ତୁଷ୍ଟ ହେବେ, ପ୍ରଭୁ, ହେବ ମୋ କଳ୍ପିତ ଯେବେ
ସିଦ୍ଧ ସେହି କାର୍ଯ୍ୟ ।

ରାଜା—                    ହୋଇବ ନାୟକ ତୁମ୍ଭେ ।
ପ୍ରବାସେ ନିବାସ କାଳୁ ବନ୍ଧୁଜନେ ତବ
କହୁଛନ୍ତି ବହୁବାର, ହ୍ୟାମ୍‌ଲେଟ୍ ସମୀପେ,
ଅଛି ଅତ୍ୟଦ୍ଭୁତ ଏକ କୌଶଳ ତୁମର,
ସେହି ଏକମାତ୍ର ଗୁଣ କରିଛି ଯେସନ
ଚିତ୍ତ ବିଚଳିତ ତାର, ଅନ୍ୟ ଗୁଣରାଜି
ତବ ହୋଇ ସମ୍ମିଳିତ କରିନାହିଁ କେବେ
ତାକୁ ବିକ୍ଷୁବ୍ଧ ତେସନ; ମୋହ ମତେ କିନ୍ତୁ
ଅଟେ ଅତି ତୁଚ୍ଛ ତାହା ।

ଲର୍ଟିସ୍—                    କି କୌଶଳ, ପ୍ରଭୁ ?

ରାଜା—ସାମାନ୍ୟ ପ୍ରସୂନ ମାତ୍ର ଯୌବନ-ପାଦପେ,
କିନ୍ତୁ ନୁହେଁ ନିରର୍ଥକ, ଗୃପଙ୍କ କୁସୁମ
କରଇ ବର୍ଦ୍ଧିତ ଯେଣୁ ଯୌବନର ଶୋଭା,
ବାର୍ଦ୍ଧକ୍ୟ ଗାମ୍ଭୀର୍ଯ୍ୟ ଯଥା କରେ ସୁମଣ୍ଡିତ ।

ଥିଲେ ଏକ ଭଦ୍ରବଂଶ ନର୍ମାଣ୍ଡି ନିବାସୀ, (୧)
ରାଜଦରବାରେ ମୋର ଦୁଇମାସ ପୂର୍ବେ—
ଦେଖିଛି ମୁଁ ଫରାସୀଙ୍କୁ କରିଛି ସମର
ତାହାଙ୍କ ସହିତ, ଅତି ଦକ୍ଷ ସାଦୀ ସେହୁ—
ଥିଲେ ଏ ଯୋଦ୍ଧାର କିନ୍ତୁ ଅଦ୍ଭୁତ ପଟୁତା
ଘୋଟକ ଚାଳନେ, ପ୍ରତେ ହେଲା ଅଶ୍ୱପୃଷ୍ଠେ
ଉଦ୍ଭୂତ ଯେସନ; କିବା ତା ଆଶ୍ଚର୍ଯ୍ୟ ଶିକ୍ଷା !
ଦେଖାଇଲେ କେତେ ରଙ୍ଗେ ଅଶ୍ୱକ୍ରୀଡ଼ା ସେହୁ;
ହେଲା ଏ ବିଭ୍ରମ ଜାତ ଅବତୀର୍ଣ୍ଣ କିବା
ଅଶ୍ୱିନୀ-କୁମାର ଭବେ. ବିସ୍ଫାରିତ ନେତ୍ରେ
କଲି ନିରୀକ୍ଷଣ ମୁହିଁ ସେ ଅପୂର୍ବ ଦୃଶ୍ୟ,
ଦେଖିନାହିଁ ନେତ୍ର, ଶ୍ରୁତ ଶୁଣିନାହିଁ କେବେ
ଅଦ୍ଭୁତ ସେ କ୍ରୀଡ଼ା ।

ଲାଏର୍ଟିସ୍— ନର୍ମାଣ୍ଡିନିବାସୀ ସେହୁ ?

ରାଜା—ଜଣେକ ନର୍ମାନ ।

ଲାଏର୍ଟିସ୍— ହେବ ସେ ଲାମଣ୍ଡ୍ ନିଶ୍ଚେ ।

ରାଜା—ସେହୁ, ସେହୁ ।

ଲାଏର୍ଟିସ୍— ଜାଣେ ମୁଁ ତାହାଙ୍କୁ ଭଲେ:
ବଂଶ ହୀର ଅଟେ ସେହୁ ସମଗ୍ର ଜାତିର,
ସମୁଜ୍ଜ୍ୱଳ ମଣି ।

---

(୧) ନର୍ମାଣ୍ଡି—ଫ୍ରାନ୍ସର ଉତ୍ତରାଞ୍ଚଳରେ ଥିବା ଗୋଟିଏ ପ୍ରଦେଶ । ୧୦ମ ଶତାବ୍ଦୀର ଦ୍ୱିତୀୟ ଭାଗରେ ଏହା ନର୍ମାନ୍ ମାନଙ୍କଦ୍ୱାରା ସ୍ଥାପିତ ହୋଇଥିଲା ।

ରାଜା— କରେଇ ସ୍ୱୀକାର ସେହୁ,
ଅଛି ନିପୁଣତା ତବ ବିବିଧ ବ୍ୟାୟାମେ,
କହିଲ ସେ ମୁକ୍ତକଣ୍ଠେ, ଧନ୍ୟ ଶିକ୍ଷା ତବ
ଅସ୍ତ୍ର ସଞ୍ଚାଳନେ, ଥିଲେ ଅସି କରଭୁଜେ,
ନାହିଁ ମଲ୍ଲ ଏ ମର୍ତ୍ତ୍ୟ-ମଣ୍ଡଳେ, ଦ୍ୱନ୍ଦ୍ୱ ଯୁଦ୍ଧେ
ହେବ ପ୍ରତିଦ୍ୱନ୍ଦ୍ୱୀ ତବ, କି ଛାର ଫରାସୀ-
ମଲ୍ଲ ! କଲେ ଅକ୍ରମଣ ସ୍ୱୀୟ ପ୍ରହରଣେ
ତବ, ଭୁଲି ଯାଏ ସେ ଅସ୍ତ୍ର ଶିକ୍ଷା, ଇଷ୍ଟ ନାମ
ଧରନ୍ତି ସ୍ମରଣ, ନ ପାରନ୍ତି ତିଷ୍ଠି ତିଳେ
ସମ୍ମୁଖେ ତୁମ୍ଭର । ଦେଖ ଏ ବାରତା ତାର
ଢାଳି ହ୍ୟାମ୍‌ଲେଟର ପ୍ରାଣେ ଈର୍ଷ୍ୟା ହଳାହଳ,
ସମ୍ଭାଳି ନ ପାରି, ଇଚ୍ଛିଲା ସେ ମନଃ କ୍ଷୋଭେ
ଆସିଥିଲେ ଫେରି ତୁମ୍ଭେ ପ୍ରବାସୁଁ ତତ୍କାଳେ,
କରିଥାନ୍ତା ଅସି ଯୁଦ୍ଧେ ଆହ୍ୱାନ ତୁମ୍ଭଙ୍କୁ ।
ଏବେ ସେ ସମ୍ପର୍କେ—

ଲର୍ଟିସ୍— କି ବାଞ୍ଛା ତୁମ୍ଭର, ପ୍ରଭୁ ?

ରାଜା—ଥିଲେ କି ଲର୍ଟିସ୍ ତବ ସ୍ନେହ ପିତା ପ୍ରତି ?
ଅବା ତୁମ୍ଭେ ଚିତ୍ରାର୍ପିତ ଦୁଃଖ ପ୍ରତିଛାୟା,
ମୁଖଚ୍ଛବି ମାତ୍ର ସାର, ଅନ୍ତଃସାର ଶୂନ୍ୟ ?

ଲର୍ଟିସ୍—କି ହେତୁ ଏ ପ୍ରଶ୍ନ ତୁମ୍ଭେ କରୁଛ ଜିଜ୍ଞାସା ?

ରାଜା—ମଣନାହିଁ ମୁହିଁ ପିତୃସ୍ନେହପ୍ରତି ତବ
କରୁଛି ଆକ୍ଷେପ; ବୁଝେ ଦର୍ଶନର ଫଳେ,

ଲଭନ୍ତ ଏ ଜନ ମୂର୍ତ୍ତି, ମାନବ ହୃଦୟେ,
ସ୍ନେହ-ଶିଖା କ୍ରମେ ଯଥା ହୁଅଇ ବର୍ଦ୍ଧିତ,
କାଳକ୍ରମେ ଧୀରେ ଧୀରେ ହ୍ରାସ ପୁଣି,
ବୃଦ୍ଧି ସଙ୍ଗେ କ୍ଷୟ ତାର ସ୍ୱଭାବତ ପୁଣ,
ଦଶାକର୍ଷେ କରେ ମ୍ଳାନ ଦଶାଗ୍ର ଉପସନ; (୧)
ହବର ଔଜ୍ଜ୍ୱଲ୍ୟ ସମଭାବେ ସର୍ବକାଳେ
ନ ରହଇ କେବେ, ତେଣୁ ପୂର୍ଣ୍ଣ ବିକଶିତ,
ଲଭେ ଅବନତି ପୁଣି ପୂର୍ଣ୍ଣତା ପ୍ରଯୁକ୍ତ;
ବୃଦ୍ଧ ସ୍ନେହ ବଶ କର୍ମ ବାସନା ସହିତ,
ହେବା କର୍ମେ ବୃଥା ତେଣୁ ବହୁତ ଅନ୍ତର,
ଥାଏ ମନୋମଧ୍ୟେ ଯେବେ ବାସନା ପ୍ରବଳ;
ଅଗଣିତ ବିଘ୍ନରାଶି ବାସନାର ମୂଳେ,
କରନ୍ତି ଅଘାତ ସଦା କୁଠାର ସଢନେ,
କାର୍ଯ୍ୟସିଦ୍ଧି ହୁଏ ତେଣୁ ବିଳମ୍ବେ ଦୁଷ୍କର,
ଭାଳୁଁ ଅନ୍ତେ ମନସ୍ତାପେ ତେଜ ମୃଦୁଃଶ୍ୱାସ,
କରା ଘୋର ପରିଣାମ ବିଧ୍ୱଂସ ହେତାର ।
ଶୁଣ ଏବେ, ଅସୁଛି ସେ ଫେରି ଅଶ୍ରୁ ଦେଶେ,
କି ଭାବେ କାର୍ଯ୍ୟତଃ ଏହା କରିବ ପ୍ରମାଣ,
ପିତୃରକ୍ତ ଧମନୀରେ ବହୁଛି ତୁମ୍ଭର ?

**ଲାଏର୍ଟିସ୍**—ପ୍ରାର୍ଥନା-ମନ୍ଦିରେ ପଶି କାଟିବି ତା ଶିର । (୨)

---

(୧) ଦଶାକର୍ଷ—ପ୍ରଦୀପ ।

(୨)—ପୂର୍ବକାଳରେ ଦୋଷୀମାନେ କୌଣସି ପ୍ରକାରେ ପ୍ରାର୍ଥନା ମନ୍ଦିରରେ ଆଶ୍ରୟ ନେଇ ପାରିଲେ ଆଇନର କବଳରୁ ରକ୍ଷା ପାଉଥିଲେ ।

ରାଜା—ହେଲେହେଁ ପବନ ସ୍ଥାନ ନରହନ୍ତା ପକ୍ଷେ,
ନୁହଁଇ ବସ୍ତୁତଃ ତାହା ଆଶ୍ରୟର ସ୍ଥଳୀ,
ପ୍ରତିହିଂସା ସ୍ଥାନାସ୍ଥାନ ନ କରେ ବିଚାର ।
ହେ ପ୍ରିୟ ଲର୍ଟିସ୍, କିନ୍ତୁ ରହିବା ଗୋପନେ
ବାଞ୍ଛନୀୟ ତୁମ୍ଭପକ୍ଷେ କକ୍ଷ ମଧ୍ୟେ ତବ;
ଆସିଲେ ସେ ଫେରି ତବ ଆଗମନ ବାର୍ତ୍ତା
କରିବ ଶ୍ରବଣ. କୃତିତ୍ୱ ତୁମ୍ଭର ପୁଣି
ସାଲଙ୍କାରେ ଶତଗୁଣେ କରିଣ ବର୍ଦ୍ଧିତ
ଲୋକମୁଖେ ସୁକୌଶଳେ କରିବ ପ୍ରଚାର,
ବାଜି ରଖି କ୍ରୀଡ଼ାସ୍ଥଳେ କରାଇବ ଭେଟ
ତୁମ୍ଭ ଦୁଇ ଜଣେ; ଉଦାର ଚରିତ ତାର,
କରିନାହିଁ କଳଙ୍କିତ କୁଟିଳତା ରେଖା,
ନ ହେବ ସନ୍ଦେହ ଜାତ ତେଣୁ ତାର ଚିତ୍ତେ,
ନ କରିବ ପରୀକ୍ଷା ସେ ଅସି-ତୀକ୍ଷ୍ଣ-ଧାର,
ଅଳ୍ପାୟାସେ ତେଣୁ ତୁମ୍ଭେ ନେବ ବାଛି ଏକ,
ସୁତୀକ୍ଷ୍ଣାଗ୍ର ତରବାରି, କୌଶଳେ ତା ମୁନେ,
କରିବ ପିପାସା ତୃପ୍ତ ପିତୃ-ବୈରୀ-ରକ୍ତେ ।

ଲର୍ଟିସ୍—ଉଷ୍ଣ ରକ୍ତ ଉପହାରେ କରିବ ତର୍ପଣ
ତୃଷାତୁର ପ୍ରେତାତ୍ମାର, କାର୍ଯ୍ୟସିଦ୍ଧି କଲେ,
କରିବ ମୁଁ ଅଭିଲିପ୍ତ ତରବାରି ମୋର ।
ମାଇ ବୈଦ୍ୟଠାରୁ ମୁହିଁ କରିଥିଲି କ୍ରୟ
ବିଷାକ୍ତ ମଲମ, କିବା ତା ଅଶ୍ଚର୍ଯ୍ୟ ଶକ୍ତି !

ଛୁରିକାଗ୍ର କରି ଲିପ୍ତ ଶରୀରେ ଯାହାର
କରିବ ଆଘାତ, ହେଲେ ମାତ୍ର ଚର୍ମ ଭଙ୍ଗ,
ମୃତ୍ୟୁ ତାର ଘଟିବ ନିଶ୍ଚୟ; ନାହିଁ ମର୍ତ୍ତ୍ୟେ
ଏଭଳି ଔଷଧି, ପ୍ରଲେପ ଯାହାର ତାକୁ
କୃତାନ୍ତ କବଳୁଁ ବଳେ ଆଣିବ ଉଦ୍ଧାରି;
ସେ ଗରଳେ କରିବି ମୁଁ ଲିପ୍ତ ଅସିମୁନ,
ହେବ ଯେବେ ଭାଗ୍ୟକ୍ରମେ ବିଦ୍ଧ ତା ଶରୀର,
ମୃତ୍ୟୁ ଘଟିବ ନିଶ୍ଚୟ ।

ରାଜା— ଭୁଲ ଘଟେ ପୁଣି
ଧରିବା ବିଚାର, କି କୌଶଳେ କାର୍ଯ୍ୟୋଦ୍ଧାର
ହୋଇବ ଆମର : ଭ୍ରାନ୍ତ ହେତୁ କରିର ଯେବେ
ଗୁପ୍ତ ଅଭିସନ୍ଧି, ଭେଦ ଝୀନ ଯବନିକା
ଦୃଷ୍ଟି ଆକର୍ଷଣ, ହେବ ସେ ପ୍ରୟାସ ବୃଥା;
ଅନ୍ୟ ଆସ୍ତରଣ ତେଣୁ ହେବ ପ୍ରୟୋଜନ,
"ଏକ ଚକ୍ଷୁ ଚକ୍ଷୁ ନୁହେଁ" ସାର ଏ ବଚନ,
ହେଲେ ବ୍ୟର୍ଥ ପ୍ରଥମ ସନ୍ଧାନ, ଅନ୍ୟ ଶର
ଯୋଖିବା କାର୍ଯ୍ୟକେ । ରହ, ଭାବି ଦେଖେଁ, ଅଛି
ଆଉ କି ଉପାୟ :
କରୁଛି ମୁଁ ଉଦ୍ଭାବନ,
କ୍ରୀଡ଼ାକାଳେ ହୋଇ ଶ୍ରାନ୍ତ, ତୃଷାତୁର ଯେବେ
(ହେବ ଏହା ଶ୍ରାନ୍ତ ତାକୁ କରିବ ବହନ)

ଲୋଡ଼ିବ ପାନୀୟ ସେହୁ, ତା ପାଇଁ ଚଷକ
ରଖିଥିବ ସଯତନେ; ଦୈବ କ୍ରମେ ଯଦି
ଯେବେ କବଳୁଁ ତୁମ୍ଭର, କଲେ ତାହା ପାନ
ହେବ ସିଦ୍ଧ ମନସ୍କାମ ।

(ରାଣୀର ପ୍ରବେଶ)

କି ସମ୍ବାଦ ପ୍ରିୟେ ?

ରାଣୀ—ଦୁଃଖ ପଛେ ଆସେ ଦୁଃଖ ଅବିରଳ ଧାରେ;
ଲାର୍ଟିସ୍, ଭଗିନୀ ତବ ହେଲା ଜଳମଗ୍ନ ।

ଲାର୍ଟିସ୍—ଜଳମଗ୍ନ ! କହ କାହିଁ ?

ରାଣୀ—ତଟିନୀର ତଟେ ଅଛି ଗୋଟିଏ ବେତସୀ
ଝୁଲି ବକ୍ରଭାବେ, ରଜତ-ପଲ୍ଲବ-ରାଜି (୧)
ନୀର-ଦରପଣେ ତାର, ନିତ୍ୟ ଅଙ୍ଗଶୋଭା
କରନ୍ତି ଦର୍ଶନ । ଗଲା ସେ କୌତୁକେ ତହିଁ,
ବିବିଧ କୁସୁମେ ରଚି ଅପୂର୍ବ ମାଳିକା,
ଉଠି ଡାଳେ ଦେବାପାଇଁ ବନସ୍ପତି ଗଳେ
ମାଲ୍ୟ ଉପହାର; ବୁଝି ତାର ମନୋଭାବ
ପଡ଼ିଲା ସହସା ଖସି ଈର୍ଷାବଶେ ଶାଖା,
ମାଳା ସହ ହେଲା ତହୁଁ କଲ୍ଲୋଳିନୀ ନୀରେ
ନୀରେ ନିପତିତା । ଭାସିଲା ତା ପରିଚ୍ଛଦ,

(୧) [illegible]

ଭାସିଲା ସେ ଜଳେ କିଛୁକାଳ ଊର୍ଦ୍ଧ୍ୱଦେଶେ
ଯଥା ମତ୍ସ୍ୟନାରୀ, ଗାଇଲା ପ୍ରାଚୀନ ଛନ୍ଦେ (୧)
ମଧୁର ସଙ୍ଗୀତ, ଗାଏ ଗୀତ ଗୀଗ ଯଥା
ଆନନ୍ଦ ସଲିଳେ ଭାସି ଉତ୍ସବ-ବାସରେ,
ପ୍ରତେ ହେଲା ଇନ୍ଦିରା କି ସମୁଖି ତା ଜଳେ !
ଦେଖୁ ଦେଖୁ ଜଳ ଦେଇଣ ସିକ୍ତ ପରିଚ୍ଛଦ
ନେଲା ଟାଣି ଅଭାଗୀକୁ ଗୁରୁଭାରେ ତାର,
ମିଶିଗଲା ବାୟୁ ସଙ୍ଗ ସେ ସ୍ୱର-ଲହରୀ
ପ୍ରବାହିନୀ ସଙ୍ଗେ ତାର ଜୀବନ-ପ୍ରବାହ ।

ଲର୍ଟିସ୍—ହାୟ, ତେବେ ଜଳମଗ୍ନ ହୋଇଛି ନିଶ୍ଚୟ ?

ରାଣୀ—ହୋଇଛି ସେ ଜଳମଗ୍ନ ।

ଲର୍ଟିସ୍—ଅହା ସେ ଅଭାଗ, ତୋର କି ଲୋଡ଼ା ଲୋତକେ,
ଲଭିଛୁ ଆଶ୍ରୟ ତୁ ତ ପ୍ରବାହିନୀ-ବକ୍ଷେ !
ମାତ୍ର ଏହା ଚରିତ୍ରର ସ୍ୱଭାବ ସୁଲଭ;
ପ୍ରକୃତି ଆପଣା ରୀତି ନ ଛାଡ଼େ କଦାପି,
କଲେହେଁ କରନ୍ତେ ଜନେ ନିନ୍ଦାବାଦ ତାର;
ଝରୁ ଝରଝରେ ତେବେ ନୟନୁ ଅସାର,
ଭାସିଯାଉ ନାରୀ-ବୃତ୍ତି ମିଶି ସେ ପ୍ରବାହେ,
ଉଠୁ ଜଳି ଧକଧକେ ପ୍ରତିହିଂସାନଳ,

(୧) ମତ୍ସ୍ୟନାରୀ—ଗୋଟିଏ କଳ୍ପିତ ସାମୁଦ୍ରିକ ଜନ୍ତୁ । ଏହାର କଟିରୁ ନିମ୍ନାଂଶ ମନୁଷ୍ୟଙ୍କ ପରି ଏବଂ ଊର୍ଦ୍ଧ୍ୱାଂଶ ମାଛ ସଦୃଶ ।

ଜ୍ୱଳେ ଯଥା ହବ୍ୟବାହ ଲଭି ହବ୍ୟାହୁତି ।
ଯେତେ ମେଳଣି, ପ୍ରଭୁ । (ପ୍ରସ୍ଥାନ)

ରାଜା— ଅସ, ଜାର୍ଟରୁଡ୍,
ଯିବା ତା ପଶ୍ଚାତେ; ବହୁଚେଷ୍ଟା ଫଳେ ମୁହିଁ,
କରିଥିଲି ଶାନ୍ତ ତାର ଦୀପ୍ତ କୋପାନଳ,
ହେଲା ପୁଣି ଉଦ୍ଦୀପିତ ଶୁଣି ଏ ବାରତା;
ଅସ ତେଣୁ ଯିବା ତା ପଶ୍ଚାତେ ।

(ସମସ୍ତଙ୍କର ପ୍ରସ୍ଥାନ)





# ପଞ୍ଚମ ଅଙ୍କ

[ ପ୍ରଥମ ଦୃଶ୍ୟ—ଗିର୍ଜ୍ଜା ସଂଲଗ୍ନ ସମାଧି କ୍ଷେତ୍ର ]

( ଖନିତ୍ର ହସ୍ତେ ଦୁଇଜଣ କୃଷକର ପ୍ରବେଶ )

ପ୍ରଥମ କୃଷକ—ଯେଉଁ ସ୍ତ୍ରୀଲୋକ ନିଜ ହସ୍ତରେ ମୁକ୍ତି-ଦ୍ୱାର ଉନ୍ମୁକ୍ତ କରେ, ତାର କ'ଣ ଖ୍ରୀଷ୍ଟୀୟ ମତେ ସମାଧି ହେବା ଉଚିତ ?

ଦ୍ୱିଃ କୃ—ମୁଁ କହୁଛି ତାର ଖ୍ରୀଷ୍ଟୀୟ ମତେ ସମାଧି ହେବ, ଶୀଘ୍ର ତାର କବର ପ୍ରସ୍ତୁତ କର । 'କରୋନାର' ଏ ବିଷୟରେ (୧) ଅନୁସନ୍ଧାନ କରି ସିଦ୍ଧାନ୍ତ କରିଅଛନ୍ତି ତାର ଖ୍ରୀଷ୍ଟୀୟ ମତେ ସମାଧି ହେବ ।

ପ୍ରଃ କୃ—ସେ ଯଦି ନିଜକୁ ରକ୍ଷା କରିବାପାଇଁ ବୁଡ଼ି ମରିଥାଏ ତେବେ ସିନା, ତା ନ ହେଲେ କିପରି ଏହା ହୋଇ ପାରିବ ?

ଦ୍ୱିଃ କୃ—ବାହିଁକି, କରୋନାର୍ ତ ସେହି ସିଦ୍ଧାନ୍ତରେ ଉପଗତ ହେଲେ ।

ପ୍ରଃ କୃ—ମୁଁ କହୁଛି 'ଅସ୍ମରକ୍ଷା' ବ୍ୟତୀତ ଅନ୍ୟ କୌଣସି ସ୍ଥଳରେ ଏହା ସମ୍ଭବପର ହୋଇ ନ ପାରେ । ତାର କାରଣ ମୁଁ କହୁଛି, ଶୁଣ: ଯଦି ମୁଁ ଇଚ୍ଛାପୂର୍ବକ ବୁଡ଼ି ମରେ ତା' ହେଲେ ମୁଁ ଗୋଟାଏ କାର୍ଯ୍ୟରେ ଲିପ୍ତ ହେଲି; ଏବଂ ପ୍ରତ୍ୟେକ କାର୍ଯ୍ୟ ତିନିଭାଗରେ ବିଭକ୍ତ, ଯଥାଃ—କାର୍ଯ୍ୟ, କର୍ମ, କ୍ରିୟା : ଅତଏବ ସେ ଇଚ୍ଛାପୂର୍ବକ ବୁଡ଼ି ମରିଛି ।

---

(୧) କରୋନାର୍—ଅପମୃତ୍ୟୁ କାରଣ ଅନୁସନ୍ଧାନ କାରୀ କର୍ମଚାରୀ ।

ଦ୍ୱିଃ ବୃ—ଅରେ ବୁଢ଼ାମାଟିଆ ମୋ କଥା ଶୁଣ୍,—

ପ୍ରଃ ବୃ—ଅରେ ଶୁଣ୍, ମୋତେ କହିବାକୁ ଦେ। ଏଇଠି ପାଣି ଅଛି; ଅଚ୍ଛା, ଏଇଠି ଗୋଟିଏ ଲୋକ ଠିଆ ହୋଇଛି, ଯଦି ସେ ଲୋକଟି ପାଣି ଭିତରକୁ ଯାଏ ଓ ବୁଡ଼ିମରେ, ତାହାହେଲେ ଇଚ୍ଛାପୂର୍ବକ ହେଉ ବା ଅନିଚ୍ଛାପୂର୍ବକ ହେଉ ସେ ସେଠିକି ଗଲା—ଏଇଟା ଭଲକରି ମନେରଖ; କିନ୍ତୁ ଯଦି ପାଣି ତା ପାଖକୁ ଅସି ତାକୁ ବୁଡ଼େଇ ଦିଏ ତା'ହେଲେ ସେ ଇଚ୍ଛାପୂର୍ବକ ବୁଡ଼ିମଲା ନାହିଁ; ସୁତରାଂ ଯେ ଇଚ୍ଛାପୂର୍ବକ ନ ମରେ ସେ ଅତ୍ମହତ୍ୟା ଦୋଷରେ ଦୋଷୀ ନୁହେଁ।

ଦ୍ୱିଃ ବୃ— କିନ୍ତୁ ଅଇନ୍ କଣ ଏ କଥା କହୁଛି ?

ପ୍ରଃ ବୃ - ହଁ, ଠିକ୍ ଏହି କଥା, ଏଟା ତ କରୋନାର୍‌ର ଅନୁସନ୍ଧାନ ସମ୍ପର୍କୀୟ ଅଇନ।

ଦ୍ୱିଃ ବୃ—ତୁ କଣ ଏ ବିଷୟରେ ପ୍ରକୃତ କଥା ଜାଣିବାକୁ ଚାହୁଁ ? ଯଦି ସେ ସ୍ତ୍ରୀଲୋକଟି ଭଦ୍ରମହିଳା ନ ହୋଇଥାନ୍ତା ତାହାହେଲେ ତାର ଖ୍ରୀଷ୍ଟୀୟ ମତରେ ସମାଧି ହୁଅନ୍ତା ନାହିଁ।

ପ୍ରଃ ବୃ—ବାପ୍, ଏଇତ ଠିକ୍ କଥା। ବଡ଼ ଦୁଃଖର ବିଷୟ ଯେ ଏ ସଂସାରରେ ବଡ଼ଲୋକମାନଙ୍କର ସାତ ଖୁଣ୍ ମାଫ୍—ସେମାନେ ବୁଡ଼ି ମରନ୍ତୁ ବା ଦଉଡ଼ି ଦିଅନ୍ତୁ ସେଥିରେ ତାଙ୍କର କିଛି ଦୋଷ ନାହିଁ, ଯେତେ ଦୋଷ ଗରିବଙ୍କର ! ହଉ, ଅରେ କୋଡ଼ି ମାଟିଖୋଳିବା। ପ୍ରକୃତ ପକ୍ଷରେ ମାଳୀ, ମାଟିଆ ଓ କବର ଖନନକାରୀଙ୍କ ଛଡ଼ା ଏତେ ପ୍ରାଚୀନ ଭଦ୍ରବଂଶ ଏ ପୃଥିବୀରେ

ଅଉ ନାହିଁ; ସେଇମାନେଇ ତ ଆଦିପୁରୁଷ 'ଆଦମ' ଙ୍କର ପନ୍ଥା ଅନୁସରଣ କରି ଜୀବିକା ନିର୍ବାହ କରୁଛନ୍ତି ।

ଦ୍ୱିଃ ବୃ—ସେ କଣ ଭଦ୍ରଲୋକ ଥିଲେ ?

ପ୍ରଃ ବୃ—ତାଙ୍କରି ପାଖରେ ତ ଭଦ୍ରତାର ଚିହ୍ନ ଥିଲା ।

ଦ୍ୱିଃ ବୃ—କାହିଁ ତାଙ୍କର ତ କିଛି ନ ଥିଲା ।

ପ୍ରଃ ବୃ—ଅରେ, ତୁ କଣ ଗୋଟାଏ ବିଧର୍ମୀ ? ଧର୍ମଶାସ୍ତ୍ର ପଢି ତୁ ଅଉ କ'ଣ ବୁଝିଲୁ ? ଧର୍ମଶାସ୍ତ୍ରରେ ଲେଖାଅଛି— 'ଆଦମ୍ ମାଟି ଖୋଳୁଥିଲେ', ତାଙ୍କ ହାତରେ କୋଡ଼ି ନ ଥି[illegible]ତ ସେ ଖୋଳିଲେ କିପରି ? ମୁଁ ତୋତେ ଅଉ ଗୋଟାଏ ପ୍ରଶ୍ନ ପଚାରିବି, ତୁ ଯଦି ତାର ଠିକ୍ ଜବାବ୍ ଦେଇ ନ ପାରୁ, ତା'ହେଲେ ତୁ ଗୋଟିଏ କପଟ—

ଦ୍ୱିଃ ବୃ—ଇସ୍ ।

ପ୍ରଃ ବୃ—ଏପରି କେଉଁ କାରିଗର ଅଛି ଯାର କାମ ରାଜ, ବଢ଼ାଇ ଓ ଜାହାଜମିସ୍ତ୍ରୀର କାମ ଅପେକ୍ଷା ଅଧିକ ମଜବୁତ୍ ?

ଦ୍ୱିଃ ବୃ—ଯେଉଁ କାରିଗର ଫାସି-କାଠ ତିଆରି କରେ, କାରଣ ସେଥିରେ ହଜାର ହଜାର ଲୋକ ଝୁଲିଲେ ମଧ୍ୟ ତାହା ସେହିପରି ଠିଆ ହୋଇଥାଏ ।

ପ୍ରଃ ବୃ—ଅରେ ବାଃ, ତୋର ତ ବେଶ୍ ବୁଦ୍ଧି ଅଛି; ଫାସିକାଠ ଖୁବ୍ ମଜବୁତ୍, ଭଲ୍ କାମ କରେ, କିନ୍ତୁ କାହା ପକ୍ଷରେ ? ଯେ ଅନ୍ୟାୟ କାମ କରେ ତାହାକୁ ଏ ନ୍ୟାୟ ମାର୍ଗ ଦେଖାଇ ଦିଏ; ଅଚ୍ଛା ତୁ ଯେ ଗିର୍ଜା ଅପେକ୍ଷା ଫାସି-କାଠକୁ ଉଚ୍ଚତର ସ୍ଥାନ ଦେଲୁ, ଏଟା ତ ତୋର ଅନ୍ୟାୟ ହେଲା; ଅତଏବ ତୋ ପକ୍ଷରେ ଫାସି କାଠ ଶ୍ରେୟସ୍କର । ଅଚ୍ଛା ଅଉ ଥରେ ମୋର ପ୍ରଶ୍ନର ଠିକ୍ ଉତ୍ତର ଦେବାକୁ ଚେଷ୍ଟାକର ।

ଦ୍ୱି: କୃ—କାହାର କାମ ଶକ୍ତ, ବଢ଼ାଇ ଓ ଜାହାଜମିସ୍ତ୍ରୀର କାମ ଅପେକ୍ଷା ଅଧିକ ମଜବୁତ୍ ?'

ପ୍ର: କୃ—ବାସ୍, ସେହି ପ୍ରଶ୍ନର ଉତ୍ତର ଦେଲେ ତୁ ଖଲାସ୍ ପାଇଯିବୁ, ଆଜି ତୋତେ ବଳଦ ଜୋଡ଼ିବାକୁ ହେବନାହିଁ ।

ଦ୍ୱି: କୃ—ବେଶ୍ ତ, ତାର ଉତ୍ତର କହୁଛି ଶୁଣ ।

ପ୍ର: କୃ—କହ ।

ଦ୍ୱି: କୃ—ରାମ, କୃଷ୍ଣ, ମୁଁ କହି ପାରିବ ନାହିଁ ।

( କିଛି ଦୂରରେ ହ୍ୟାମ୍‌ଲେଟ୍ ଓ ହୋରାସିଓର ପ୍ରବେଶ )

ପ୍ର: କୃ—ଆଜି ତୋର ମୁଣ୍ଡ ବାଡେଇବାର ଦରକାର ନାହିଁ, ଗଧଟାକୁ ପିଟିଲେ କ'ଣ ସେ ଘୋଡ଼ାପରି ଦୌଡ଼ିବ ! ଫେର ଯଦି ତୋତେ କେହି ଏ ପ୍ରଶ୍ନ ପଚାରେ, ତାର ଉତ୍ତରରେ କହିବୁ "କବର-ଖନନକାରୀ"—ସେ ଯେଉଁ ଘର ବନାଏ ତାହା ବିଚାର ଦିବସ ପର୍ଯ୍ୟନ୍ତ ସେହିପରି ଅବିକଳରେ ଥାଏ । ଯା, ସେଇ ଜଗା ଦୋକାନରୁ ମୋ ପାଇଁ ଗିଲାସେ ସରାପ ଆଣି ଯା ।

(ଦ୍ୱିତୀୟ କୃଷକର ପ୍ରସ୍ଥାନ)

( ଖୋଳୁଁ ଖୋଳୁଁ ଗାନ )

ଯଉବନେ ଯାହା ମଣୁଥିଲି ସୁଖ,
ଲାଗୁଥିଲା ଯାହା ମିଠା;
ଏବେ ତା ହୋଇଲା କାଳକୂଟ ବିଷ
କଲା ମୋତେ ହଟହଟା ।

ହ୍ୟାମ୍—ଏ ଲୋକଟା କବର ତିଆରି କରୁ କରୁ ଗାନ କରୁଛି, ତାର ମନରେ କଣ ଟିକିଏ ହେଲେ କଷ୍ଟ ହେଉନାହିଁ ?

ହୋରା—ଅଭ୍ୟାସ ବଶତଃ ଏହା ତାର ପ୍ରକୃତିଗତ ହୋଇ ପଡ଼ୁଛି ।

ହ୍ୟାମ୍—ଠିକ୍ କଥା : ଯେଉଁ ହାତ ଯେତେ କମ୍ କାମ କରେ, ତାହା ସେତେ ବେଶି ନରମ ଥାଏ ।

ପ୍ରଃ କୃ—( ଗାନ )

ଶେଷର ପର ଦିନ ପଛୁ ଅସି ମୋତେ
ଭିଡ଼ ତାର ନାଗପାଶେ,
ପକାଇଛି ନେଇ ଅଜଣା ସ୍ୱଭଙ୍କେ
ଏ କି ଅପରୂପ ବେଶେ ।

( ଗୋଟାଏ ମୁଣ୍ଡର ଖୋଲପା ଉପରକୁ ଫିଙ୍ଗିଦେଲା )

ହ୍ୟାମ୍—ସେହି କରୋଟୀର ଜିହ୍ୱା ଥିଲା ଏବଂ ତାହା ମଧ୍ୟ ଦିନେ ଗାନ କରି ପାରୁଥିଲା; ଦେଖ ତ ଏ ଚଣ୍ଡାଳଟା କି ଭଳି ସେ ଖୋଲପାଟା ତଳେ ବାଡ଼ଉଛି, ଯେପରି କି ତାହା ଗୋଟାଏ ନରହନ୍ତାର କରୋଟୀ ! ଏହା କୌଣସି ଚକ୍ରୀର ମୁଣ୍ଡ ହୋଇପାରେ, ବର୍ତ୍ତମାନ ଅସି ଏହି ଗଧ ହାତରେ ପଡ଼ିଛି—ହୁଏ ତ ସେ ଭଗବାନଙ୍କ ଆଖିରେ ମଧ୍ୟ ଧୂଳି ପକାଇବାକୁ ଲାଜ ନ ଥିଲା, ତୁମ୍ଭର କଣ ମନେହୁଏ ?

ହୋରା—ହୋଇପାରେ ଯୁବରାଜ ।

ହ୍ୟାମ୍—କିମ୍ବା ଏହା କୌଣସି ଗୃହକାରର ମୁଣ୍ଡ ବି ହୋଇପାରେ; ଦିନେ ହୁଏ ତ ସେ କହୁଥିଲା, "ନମସ୍ତେ ମହାରାଜ ! ଶ୍ରୀହଜୁରଙ୍କର

ସର୍ବାଙ୍ଗୀନ କୁଶଳତ ?" ଏ କୁଏ ତ ଅମୁକ ସାଅନ୍ତେ, ଅମୁକ ସାଅନ୍ତଙ୍କର ଘୋଡ଼ାଟା ମାଗିବାକୁ ଯାଇ ତାର ବଡ଼େ ପ୍ରଶଂସା କରିଥିଲେ, ତା ହୋଇପାରେ ନାଁ କ ?

ହୋର—ହଁ ହୋଇପାରେ, ଯୁବରାଜ ।

ହ୍ୟାମ୍—ମୋର କନୁ ଠିକ୍ ସେଇଆ ମନେହୁଏ, ବର୍ତ୍ତମାନ ଅସି ସାଂଟ-ସାଅନ୍ତାଣୀଙ୍କ ଦଖଲରେ ପଡ଼ିଛନ୍ତି; ତଳ ପାଟିଟା ଖସିପଡ଼ିଛି ଏବଂ ବର୍ତ୍ତୁଳ ମୁଣ୍ଡଟା ସମାଧି ଖନନକାରୀ ତାର କୋଡ଼ରେ ଏପାଖ ସେପାଖ କରି ଖେଳାଉଛି; କି ଅଦ୍ଭୁତ ପରିବର୍ତ୍ତନ ! ଅମ୍ଭମାନଙ୍କର ଯଦ ଅଖି ଥାଏ ତ ବେଶ୍ ବୁଝି ପାରିବା । ଏହି ହାଡ଼ ଯେ ଏତେ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଖାଇ ପୁଷ୍ଟ ହୋଇଥିଲା ଶେଷରେ କଣ ପେଣ୍ଡୁପରି ଗଡ଼ିବ ବୋଲି ? ଏହା ଭାବିଲେ ମୋର ହାଡ଼ ଭିତରଟା କନ୍ କନ୍ ହୋଇ ଯାଉଅଛି ।

ପ୍ରଃ କୃ—( ଗାନ )

ଖଣ୍ଡିଏ ଖନନ — ଖଣ୍ଡେ ନବ ବସ୍ତ୍ର
ଗାତ୍ର ଅଚ୍ଛାଦନ ପାଇଁ,
ମାଟି ତେଜ ଟୋଳ — ରଖୁଛି ଯତନେ
ଶୋଇବ କୁଣିଆ ଭାଇ ।

( ଆଉ ଗୋଟାଏ କରୋଟୀ ଉପରକୁ ଫିଙ୍ଗିଦେଲା )

ହ୍ୟାମ୍—ଅଉ ଗୋଟାଏ ବାହାରିଲା; ଏଟା କଣ କୌଣସି ଓକିଲର କରୋଟୀ ହୋଇପାରେ ନା ? ତାର ସେ ବଢୋଇ,

ବାକ୍‌ଚାତୁର୍ଯ୍ୟ କାହିଁ ? କାହିଁ ତାର ପ୍ରଜାସ୍ୱତ୍ୱ ମୋକଦ୍ଦମା ନଥି ? ତାର ସେ କୁତର୍କ କାହିଁ ? ଏହି ପାଷଣ୍ଡଟା ବର୍ତ୍ତମାନ ତାର ମୁଣ୍ଡକୁ ଗୋଟାଏ କଦାକାର କୋଡ଼ରେ ପିଟି ଇତସ୍ତତଃ ଖେଳାଉଅଛି, କାହିଁକି ସେ ଚୁପ୍ କରି ରହିଛି ? କାହିଁକି ସେ ଦଣ୍ଡବିଧିର କେଉଁ ଧାରାରେ ଦଙ୍ଗାକାରୀର କି ଶାସ୍ତି ହୁଏ ଏ କଥା ତାକୁ ବୁଝାଇ ଦେଉନାହିଁ ? ହୁଁ ! ଏ ଲୋକଟା ବୋଧହୁଏ ତାର ଜୀବଦ୍ଦଶାରେ ମହାଜନୀ କରି ପ୍ରଚୁର ଜମିବାଡ଼ି କିଣିଥିଲା ଏବଂ ତାହା ନିକଟରେ ତତ୍ସମ୍ପର୍କୀୟ ଅନେକ ଦଲୀଲ, ଦସ୍ତାବିଜ୍ ଓ ନଥୀପତ୍ର ଥିଲା : ସେ ଯେ ସାରା ଜୀବନଟା ଓକାଲତି କରି ଶତ ଶତ ମୋକଦ୍ଦମାରେ ଜୟୀ ହୋଇ ଏତେ ଭୂସମ୍ପତ୍ତିର ମାଲିକ ହୋଇଥିଲା, ଶେଷରେ କଣ ତାର ସୁନ୍ଦର, ସୁଚିକ୍କଣ ମସ୍ତିଷ୍କଟାକୁ କେବଳ କେତେଗୁଡ଼ାଏ ଅବର୍ଜ୍ଜନାରେ ପୂର୍ଣ୍ଣ କରିବା ପାଇଁ ? ଯେଉଁ ସ୍ୱତ୍ୱ ପ୍ରମାଣ କରିବା ପାଇଁ ସେ ଏତେ ଲଢ଼ିଥିଲା, ଏତେ ସାକ୍ଷୀ ସାବୁତ୍ ଯୋଗାଡ଼ କରିଥିଲା, ତାର ପରିଣତି କେଉଁଠାରେ ? ମାତ୍ର ସାମାନ୍ୟ ଦୁଇଖଣ୍ଡ ଚମଡ଼ାର ଚୁକ୍ତିପତ୍ର ତାର ମୂକସାକ୍ଷୀ ! ସେହି ସାମାନ୍ୟ ଦଲୀଲ ଗୁଡ଼ାକ (୧)ରଖିବାକୁ ମଧ୍ୟ ତାର ଏହି ତାମ୍ରସମ୍ପୁଟରେ ସ୍ଥାନ ନାହିଁ; ହାୟ, ହାୟ ! ଏତେ ବିପୁଳ ସମ୍ପତ୍ତିର ଅଧିକାରୀ କଣ ଏହା ଅପେକ୍ଷା ଅଳ୍ପ ଅଧିକ କିଛି ଦାବୀ କରିପାରେ ନାହିଁ ?

ହୋରା—ନାଁ, ଯୁବରାଜ, ଅଳ୍ପ ଅଙ୍ଗୁଳୀ ପରିମିତ ସ୍ଥାନ ମଧ୍ୟ ସେ ପାଇ ପାରେ ନାଁ ।

---

(୧)—ତାମ୍ରସମ୍ପୁଟ—ଶବାଧାର ।

ଶ୍ୟାମ୍—ଅଚ୍ଛା 'ପାର୍ଚମେଣ୍ଟ' ମେଣ୍ଢା ଚମଡ଼ାରେ ତିଆରି ହୁଏ ନା ? (୧)

ହୋରୁ—ହଁ, ଯୁବରାଜ, ମେଣ୍ଢା ଚମଡ଼ାରେ ହୁଏ, ବାଛୁରି ଚମଡ଼ାରେ ମଧ୍ୟ ହୁଏ ।

ଶ୍ୟାମ୍—ଯେଉଁମାନେ ଦାବି ପ୍ରତିପନ୍ନ କରିବାପାଇଁ ତାର ଆଶ୍ରୟ ଗ୍ରହଣ କରନ୍ତି, ସେମାନେ ମେଣ୍ଢା ଓ ବାଛୁରି ଛଡ଼ା ଆଉ କିଛି ନୁହନ୍ତି । ଏ ଲୋକଟାର ସହିତ କିଛି କଥାବାର୍ତ୍ତା କରେଁ । ହଇ ରେ ଏ କବରଟା କାର ?

ପ୍ରଃ କୃ—ମୋର, ମହାଶୟ ।

( ଗାନ )

ମାଟିଶେଜ ଖୋଳ ରଖୁଛି ଯତନେ
ଶୋଇବ କୁଣିଆ ଯିଏ ।

ଶ୍ୟାମ୍—ହଁ, ଏଟା ତୋହରି ବୋଲି ମନେ ହେଉଛି, କାରଣ ତୁ ସେଥିରେ ଶୋଉଛୁ ।

ପ୍ରଃ କୃ—ଆପଣ ତ ଏଥିରେ ଶୁଅନ୍ତି ନାହିଁ ଅତଏବ ଏଟା ଆପଣଙ୍କର ନୁହେଁ ; ଆଉ ମୋ କଥା, ମୁଁ ଏଥିରେ ନ ଶୋଇଲେ ମଧ୍ୟ ଏଟା ମୋର ।

ଶ୍ୟାମ୍—ତୁ ଏଥିରେ ଶୋଉଛୁ, ଶୋଇବୁ, ସେଥିପାଇଁ ଏଟାକୁ ତୋର ବୋଲି କହୁଛୁ; ମଲା ମଣିଷମାନେ ଏଥିରେ ଶୁଅନ୍ତି, ଜୀଅନ୍ତାମାନେ ଶୁଅନ୍ତି ନାହିଁ, ଅତଏବ ତୁ ମିଛକଥା କହୁଛୁ ।

---

(୧) ପାର୍ଚମେଣ୍ଟ୍—ଲେଖିବା ନିମିତ୍ତ ପ୍ରସ୍ତୁତ ମେଷ ବା ଛାଗର ଚର୍ମ ।

ପ୍ରଃ କୃ—ଏଟା ତ ମିଛକଥା ନୁହେଁ ମହାଶୟ; ଏଥିରେ ଅଜ ମୁଁ ଶୋଇଲେ କାଲ୍‌ ଅପଣ ଶୋଇବେ ।

ହ୍ୟାମ୍‌—ତୁ କେଉଁ ଲୋକ ସକାଶେ ଏହାକୁ ଖୋଳୁଚୁ ?

ପ୍ରଃ କୃ—କୌଣସି ଲୋକ ସକାଶେ ନୁହେଁ, ମହାଶୟ ।

ହ୍ୟାମ୍‌—ତା'ହେଲେ, କେଉଁ ସ୍ତ୍ରୀ ଲୋକ ସକାଶେ ?

ପ୍ରଃ କୃ—ସ୍ତ୍ରୀ, ପୁରୁଷ କାହାର ସକାଶେ ନୁହେଁ ।

ହ୍ୟାମ୍‌—ଏଥିରେ କଏ ପୋତା ହେବ ?

ପ୍ରଃ କୃ—ସେ ଜଣେ ସ୍ତ୍ରୀ ଲୋକ ଥିଲା, କିନ୍ତୁ ସେ ମରିଯାଇଛି, ଭଗବାନ୍‌ ତାର ଅତ୍ମାର ସଦ୍‌ଗତି ବିଧାନ କରନ୍ତୁ ।

ହ୍ୟାମ୍‌—ଏ ଲୋକଟା କେତେ ହିସାବରେ କଥା କହୁଛି । ଢଗି, ବୁଝି କଥା ନ କହି ହେବ ବେହିସିଅର ହେଲେ ତ ବଡ଼ ମୁସ୍କିଲ୍‌ ଦେଖୁଛି । ବାସ୍ତବିକ୍‌ ହୋରେସିଓ, କାଲର ଗତି ଅତି ବିଚିତ୍ର : କେତେଦିନ ବର୍ଷ ହେଲା ମୁଁ ଲକ୍ଷ୍ୟ କରୁଛି ଲୋକଗୁଡ଼ାକ ଏତେ ଚାଲାକ୍‌ ହେଲେଣି ଯେ କୃଷକ ଓ ସମ୍ଭ୍ରାନ୍ତ ବ୍ୟକ୍ତି ମଧ୍ୟରେ ଅଜ ବେଶି କିଛି ତାରତମ୍ୟ ନାହିଁ—ଚଷାର ବୁଢ଼ା ଅଙ୍ଗୁଳି ଅଗ ଅସି ସାଆନ୍ତଙ୍କର ଫାଟୁଆ ଗୋଇଠିରେ ବାଜିଲାଣି । ତୁ କେତେଦିନ ହେଲା କବର ଖୋଳା କାମ କରୁଚୁ ?

ପ୍ରଃ କୃ—ଅପଣ ଯଦି ଦିନ ବାର ଜାଣିବାକୁ ଚାହାନ୍ତି, ତା'ହେଲେ ଯେଉଁ ଦିନ ଅମ୍ଭମାନଙ୍କର ଭୂତପୂର୍ବ ରାଜା ହ୍ୟାମ୍‌ଲେଟ୍‌ ଫୋର୍ଟିନ୍‌ବ୍ରାସଙ୍କୁ ପରାସ୍ତ କରିଥିଲେ ସେହି ଦିନୁଁ ମୁଁ ଏ କାମ କରୁଛି ।

ହ୍ୟାମ୍—ସେ ଅଞ୍ଚଳ କେତେ ଦିନ ହେଲା ?

ପ୍ରଃ କୃ—ଆପଣ କ'ଣ ତାହା କହି ପାରିବେ ନାହିଁ ? ଯେ କୌଣସି ଗଣ୍ଡ ମୂର୍ଖକୁ ପଚାରିଲେ ସେ ସେ କହିଦେବ : ସେହି ଦିନ ଯୁବରାଜ ହ୍ୟାମ୍‌ଲେଟ୍ ଜନ୍ମ ଗ୍ରହଣ କରିଥିଲେ—ସେ ବର୍ତ୍ତମାନ ପାଗଳ, ଇଂଲଣ୍ଡକୁ ପଠା ହୋଇଛନ୍ତି ।

ହ୍ୟାମ୍—ହିଁ, ହିଁ, ତାହାଙ୍କୁ ସେ ଇଂଲଣ୍ଡକୁ ପଠାହୋଇଛନ୍ତି ?

ପ୍ରଃ କୃ—ସେ ପାଗଳ ହୋଇଥିଲେ ବୋଲି; ସେ ସେଠିକି ଗଲେ ତାଙ୍କର ମତି ସୁଧୁରି ଯିବ, ଅଥବା ଯଦିବା ଭଲ ନ ହୁଏ, ତା' ହେଲେ ବିଶେଷ କିଛି ଯାଏ ନାହିଁ ।

ହ୍ୟାମ୍—କାହିଁକି ?

ପ୍ରଃ କୃ—ସେଠି ତାହା ଜଣା ପଡ଼ିବନାହିଁ, ସେଠାକାର ଲୋକମାନେ ସମସ୍ତେ ତାଙ୍କରି ପରି ପାଗଳ ।

ହ୍ୟାମ୍—ସେ କିପରି ପାଗଳ ହେଲେ ?

ପ୍ରଃ କୃ—ଲୋକେ କହୁଛନ୍ତି, ବଡ଼ ଅଦ୍ଭୁତ ଭାବରେ ।

ହ୍ୟାମ୍—କିପରି ଅଦ୍ଭୁତ ଭାବରେ ?

ପ୍ରଃ କୃ—ବଡ଼ ଅଦ୍ଭୁତ ଭାବରେ ତାଙ୍କର ମତି ବିଗିଡ଼ି ଗଲା ।..

ହ୍ୟାମ୍—କେଉଁଠି ?

ପ୍ରଃ କୃ—ଏହି ଡେନ୍‌ମାର୍କରେ: ମୁଁ ଏଇଠି ପିଲାରୁ ବୁଢ଼ା ହେଲି, ଆଜିକି ତିରିଶ ବର୍ଷ ହେଲା କବର ଖୋଳା କାମ କରୁଛି ।

ହ୍ୟାମ୍—ମଣିଷ କେତେ ଦିନ ମାଟି ଭିତରେ ରହିଲେ ପଚେ ?

ପ୍ରଃ କୃ—ଯଦି ସେ ମରିବା ଆଗରୁ ବାସ୍ତବିକ୍ ପଚି ନ ଥାଏ—ଆଜିକାଲି ଏପରି ଅନେକ ବସନ୍ତ ମଡ଼ା ଆସୁଛନ୍ତି, ଯେଉଁ ଗୁଡ଼ାକୁ ଧରି କବରରେ ଶୁଆଇବା ମୁସ୍କିଲ—ତା' ହେଲେ ସେ ଆପଣଙ୍କର ଆଠ, ନଅବର୍ଷ ମାଟିଭିତରେ ରହି ପାରିବ; ମୋଚି ହୋଇଥିଲେ ପୂରା ନଅବର୍ଷ।

ହ୍ୟାମ୍—କାହିଁକି ତାର ବେଶି ସମୟ ଲାଗିବ ?

ପ୍ରଃ କୃ—ତାର ବ୍ୟବସାୟ ତାର ଚମଡ଼ାକୁ ଏପରି ମଜବୁତ୍ କରିଦିଏ ଯେ ତା ଭିତରେ ସହଜରେ ପାଣି ପଶି ପାରେ ନାହିଁ—ଆପଣଙ୍କର ଜଳ ଆପଣଙ୍କ ଶବକୁ ବେଶ ଖରାପ ବଗାଡ଼ି କରିଦିଏ। ଏଇ ଯେଉଁ କପାଳୀ ଦେଖୁଛନ୍ତି, ଅଢ଼େଇ ତେଇଶ ବର୍ଷ ହେଲା ମାଟି ଭିତରେ ଅଛି।

ହ୍ୟାମ୍—ଏଟା କାହାର ?

ପ୍ରଃ କୃ—ହୋ ଗୋଟାଏ ପାଗଳର; କାହାର ବୋଲି ଆପଣଙ୍କର ଅନୁମାନ ହୁଏ ?

ହ୍ୟାମ୍—ମୁଁ କହି ପାରିବି ନାହିଁ।

ପ୍ରଃ କୃ—ସେ କୁଲାଙ୍ଗାରଟା ଏପରି ପାଜି ଥିଲା ଯେ ଦିନେ ମୋ ମୁଣ୍ଡରେ ଥୋଡ଼ାଏ ସରାପ ଅଜାଡ଼ି ଦେଇଥିଲା। ଏଟା ସେହି ରାଜାଙ୍କର ଭଣ୍ଡ ଜଳ୍ପର କପାଳୀ।

ହ୍ୟାମ୍—ଏହି ?

ପ୍ରଃ କୃ—ହଁ, ଏହି।

ହ୍ୟାମ୍—ଦେଖେଁ। ( କପାଳୀ ଗ୍ରହଣ ) ହାୟ, ହତଭାଗ୍ୟ ଜର୍ଣ୍ଣ ! ହୋରାସିଓ, ମୁଁ ତାହାକୁ ଜାଣେ—ସେ ଜଣେ ରସସାଗର

ଥିଲି ଏବଂ ତାହାର ଅଦ୍ଭୁତ ରଚନାଶକ୍ତି ଥିଲା; ସେ ମୋତେ କେତେ ଥର ପିଠିରେ 'ନାକ' କରି ବୁଲେଇଛି, ବର୍ତ୍ତମାନ ତାହା ଭାବିଲେ ମନରେ ଘୃଣା ଜାତ ହେଉଛି, ଭିତରୁ କଣ ଗୋଟାଏ ଚଣ୍ଡି ଖାଲିକୁ ଉଠି ଆସୁଛି । ଏଇଠି ତାର ଓଠ ଦୁଇଟି ଝୁଲି ଥିଲା, କେତେ ଥର ଯେ ମୁଁ ଚୁମ୍ବନ କରିଛି ତାର ଇୟତ୍ତା ନାହିଁ । ତୋର ସେ ପରିହାସ କାହିଁ ? କାହିଁ ତୋର ସେ ନୃତ୍ୟ ? ତୋର ସେ ଗୀତ ? ତୋର ସେ କୌତୁକ କଥା, ଯାହା ହାସ୍ୟର ତୁମୁଳ ନିନାଦ ସୃଷ୍ଟି କରି ଭୋଜନାଗାରକୁ ଶବ୍ଦିତ କରୁଥିଲା ? ଆଜି କଣ ବିଦ୍ରୂପ କରି ଥରେ ସୁଦ୍ଧା ତୋର ଦନ୍ତ ରୁଚି ଦେଖାଇବୁ ନାହିଁ ? କାହିଁକି ତୁ ଅଛି ଏଡ଼େ ବିଷଣ୍ଣ ? ଯା, ତୁ ମୋର ପ୍ରଣୟିନୀର କକ୍ଷକୁ ଯାଇ ତାକୁ କହ, ସେ ଅଙ୍ଗୁଳିଏ ବହଳରେ କୁଙ୍କୁମ-ପଙ୍କ ବିଲେପନ କଲେ ମଧ୍ୟ ତାର ମୁଖଶ୍ରୀ ଏହି ଦଶା ପ୍ରାପ୍ତ ହେବ । ତା'ର ଅସାରତା ତାକୁ ବୁଝାଇଦେ । ହୋରେସିଓ, ମୋତେ ଅନୁଗ୍ରହ କରି ଗୋଟାଏ କଥା କହ ।

ହୋରେ— କଣ କହିବ ଯୁବରାଜ ?

ହ୍ୟାମ୍—ତୁମ୍ଭେ କଣ ମନେ କରୁଛ ଅଲେକ୍‌ଜାଣ୍ଡର୍ ମାଟିରେ ପୋତା ହେବା ପରେ ଏହି ଦଶା ପ୍ରାପ୍ତ ହୋଇଥିଲେ ?

ହୋରେ—ହଁ ଠିକ୍ ଏହି ରକମ ।

ହ୍ୟାମ୍—ଏହି ରକମ ଗନ୍ଧ ବାହାରୁ ଥିଲା ? ଉସ୍ !

( କରୋଟିକୁ ତଳେ ରଖି ଦେଲେ )

ହୋରେ—ହଁ, ଠିକ୍ ଏହି ରକମ ଯୁବରାଜ ।

ହ୍ୟାମ୍—ହୋରେସିଓ, ଆମ୍ଭମାନଙ୍କ ପରିଣାମ କି ଜଘନ୍ୟ ! ଅଛା ! ଆମ୍ଭେମାନେ ଯଦି କଳ୍ପନା ବଳରେ ଅଲେକ୍‌ଜାଣ୍ଡରଙ୍କ ମହତ୍ ଧୂଳିକଣାର ଅନୁସନ୍ଧାନ କରୁଁ ତା' ହେଲେ କ'ଣ କୌଣସି ପିପାର ଛିଦ୍ର ମୁଖରେ ତାର ଅସ୍ତିତ୍ୱ ପାଇବା ନାହିଁ ?

ହୋରେ—ଆମ୍ଭମାନଙ୍କର ସେ ପ୍ରୟାସ ନିଷ୍ଫଳ ହେବ ।

ହ୍ୟାମ୍—ନାଁ, ଆଦୌ ନିଷ୍ଫଳ ହେବ ନାହିଁ, ତେବେ ଆମ୍ଭମାନଙ୍କୁ ବିଚାର ପୂର୍ବକ ଅଗ୍ରସର ହେବାକୁ ପଡ଼ିବ ଯଥା :—ଅଲେକ୍‌ଜାଣ୍ଡର୍ ମଲେ, ଅଲେକ୍‌ଜାଣ୍ଡର୍ ମାଟିରେ ପୋତା ହେଲେ, ଅଲେକ୍‌ଜାଣ୍ଡରଙ୍କର ଶରୀର ଧୂଳିରେ ପରିଣତ ହେଲା, ଧୂଳି ଓ ମାଟି ଅଭିନ୍ନ; ମାଟିରେ ବାଲି ମିଶାଇ ଆମ୍ଭେମାନେ ସାରମାଟି ପ୍ରସ୍ତୁତ କରୁଁ; ସେ ବର୍ତ୍ତମାନ ସେହି ସାରମାଟିରେ ପରିଣତ ହେଲେ; ତଦ୍ୱାରା କ'ଣ ଗୋଟିଏ ପିଆର ମୁହଁ ବନ୍ଦ କରାଯାଇ ପାରେ ନାଁ ?

(ଅଛି) ସିଜାରର କିବା ପରିଣତି !
(ଯାର) ଅଙ୍ଗୁଳି ହେଲନେ, ଟଳୁଥିଲା ମହୀ
ହେଲା ତାର ଅଛି କିବା ଗତି !
(ଅହୋ) ପରିଣତ ଅଛି ସେ ମାଟିରେ
(ଅସେ) ଭିତ୍ତି-ରନ୍ଧ୍ରେ ଯହିଁ, ଶୀତଳ ପବନ
ଲେଡ଼ା ସିନା ତାହା ରୁନ୍ଧିବାରେ ।

ଚୁପ୍ କର, ଚୁପ୍ କର; ରାଜା ଟିକିଏ ଅନ୍ତରାଳକୁ ଯିବା : ରାଜା ଆସୁଅଛନ୍ତି ।

( ଧର୍ମଯାଜକ ପ୍ରଭୃତିଙ୍କର ସମାରୋହ ସହିତ ପ୍ରବେଶ, ଓଫିଲିଆର ଶବ, ତତ୍ପଶ୍ଚାତ୍ ଲାର୍ଟିସ୍ ଓ ଶୋକଚିହ୍ନଧାରୀ ବ୍ୟକ୍ତିଗଣ; ରାଜା, ରାଣୀ ଓ ପାରିଷଦବର୍ଗ )

ରାଣୀ, ସଭାସଦଗଣ କରୁଛନ୍ତି ଯାହା
କାହାର ପଶ୍ଚାତେ ? ନୁହେଁ ତ ଏହା ପୂର୍ଣ୍ଣାଙ୍ଗ
ଅନ୍ତ୍ୟେଷ୍ଟି; ହେଉଛି ପ୍ରତ୍ୟୟ ଯେତେ ସ୍ୱହସ୍ତେ
ଏ ଶବ, ଆପଣା ପ୍ରାଣ କରିଛି ବିନଷ୍ଟ,
କୁଳ-ବଂଶୋଦ୍ଭୂତ ପୁଣି ହୋଇଛି ସୂଚିତ
ଦେଖିବା ଅନ୍ତ୍ୟେଷ୍ଟି କ୍ରିୟା ରହି ଅଲକ୍ଷିତେ ।

( ହୋରାସିଓର ସହିତ ଅନ୍ତରାଳକୁ ଗମନ )

ଲାର୍ଟିସ୍—କେଉଁ କ୍ରିୟା ରହିଲା ଅପୂର୍ଣ୍ଣ ?

ହ୍ୟାମ୍—( ଅନ୍ତରାଳରୁ ) ଏତ ଲାର୍ଟିସ୍,
ଅତି ଉଦାର ଯୁବକ; କର ନିରୀକ୍ଷଣ ।

ଲାର୍ଟିସ୍—କହ ଆଉ କେଉଁ କ୍ରିୟା ରହିଲା ଅପୂର୍ଣ୍ଣ ?

ପ୍ରଥମ ଯାଜକ—କରିଛୁଁ ଅନ୍ତ୍ୟେଷ୍ଟି କ୍ରିୟା ପାଳି ରାଜ ଆଜ୍ଞା,
ନଥିବା ଏ ଶବ ଅସଂସ୍କୃତ ଦେଶେ ଶଯ୍ୟା
ଲଭନ୍ତା ନିଶ୍ଚୟ; ବିଗ୍ରର ଦିବସାବଧି
ରହିଥାନ୍ତା ପଡ଼ି ସେହିଭାବେ, ଅନିଶ୍ଚିତ
ଯେଣୁ ତାର ମୃତ୍ୟୁର କାରଣ; ରାଜ ଆଜ୍ଞା
ଶିରୋଧାର୍ଯ୍ୟ, ନଥିବା କବରେ ତାର ଶାନ୍ତ-
ବାଧାଯୁକ୍ତ ଭୀଷଣ ପ୍ରସ୍ତର ସ୍ଥଳେ ହୋଇଥାନ୍ତା

ବୃକ୍ଷି ପାଷାଣ, ଖର୍ପର, ସଙ୍ଗ ଅନୁଗ୍ରହେ
ଲଭିଛି ସମାଧି, ଘଣ୍ଟା, କୁମାରୀର ଶେଷେ-
ଭୂଷା, ପୁଷ୍ପ ଉପହାର ।

ଲେର୍ଟିସ୍— ହେବ ନାହିଁ ତେବେ
ଅନ୍ୟ କିଛି କ୍ରିୟା ?

ପ୍ର : ଯାଜକ— ଅନ୍ୟ କିଛି କ୍ରିୟା !
ଶାନ୍ତ ସ୍ତୋତ୍ର କଲେ ଗାନ ଅବା ଅନ୍ୟ ଶାନ୍ତ-
କ୍ରିୟା ହେଲେ ସମ୍ପାଦିତ, ହେବେ ଜନ ଚିତ୍ତେ
ଘୃଣା ଜାତ ପ୍ରେତ-କ୍ରିୟା ପ୍ରତି; ହେବେ ଦବେ,
ପ୍ରେତ-ଆତ୍ମା-ବର୍ଗ ରୁଷ୍ଟ ଦେଖି ଏ ଅନୀତି ।

ଲେର୍ଟିସ୍— କର ତେବେ ଶବ ତାର ଶାୟିତ କବରେ,
ଅନାଘ୍ରାତ ଏହି ପୁଷ୍ପ ମଧୁ-ପୁଷ୍ପ ରୂପେ
ହେଉ ପରିଣତ । ଜାଣିଥା ଯାଜକ ମୂଢ଼,
ଜ୍ୱଳନ୍ତ-ନରକ-କୁଣ୍ଡେ ପଡ଼ି ଆର୍ତ୍ତନାଦ
କରୁଥିବୁ ଯେବେ, ବରଷିବ ଶାନ୍ତ-ବାରି,
ଭଗ୍ନୀ ମୋର ଦିବ୍ୟଧାମୁଁ ଦେବ-ଦୂତୀ-ବେଶେ ।

ହ୍ୟାମ୍—ଅହୋ, କି ଅନର୍ଥ ! ଏ କି ସୁରୁ ଓଫିଲିଆ !

ରାଣୀ—ସୁବେ ମଧୁ ମଧୁ ସମାଗମେ : ବିଦାୟ !

( ପୁଷ୍ପ ବିକିରଣ )

ଭାବିଥିଲି, ଲୋ କିଶୋରି, ପୁତ୍ର-ବଧୂ ରୂପେ
ବରି ତୋତେ କରିଥାନ୍ତି ବାସର-ଶୟନ
ସଜ୍ଜିତ ସ୍ୱହସ୍ତେ, ହା ଦୈବ ଏବେ ଏ କରେ
ଢାଳି ପୁଷ୍ପ ବିକୀରିତ କବରେ ତୋହର !

ଲର୍ଟିସ୍—ପଡ଼ୁ ଅଭିଶପ୍ତ ଶିରେ ଅଶନି ତାହାର,
ଉମ୍ମିବର-ଜ୍ଞାନ-ବର୍ତ୍ତୀ ହର ଅତର୍କିତ,
କଲା ଯେଉଁ କ୍ରୂର କର୍ମ ଉମ୍ମିରେ ଅଛନ୍ତ
ତୋର ହୃଦୟ ମନ୍ଦିର । ନ କର ମୃତ୍ତିକା
ପୂର୍ଣ୍ଣ, ରହ କ୍ଷଣେ, କରିବି ମୁଁ ଆଜି ବାରେ
ବାହୁ-ପାଶେ ତାକୁ ଆଲିଙ୍ଗନ ।

(କବରର ଭିତରକୁ ଲମ୍ଫ ପ୍ରଦାନ)

କର ପୂର୍ଣ୍ଣ,
ଏବେହେ ଜୀବନ୍ତ, ମୃତ ଲଭିବ ସମାଧି;
ଢ଼ାଳ ମାଟି ସ୍ତୁପାକାରେ, ରଚ ଉଚ୍ଚ ଅଦ୍ରି,
ହିମାଦ୍ରିର ଅଭ୍ରଭେଦୀ ତୁଙ୍ଗ ଶୃଙ୍ଗ ଯେହ୍ନେ
ହେବ ଖର୍ବ ତାହାର ସମୀପେ ।

ହ୍ୟାମ୍—(ଅଗ୍ରସର ହୋଇ) କିଏ ତୁହି,
କରେ ଖର୍ବ ଶୋକ ଯାର ହିମାଦ୍ରି ଶିଖର ?
ଶୁଣି ଯାର ବିଳାପୋକ୍ତି ଚର ଗ୍ରହ ସଙ୍ଘ
ଭଜି ଅଚଳତା ନଭେ ରହିଛନ୍ତି ଡେରି
ଶ୍ରବଣ ତାଙ୍କର, ଡମରୁର ସ୍ୱନେ ଯଥା
ଢାଳ ଫଣୀ ? ଅଗତ ମୁଁ ଡେନ୍‌ମାର୍କ ନିବାସୀ
ହ୍ୟାମ୍‌ଲେଟ୍ । (କବରର ଭିତରକୁ ଲମ୍ଫ ପ୍ରଦାନ)

ଲର୍ଟିସ୍—ହେଉ ତୋର ନରକେ ନିବାସ । (ଆକ୍ରମଣ)

ହ୍ୟାମ୍—ନୁହେଁ ଏ ପ୍ରାର୍ଥନା ସମୀଚୀନ ତୋର । ଛାଡ଼
ଦେ ମୋ କଣ୍ଠ, କର ଦୂର ଅଙ୍ଗୁଳି ତୋହର;

ନୁହେଁ ମୁଁ ଅମର୍ଷୀ, କ୍ରୂର କାକୋଦର ସମ,
ମାତ୍ର ଦେବ ସମୁଚିତ ଶାସ୍ତି, କରୁ ଯେବେ
ମୂଢ଼ପରି ରୁଢ଼ ବ୍ୟବହାର । କର ମୁକ୍ତ
କର କଣ୍ଠ ମୋର ।

ରାଜା— କର ବନ୍ଦିଲ ତାହାଙ୍କୁ ।

ରାଣୀ—ହ୍ୟାମ୍‌ଲେଟ୍, ହ୍ୟାମ୍‌ଲେଟ୍ ।

ସମସ୍ତେ— ଭଦ୍ର ମହୋଦୟଗଣ—

ହୋରା—ଶାନ୍ତ ହୁଅ, ଯୁବରାଜ ।

( ଅନୁଚରମାନେ ଦୁଇଜଣଙ୍କୁ ବନ୍ଦିଲ କରିଦେଲେ ଏବଂ ସେମାନେ କବରରୁ ବାହାରି ଆସିଲେ )

ହ୍ୟାମ୍— କରିବ ମୁଁ ଏ ପ୍ରସଙ୍ଗେ ଦ୍ୱନ୍ଦ୍ୱ ତା ସହିତ,
ଥିବାଯାଏ ବିନ୍ଦୁ ମାତ୍ର ରକ୍ତ ମୋ ଶରୀରେ ।

ରାଣୀ—କହ ପୁତ୍ର କି ପ୍ରସଙ୍ଗ ?

ହ୍ୟାମ୍—ଓଫେଲିଆ ପ୍ରତି ପ୍ରେମ; ଶତ-ସହୋଦର—
ପ୍ରେମ କଲେ ଏକସ୍ଥଳେ ଠୁଳ, ନ ହେବ ତା
ସମତୁଲ ମୋ ପ୍ରେମ ସହିତ । କେଉଁ କାର୍ଯ୍ୟେ
କରିବୁ ତୋ ପ୍ରେମ ପ୍ରମାଣିତ ?

ରାଜା— ଲାଏର୍ଟିସ୍,
ହୋଇଛି ବାତୁଳ ସେତ ।

ରାଣୀ— କହୁଛି ମୁଁ ଭଲେ
ନ କର ତା ଅଙ୍ଗ ସ୍ପର୍ଶ, ଘେନ ମୋ ବଚନ ।

ହ୍ୟାମ୍—କେମନ୍ତେ କରିବୁ ତୋର ପ୍ରେମ ପ୍ରମାଣିତ ?
ଅଶ୍ରୁଧାରେ ? ଅସି ଧାରେ ? ଅନଶନେ ? ଛିରି

ବକ୍ଷଃସ୍ଥଳ ତୋର ? କର ଶୁଷ୍କ ସିନ୍ଧୁ ଗର୍ଭ
ଯଥା କୂର୍ମଯୋନ ? କର କୂର୍ମୀର ଲକ୍ଷଣ ?
କରିବ ମୁଁ ତାହା । କରିବୁ ତୁ ଲଘୁ ମୋତେ
ସେଦନର ସେଲେ ? ଅନତ ବଦନ ମୋର
ଦେଇ ଲଙ୍ଫ କବରେ ତାହାର ? ଲଭିବୁ ତୁ
ଜୀବନେ ସମାଧି ତା ସହ ? ଅମ୍ଳାନ ଅସେ୍ୟ
ତାହା ତରିବ ବରଣ; କରୁଚୁ ତୁ ବୃଥା
ଅଦ୍ରିର ଅଟୋପ, ଲକ୍ଷ ଲକ୍ଷ ସ୍ତର ମାଟି
ଅଜାଡ଼ ଉପରେ, ରଚନ୍ତୁ ସେ ତୁଙ୍ଗ ସ୍ତୁପ,
ଭେଦ ତା ଶେଖର ଉଠୁ ଅମ୍ବର ପ୍ରଦେଶ,
କରୁ ଦଗ୍ଧ କୂଟ ତାର ଖମଣି-ଗଭସ୍ତି (୧)
ହେଉ ମେଘାସନ ଖର୍ବାକୃତି କଣ ସମ (୨)
ସମୀପେ ତାହାର; ଅବା ଯଦ ଏହା ତୋର
ମାତ୍ର ଅସ୍ଫାଳନ, ମୁହିଁ ମଧ୍ୟ ତୋହ ପରି
ଦକ୍ଷ ଅସ୍ଫାଳନେ ।

ରାଣୀ— ଏହା ପୂର୍ଣ୍ଣ ବାହୁଲତା,
ଏହିସ୍ତବେ ଝଣେ କର ତର୍ଜ୍ଜନ ଗର୍ଜ୍ଜନ,
ଲଜ୍ଜା-ନମ୍ରଣିରେ ହେବ ଶାନ୍ତ ପୁଣି, ଯଥା
କପୋତୀ କୁଳାୟେ ରହେ ହୋଇ ମୌନସ୍ତବେ,
ପ୍ରସ୍ଫୁଟିତ ସ୍ୱର୍ଣ୍ଣ କାନ୍ତ ଶାବକ ଯୁଗଳେ ।

---

୧ । ଖମଣି-ଗଭସ୍ତି—ସୂର୍ଯ୍ୟ କରଣ ।

୨ । କଣ—ଶସ୍ୟକଣ ।

ହ୍ୟାମ୍‌— ଶୁଣ, ଭଦ୍ର, ବାକ୍ୟ ମୋର; କହ କି କାରଣେ
କଲ ତୁମ୍ଭେ ମୋହ ପ୍ରତି ରୂଢ଼ ବ୍ୟବହାର ?
ଥିଲ ସଦା ସ୍ନେହ ପାଶେ ଅବଦ୍ଧ ମୋ ସଙ୍ଗ;
କି ହେବ ତା ସ୍ମରି ଏବେ ! ଅଲଙ୍ଘ୍ୟ ବିଧିର
ବିଧି ବଳବତ ଜଗତେ । (ପ୍ରସ୍ଥାନ)

ରାଜା— ହୋରାସିଓ, ଯେନ
ମୋ ମିନତି, ଯାଅ ପଶ୍ଚାତେ ତାହାର ।

(ହୋରାସିଓର ପ୍ରସ୍ଥାନ)

(ଲାର୍ଟିସ୍‌ର ପ୍ରତି) ତୁମ୍ଭେ
ରହ ଧୈର୍ଯ୍ୟ ଧରି, କହିଛି ତୁମ୍ଭଙ୍କୁ ଯାହା
ଗତ ରଜନୀରେ, ରଖିଥାଅ ମନେ, ହେବ
ଶୀଘ୍ର ମୀମାଂସା ତାହାର । ପ୍ରିୟେ ଜାର୍ଟ୍ରୁଡ୍‌,
ତନୟର ଗତିବିଧି ରଖ ଦୃଷ୍ଟିପଥେ ।
ତୋଳିବ ଜୀବନ୍ତ-ସ୍ତମ୍ଭ ଏହି ସମାଧିରେ
ହେବ ଅଶ୍ରୁ ଚିନ୍ତା ଦୂର, ଶାନ୍ତି ପ୍ରତିଷ୍ଠିତ,
ଧୀରେ ହେବା ଅଗ୍ରସର ସ୍ୱକାର୍ଯ୍ୟ ସାଧନେ ।

(ସମସ୍ତଙ୍କର ପ୍ରସ୍ଥାନ)



## ଦ୍ୱିତୀୟ ଦୃଶ୍ୟ

[ ଦୁର୍ଗ ମଧ୍ୟସ୍ଥ ସଭାଗୃହ ]

( ହ୍ୟାମ୍‌ଲେଟ୍ ଓ ହୋରସିଓର ପ୍ରବେଶ )

ହ୍ୟାମ୍—କହିଲି ବୃତ୍ତାନ୍ତ ଏହା, ଘଟିଲା ତପୂରେ
ଯାହା ଶୁଣ ଅବହିତେ, ଅଛି ତ ସ୍ମରଣ
ତବ ସମସ୍ତ ବୃତ୍ତାନ୍ତ ?

ହୋର—                      ଭୁଲିବ କେମନ୍ତେ !

ହ୍ୟାମ୍—ହେଲା ମନୋବିକ୍ଷୋଭ ଜାତ ଏଭଳି ବିପ୍ଳବ,
ଶୟନ-ଦାୟିନୀ ନିଦ୍ରା ନ ପାରିଲା ପଶି
ଚକ୍ଷୁ କକ୍ଷେ ମମ, କେମନ୍ତେ ବର୍ଣ୍ଣିବି ମୋର
ସେ କାଳ ଅବସ୍ଥା, ଯଥା ପୋତେ ନିଗଡ଼ିତ
ବିଦ୍ରୋହୀ ନାବିକ ହୁଏ ସତତ ଅସ୍ଥିର,
ତହୁଁ ବଳି ଦଶା ମୋର ହେଲା ଶୋଚନୀୟ !
ଉତ୍ତେଜନା ବଶେ ମୁହିଁ—ଧନ୍ୟ ଉତ୍ତେଜନା,
ତାର କ୍ଷଣିକ ଚମକ, କ୍ଷଣପ୍ରଭା ସମ
ଦଏ ବେଳେ ବେଳେ ମାର୍ଗ ଦରଶାଇ, ଯହିଁ
ଧୀର-ବୁଦ୍ଧି-ସ୍ନିଗ୍ଧ-କର ନ ପାରେ ପ୍ରବେଶି;
ଦୈବାଧୀନ କର୍ମଫଳ ଜାଣ ଏ ଜଗତେ,
ମନ୍ଦ ମତି ନର ତାର କ୍ଷୁଦ୍ର ଜ୍ଞାନ ବଳେ
ରଚେ ଯେଉଁ କର୍ମ-ମାଳା, ହେଲେ ହେଁ ତ୍ରୁଟିତ,

ସୌରଭବସ୍ଥାନ, ବର୍ଣ୍ଣ ମାଳାକାର ତାହୁ
ବଚନ କୌଶଳ ବଳରେ ଶେଷେ ରମଣୀୟ,
ପରିମଳମୟ—

ହୋରା—ଅତି ସତ୍ୟ ଏ ବଚନ ।

ହ୍ୟାମ୍—ହେଲି କକ୍ଷୁ ବହିର୍ଗତ, ଅବରି ମୋ ଗାତ୍ର
ନାବିକର ପରିଚ୍ଛଦେ, ଘନ ଅନ୍ଧକାରେ
ଖୋଜିଲି ମୁଁ ତାଙ୍କୁ ହସ୍ତ ବୁଲାଇ ଚୌଦିଗେ,
ଲଭିଲି ସନ୍ଧାନ, ଦୈବକ୍ରମେ ହସ୍ତଗତ
ହେଲା ସେ ପୁଳିନ୍ଦା, ଆସିଲି ମୁଁ ଫେରି ତହୁଁ
କକ୍ଷେ ମୋର, ଅଶଙ୍କିତେ ଫେଡ଼ିଲି ସେ ମୁଦ
ଲଙ୍ଘି ମର୍ଯ୍ୟାଦାର ସୀମା, ଦେଖିଲି ହେ ବନ୍ଧୋ,
ଛି. ଛି, ନୃପତି ଶଠତା । ବହନ୍ତି ଆଦେଶ
ସୁସ୍ପଷ୍ଟ ବଚନେ, ରାଜ୍ୟର କଲ୍ୟାଣ ଅତି,
କେତେ କୂଟ ତର୍କେ ଅହୋ କରି ସମର୍ଥନ
ତାର ସ୍ଥାପଣ ନଦେଶ; ଲେଖିଛି ସେ ତେଲ-
ପାପ୍ପିକା, ମହ୍ଲୁଣ, ଭୂତ, ପ୍ରେତ କେତେ, ଥିଲେ
ମୁଁ ଜୀବନ୍ତ, ହେବେ ଜାତ ଶତ୍ରୁ ମୋହର,
ପତ୍ର ପ୍ରାପ୍ତି ମାତ୍ରେ ତେଣୁ ଇଂଲଣ୍ଡ-ନୃପତି
ଅବିଳମ୍ବେ ଶିର ମୋର କରିବେ ବିଚ୍ଛିନ୍ନ ।

ହୋରା—ସମ୍ଭବ କି ଏହା ?

ହ୍ୟାମ୍—                ଦେଖ ଏହି ରାଜାଦେଶ,
ଅବସର ବୁଝି ଏହା କରିବ ପଠନ ।
ଶୁଣିବ କି ଏବେ ତହୁଁ କରିଲି ମୁଁ କିସ ?

ହୋର—କହ ଦୟା ବହୁ ।

ହ୍ୟାମ୍—                    କୁହ ତବେ ଏହୁ ଭାବେ
ହୋଇ ପରବୃତ—ଅଭିନୟ ପ୍ରସ୍ତାବନା,
ମନ୍ତ୍ରିଷ୍ଠ ସମୀପେ ମୁହିଁ କରିବା ପୂର୍ବରୁ
ଅଗତ, ହେଲେ ସେ ଅବତୀର୍ଣ୍ଣ ରଙ୍ଗମଞ୍ଚେ—
ହେଲି ସମାସୀନ, କଲି ଉଦ୍ଭାବନ ଭବ
ନୂତନ ଆଦେଶ, ଲେଖିଲି ବିଶଦାକ୍ଷରେ,
ଥିଲେ ଏ ଧାରଣା ଦିନେ ବିଶଦ ଲେଖନ
(୧) ବର୍ଣ୍ଣିକର କାର୍ଯ୍ୟ ନୁହେଁ ବ୍ୟବହର୍ତ୍ତାଙ୍କ ବୃତ୍ତି (୨)
କରିଥିଲି ଚେଷ୍ଟା ବହୁ, ଦେବାକୁ ସେ ଶିକ୍ଷା
ପୋଛି ସ୍ମୃତି ପଟୁ, କିନ୍ତୁ ହେଲେ ଏ କାଳେ, ହେ
ପ୍ରିୟବର, ପ୍ରଧାନ ସହାୟ; ଶୁଣିବ କି
ସଂକ୍ଷେପେ ଲେଖିଲି ମୁଁ କିସ ?

ହୋର—                    ହିଁ ଯୁବରାଜ ।

ହ୍ୟାମ୍—ଲେଖିଲି ଆଗ୍ରହ ପୂର୍ଣ୍ଣ ତେଜସ୍କର ବାକ୍ୟେ
ରାଜ ଆଜ୍ଞା—ଯେଣୁ ବିଶ୍ୱସ୍ତ କରଦ ରାଜ୍ୟ
ଇଂଲଣ୍ଡ ତାହାର, ପରସ୍ପର ମଧ୍ୟେ ଯେଣୁ
ବାଞ୍ଛନୀୟ ହେବା ପ୍ରେମ ପ୍ରୀତିର ବନ୍ଧନ
ଦୃଢ଼ତର, ଶାନ୍ତି ଶସ୍ୟ-ହାର ତାର ସିନ୍ଧୁ
ଗଳଦେଶେ, ଥିବା ବର୍ତ୍ତିମାନ ସଖ୍ୟତାର

---

(୧) ବର୍ଣ୍ଣିକ—କିରାଣି ।
(୨) ବ୍ୟବହର୍ତ୍ତା—ହାକିମ ।

ସଂଯୋଜକ ରୂପେ ଯେଣୁ ସଦା ସ୍ପୃହଣୀୟ,
ଏହି ଭାବେ ବହୁ 'ଯେଣୁ' କର ଅରୋପିତ,
ଲେଖିଲି ଏ ପତ୍ର ହେବା ମାତ୍ର ହସ୍ତଗତ,
ବୃଥା ତର୍କେ କାଳକ୍ଷୟ ନ କର କମେଷ୍ଟେ,
ଯେନତେବ ସେ ଦୂତଦ୍ୱୟ ପ୍ରାଣ ଅଚମ୍ବିତେ,
ପାପଶାନ୍ତ-ଅବସର ନ ଦେଇ ତାହାଙ୍କୁ ।

ହୋରା—କଲ ତାକୁ କି ରୂପେ ମୁଦ୍ରିତ ?

ହ୍ୟାମ୍—                    ହେଲା ଦୈବ
ସହାୟ ତହିଁରେ, ଥିଲା ସନ୍ନିକଟେ ମୋର
ପିତାଙ୍କର ନାମାଙ୍କିତ ମୁଦ୍ରା, ରାଜ ମୁଦ୍ରା
ଅନୁରୂପ, ପୂର୍ବପତ୍ର ଅନୁଯାୟୀ ସେହି
ବର୍ଣ୍ଣବୃତ ମୋଡ଼ି ଦୁଇ ପ୍ରସ୍ଥ, ବସାଇଲି (୧)
ରାଜାଙ୍କ ସ୍ୱାକ୍ଷର, କରି ମୁଦ୍ରାଙ୍କିତ ତହିଁ
ନବପଦେ ଯଥାସ୍ଥାନେ ରଖିଲି ତାହାକୁ,
ନ ପାରିଲେ ଜାଣି ସେହୁ; ତହିଁ ପରଦିନ
ହେଲା ଜଳଯୁଦ୍ଧ, ଘଟିଲା ତତ୍ପରେ ଯାହା
ଅଛ ସୁବିଦିତ ।

ହୋରା—                    ଗିଲ୍ଡେନ୍‌ଷ୍ଟାର୍ଣ୍ଣ୍, ରୋଜେନ୍‌କ୍ରାନ୍ଜ୍
ତେବେ ଯାଅ ଯମାଳୟେ ।

ହ୍ୟାମ—                    ଦେଖ ବନ୍ଧୁବର,
ଥିଲେ ସେ ସାଗ୍ରହେ ବ୍ରତୀ ହୁହେଁ ଏ କର୍ମେ.

(୧) ବର୍ଣ୍ଣବୃତ—ଲଫା ।

ନାହିଁ ଥିଲେ ଶୋଚନା ମୋ ମରଣ ତାଙ୍କ ପାଇଁ,
ଛେଦିଲେ ସ୍ୱହସ୍ତେ ସେହୁ ରସନା ତାଙ୍କର,
ଆପଣା ବଡ଼ପଣେ ଆପେ ହେଲେ ସେ ଲଜ୍ଜିତ;
ଦନ୍ତାବଳେ, ଦନ୍ତାବଳେ ହୁଏ ଯେବେ ଯୁଦ୍ଧ,
କ୍ଷୁଦ୍ର ମୂଷା ଆସି ଯଦି ପଶେ ମଧ୍ୟସ୍ଥଳେ
ମୃତ୍ୟୁ ଅନିବାର୍ଯ୍ୟ ତାର ।

ହୋରା— ଅହୋ, କି ଭୁଲ ଏ
ରାଜା !

ହ୍ୟାମ୍—କହ ବନ୍ଧୋ ନୁହେଁ କି କର୍ତ୍ତବ୍ୟ ମୋର,
କରିଛି ଯେ ଜନକଙ୍କୁ ହତ, ଜନନୀର
ସତୀତ୍ୱ ହରଣ, ରାଜ୍ୟ ପ୍ରାପ୍ତି ଆଶା ମୋର
ଅଙ୍କୁରେ ବିନାଶ, ବସାଇଛି ଜାଲ ଯେହୁ
କରିବାକୁ କରଗତ ପ୍ରାଣମୀନ ମୋର,
ନୁହେଁ କି ଉଚିତ ତାକୁ ଦେବା ପ୍ରତିଦାନ
ଏହି ହସ୍ତେ ? ନୁହେଁ କି ଏ ଦୂଷଣୀୟ, ଦେବା
ଅବସର ଏହି ନର-କୁଳ-ବିସ୍ଫୋଟିରେ
କରିବାକୁ ସମାଜର ଜୀବନ-ପ୍ରବାହ
ଜର୍ଜ୍ଜରିତ ବିଷେ ?

ହୋରା— ଲଭିବ ଶୀଘ୍ର ଖବର
ଇଂଲଣ୍ଡ ସେ କର୍ଣ୍ଣେ ଯାହା ଘଟିବ ସେ ଠାବେ ।

ହ୍ୟାମ୍—ଲଭିବ ସେ ବାର୍ତ୍ତା ଶୀଘ୍ର, ମାତ୍ର ଅନ୍ତର୍ବର୍ତ୍ତି-
କାଳ ଅଛି ମୋ ଅଧିକାରେ, ଲବମାତ୍ର ସ୍ଥାୟୀ

ମନୁଷ୍ୟ-ଜୀବନ । କିନ୍ତୁ ପ୍ରିୟ ହୋରେସିଓ,
ଦୁଃଖିତ ମୁଁ ଅତି, ଯେଣୁ ଅଶିଷ୍ଟ ଆଚାର,
ଲଏରଟିସ୍ ଜନ ସନ୍ମୁଖେ କଲି ପ୍ରଦର୍ଶନ
ଲଏଟିସର ପ୍ରତି, ଶୋକ ପ୍ରତିବିମ୍ବ ମୋର
ଦେଖୁଛି ଦର୍ଶାଇ ତାର ଦୁଃଖ-ପ୍ରତିଚ୍ଛାୟା;
ମାଗିବି ବିନୟେ କ୍ଷମା, ମୈତ୍ରୀ-ସ୍ନେହେ ପୁଣି
ହେବି ମୁଁ ଆବଦ୍ଧ ତା ସହ; ବସ୍ତୁତଃ ବନ୍ଧୋ
ଶୋକ-ଆସ୍ଫାଳନ ତାର କଲା ପ୍ରଜ୍ୱଳିତ
କୋପ-ବହ୍ନି ।

ହୋରେ— ଦେଖ କିଏ ଆସୁଛି ଏ ଠାବେ ।

( ଅସ୍ରିକ୍‌ର ପ୍ରବେଶ )

ଅସ୍ରିକ୍—ଯୁବରାଜ, ତୁମ୍ଭେ କୁଶଳରେ ଡେନ୍‌ମାର୍କକୁ ଫେରି ଆସିଲ; ମୁଁ ତୁମ୍ଭଙ୍କୁ ଅଭ୍ୟର୍ଥନା ଜଣାଇବାକୁ ଆସିଅଛି ।

ହ୍ୟାମ୍—ମହାଶୟ, ସେଥିପାଇଁ ମୁଁ ତୁମ୍ଭଙ୍କୁ ଧନ୍ୟବାଦ ଦେଉଛି । ଏହି ଜଳ-ମକ୍ଷିକାକୁ ଜାଣ ?

ଅସ୍ରି—ନାଁ, ଯୁବରାଜ ।

ହ୍ୟାମ୍—ଭଲ କରିଛ, କାରଣ ଏହା ବିଷୟରେ ଜାଣିବା ଗୋଟାଏ ଦୋଷର କଥା । ଏହାର ପ୍ରଭୂତ ଭୂ-ସମ୍ପତ୍ତି ଅଛି, ଏବଂ ତହିଁରୁ ଏହାର ଅନେକ ଆୟ ହୁଏ; ଗୋଟାଏ ପଶୁ ଯଦି କୌଣସି ମତେ ଉଚ୍ଚସ୍ଥାନ ଅଧିକାର କରିପାରେ ତାହାହେଲେ (୧) ତାହାର ଦ୍ରୋଣୀ ରାଜାଙ୍କର ଖାଦ୍ୟ-ବସ୍ତୁ ନିକଟରେ ସ୍ଥାନ

(୧) ଦ୍ରୋଣୀ— କୁଣ୍ଡ ।

ପାଇବ: ଏହା ଗୋଟାଏ ଡାମରା କାଜ, କିନ୍ତୁ ଏ ଅନେକ ଧୂଳି ମାଟି ଜମା କରି ରଖିଛି ।

ଅସ୍ରି—ଯୁବରାଜ, ତୁମ୍ଭର ଯଦି ଅବସର ଥାଏ, ତା’ ହେଲେ ରାଜାଙ୍କର ଗୋଟିଏ ସଂବାଦ ମୁଁ ତୁମ୍ଭଙ୍କୁ ଜଣାଇବି ।

ହ୍ୟାମ୍—ମହାଶୟ, ମୁଁ ଅତି ଅଗ୍ରହର ସହିତ ତାହା ଶୁଣିବାକୁ ପ୍ରସ୍ତୁତ ଅଛି । ତୁମ୍ଭର ଟୋପିଟାକୁ ଯଥା ସ୍ଥାନରେ ରଖ, ସେଟା ମୁଣ୍ଡ ପାଇଁ ତିଆରି ହୋଇଛି ।

ଅସ୍ରି—ଧନ୍ୟବାଦ, ଯୁବରାଜ; ଅତି ବଡ଼ ଗରମ ବୋଧ ହେଉଛି ।

ହ୍ୟାମ୍—ନାହିଁ, ଅତି ତ ଭାରି ଥଣ୍ଡା ପଡ଼ୁଛି; ମୋତେ ବିଶ୍ୱାସ କର ଉତ୍ତରା ପବନ ବହୁଛି ।

ଅସ୍ରି—ବାସ୍ତବିକ୍, ଯୁବରାଜ, ଅଳ୍ପ ଅଳ୍ପ ପରିମାଣରେ ଥଣ୍ଡା ପଡୁଛି ।

ହ୍ୟାମ୍—କିନ୍ତୁ ମୋତେ ଭାରି ଗରମ ବୋଧ ହେଉଛି, ମନେ ହେଉଛି ଯେପରି କି ଟିକିଏ ବି ପବନ ନାହିଁ, କାରଣ ମୋର ମିଜାଜ୍‌ଟା ଅତି ଗରମ ।

ଅସ୍ରି—ଖୁବ୍, ଖୁବ୍ ଗରମ, ଯୁବରାଜ; ଏକାବେଳକେ ବାୟୁ ନରୁଦ୍ଧ—ଯେପରି କି—କିପରି ତାହା ବର୍ଣ୍ଣନା କରିବି ତାର ଭାଷା ଖୋଜି ପାଉନାହିଁ । କିନ୍ତୁ, ଯୁବରାଜ, ରାଜା ମୋତେ ଏହି ଖବରଟା ଦେବାକୁ ଆଦେଶ ଦେଲେ ଯେ ତୁମ୍ଭ ସମ୍ପର୍କରେ ଗୋଟାଏ ବଡ଼ ରକମର ବାଜି ରଖିଛନ୍ତି: ବିଷୟଟା ଏହି—

ହ୍ୟାମ୍—ତୁମ୍ଭର ଅନୁରୋଧ ରଖ, ମୁଣ୍ଡରେ —

(ଟୋପି ଦେବାପାଇଁ ହ୍ୟାମ୍‌ଲେଟ୍ ତାକୁ ଠେଲି ଦେଲେ)

ଅସ୍ରି—ନା, ସ୍ୱବରାଜ, ଏହିପରି ରହିବାଦ୍ୱାରା ବାସ୍ତବିକ୍‌ ମୋତେ ଭଲ ବୋଧ ହେଉଛି । ମହାଶୟ, ସମ୍ପ୍ରତି ଲର୍ଟିସ୍‌ ରାଜ-ଦରବାରକୁ ଅସିଛନ୍ତି; ବାସ୍ତବିକ୍‌ କି ଚମତ୍କାର ଭଦ୍ରଲୋକ, ଅହା ! ସେପରି ଭଦ୍ରତା ଖୁବ୍‌ କ୍ୱଚିତ୍‌ ଦୃଷ୍ଟିଗୋଚର ହୁଏ, ବ୍ୟବହାର ଅତୀବ କୋମଳ ଓ ସଦ୍‌ବଂଶର ପରିଚାୟକ; ତାଙ୍କର ଗୁଣରାଶି ଯଥାଯଥ ଭାବରେ ବର୍ଣ୍ଣନା କରିବାକୁ ହେଲେ ଏହା ସ୍ୱୀକାର୍ଯ୍ୟ ଯେ ସେ ଭଦ୍ରତାର ଗୋଟିଏ ଉତ୍କୃଷ୍ଟ ମାନଚିତ୍ର, କାରଣ ତାଙ୍କଠାରେ ତୁମ୍ଭେ ଭଲ ଦେଶର ଶିଷ୍ଟାଚାରର ଶ୍ରେଷ୍ଠ ନମୁନା ଦେଖିବାକୁ ପାଇବ ।

ହ୍ୟାମ୍‌—ମହାଶୟ, ତାଙ୍କର ଚରିତ୍ର ଚିତ୍ରଣରେ ତୁମ୍ଭେ କୌଣସି ତ୍ରୁଟି କରିନାହଁ; ତଥାପି ମୁଁ ଜାଣେ ଗଣିତ ସାହାଯ୍ୟରେ ତାଙ୍କର ଅଜସ୍ର ସଦ୍‌ଗୁଣର ଧାରାବାହିକ ତାଲିକା ପ୍ରସ୍ତୁତ କଲେ ସ୍ମୃତିଶକ୍ତି ବିଭ୍ରାନ୍ତିତ ହୋଇଯିବ ଏବଂ ତାହା ଅତି ଦ୍ରୁତଗାମୀ ହେଲେ ହେଁ ଅନୁଧାବନ କରିବାକୁ ଅସମର୍ଥ ହୋଇ ପଡ଼ିବ । ତାଙ୍କର ଗୁଣାବଳୀର ସମ୍ୟକ୍‌ ବର୍ଣ୍ଣନା କରିବାକୁ ହେଲେ ମୁଁ ଏହା ସ୍ୱୀକାର କରିବାକୁ ପ୍ରସ୍ତୁତ ଅଛି ଯେ ସେ ଜଣେ ଅତି ଉଚ୍ଚ ଦରର ଲୋକ ଏବଂ ତାଙ୍କଠାରେ ଏପରି ଅନେକ ମହତ୍‌ ଗୁଣ ଅଛି ଯାହା କି, ପ୍ରକୃତ କଥା କହିବାକୁ ଗଲେ, ଅନ୍ୟ କୁତ୍ରାପି ଲକ୍ଷିତ ହୁଏ ନାହିଁ; ତାଙ୍କର ପ୍ରତିମୂର୍ତ୍ତି କେବଳ ତାଙ୍କର ସମକକ୍ଷ ହୋଇପାରେ; ଅନ୍ୟ କେହି ତାଙ୍କୁ ଅନୁକରଣ କରିବାକୁ ଚେଷ୍ଟା କଲେ ସେ ତାଙ୍କ ଛାୟାର ଅନୁସରଣ କରିବ ମାତ୍ର, ତଦପେକ୍ଷା ଆଉ ଅଧିକ କିଛି କରି ପାରିବ ନାହିଁ ।

ଅତ୍ରି—ଯୁବରାଜ, ତୁମ୍ଭେ ତାଙ୍କ ସମ୍ବନ୍ଧରେ ଯାହା କହିଲ ତାହା ଅଭ୍ରାନ୍ତ ସତ୍ୟ ।

ହ୍ୟାମ୍—କିନ୍ତୁ ଏହାର ଆବଶ୍ୟକତା କଣ ମହାଶୟ ? କାହିଁକି ଆମ୍ଭେମାନେ ସେହି ଭଦ୍ରଲୋକଙ୍କୁ ବାକ୍ୟର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ କରିବାକୁ ଚେଷ୍ଟା କରୁଅଛୁଁ ?

ଅତ୍ରି—କଣ କହିଲ ମହାଶୟ ?

ହୋରା—ସେ ତ ମାତୃଭାଷାରେ କହିଲେ, ନ ବୁଝିବାର ତ କୌଣସି କାରଣ ନାହିଁ; ତୁମ୍ଭେ ଚେଷ୍ଟା କଲେ କଷ୍ଟେ ବୁଝି ପାରିବ ।

ହ୍ୟାମ୍—ସେହି ଭଦ୍ରଲୋକ ସମ୍ବନ୍ଧରେ ଏ ଅବତାରଣିକା କରିବାର ଉଦ୍ଦେଶ୍ୟ କଣ ?

ଅତ୍ରି—କାର, ଲିର୍ଟିସ୍‌ର ?

ହୋରା—ସେ ଦେଉଳିଆ ହୋଇ ଗଲେଣି, ତାଙ୍କ ପାଖରେ ଆଉ କିଛି ମାଲ ନାହିଁ ।

ହ୍ୟାମ୍—ହଁ ତାଙ୍କରି ସମ୍ବନ୍ଧରେ ।

ଅତ୍ରି—ମୁଁ ଜାଣେ ତୁମ୍ଭେ ଅବିଦିତ ନୁହଁ—

ହ୍ୟାମ୍—ତୁମ୍ଭର ଜାଣିବାଦ୍ୱାରା ମୋର ବିଶେଷ କିଛି ଲାଭ ନାହିଁ । କହିଯାଅ ।

ଅତ୍ରି—ତୁମ୍ଭେ ଅବିଦିତ ନୁହଁ କେଉଁ ସଦ୍‌ଗୁଣ ସକାଶେ ଲିର୍ଟିସର—

ହ୍ୟାମ୍—ମୁଁ ସେଟା ସାହସ କରି କହିପାରୁ ନାହିଁ, କାରଣ ତା'ହେଲେ ହୁଏତ ଆମ୍ଭ ଦୁଇଜଣଙ୍କ ମଧ୍ୟରେ ଗୁଣ କର୍ମ ନେଇ ଗୋଟାଏ ତୁଳନା ହୋଇପାରେ । କୌଣସି ଲୋକକୁ ଉତ୍ତମରୂପେ ଚିହ୍ନିବାକୁ ହେଲେ ଆଗେ ନିଜକୁ ଚିହ୍ନିବା ଦରକାର ।

ଅସ୍ରି—ମୁଁ ତାଙ୍କର ଅସ୍ତ୍ର-ସଞ୍ଚାଳନ-ପଟୁତା ବିଷୟରେ କହିବାକୁ ଚାହେଁ; ଲୋକେ କହନ୍ତି ଅସ୍ତ୍ର ସଞ୍ଚାଳନରେ ସେ ଅଦ୍ୱିତୀୟ ।

ହ୍ୟାମ୍—କେଉଁ ଅସ୍ତ୍ରରେ ତାଙ୍କର ସବିଶେଷ ନୈପୁଣ୍ୟ ଅଛି ?

ଅସ୍ରି—ଅସି ଓ ଅସି-ପୁତ୍ରୀ । (୧)

ହ୍ୟାମ୍—ତୁମ୍ଭେ ତ ତାଙ୍କର କେବଳ ଦୁଇଟି ଅସ୍ତ୍ରର ନାମ କହିଲ । ଅଚ୍ଛା! କହିଯାଅ ।

ଅସ୍ରି—ମହାଶୟ, ରଜା ଛଅଟି ବାର୍ବାରି ଦେଶୀୟ ଘୋଡ଼ା ବାଜି (୨) ରଖିଛନ୍ତି ଏବଂ ମୁଁ ଯେତେଦୂର ଜାଣେ ଲେୟର୍ଟିସ୍ ଛଅଟି ଫରାସୀ ଦେଶୀୟ ତରବାରି ଓ ଛୁରିକା ଏବଂ ତାର ଆନୁଷଙ୍ଗିକ ଅନ୍ୟାନ୍ୟ ଉପକରଣ, ଯଥା, ସାରସନ, ଚର୍ମ-ବନ୍ଧନୀ ପ୍ରଭୃତି ବାଜି ରଖିଛନ୍ତି; ବାହନ ମଧ୍ୟରୁ ତିନୋଟି ଅତି ସୁନ୍ଦର, ତରବାରିର ମୁଷ୍ଟିର ସମ୍ପୂର୍ଣ୍ଣ ଉପଯୋଗୀ ଏବଂ କାରୁକାର୍ଯ୍ୟ ଖଚିତ ।

ହ୍ୟାମ୍—ତୁମ୍ଭେ ବାହନ କାହାକୁ କହୁଅଛ ?

ହୋରା—ତୁମ୍ଭେ ଯେପରି ଭାବରେ ଆରମ୍ଭ କରିଅଛ ତହିଁରୁ ମୋର ଅନୁମାନ ହୁଏ ତୁମ୍ଭର ଏ ବର୍ଣ୍ଣନା ଶେଷ ହେବା ପୂର୍ବରୁ ଜଣେ 'ମଲ୍ଲୀନାଥ'ର ଦରକାର ହେବ । (୩)

ଅସ୍ରି—ବାହନ—ଚର୍ମ-ବନ୍ଧନୀ—ତାହା ତରବାରିକୁ ବହନ କରେ ।

---

(୧) ଅସି-ପୁତ୍ରୀ—ଛୁରିକା ।

(୨) ବାର୍ବାରି—ଉତ୍ତର ଆଫ୍ରିକାର ଗୋଟିଏ ଦେଶ । ଏ ସ୍ଥାନର ଘୋଡ଼ାମାନେ ଅତ୍ୟନ୍ତ ବେଗଗାମୀ ଥିଲେ ।

(୩) ମଲ୍ଲୀନାଥ—ଏ ଜଣେ ପ୍ରସିଦ୍ଧ ଟୀକାକାର ଥିଲେ ।

ହ୍ୟାମ୍—ଆମ୍ଭେମାନେ ଯଦି ଆମ୍ଭମାନଙ୍କର ପାର୍ଶ୍ୱଦେଶରେ ଦୁଇଟା ତୋପ ବହନ କରନ୍ତୁ, ତା'ହେଲେ ତୁମ୍ଭର ବାହନ ଶବ୍ଦର ପ୍ରୟୋଗ ସମୀଚୀନ ହୁଅନ୍ତା—ସେପର୍ଯ୍ୟନ୍ତ ତାର ବନ୍ଧନୀ ଆଖ୍ୟା ଥାଉ । ଅଚ୍ଛା, କହିଯାଅ : ଛଅଟା ବାର୍ବାରୀ ଦେଶୀୟ ଘୋଡ଼ା ବଦଳରେ ଛଅଟା ଫରାସୀ ଦେଶୀୟ ତରବାରି ଓ ତାହାର ଆନୁଷଙ୍ଗିକ ଅନ୍ୟାନ୍ୟ ଉପକରଣ ଏବଂ ତିନିଟା କାରୁକାର୍ଯ୍ୟ-ଖଚିତ ବାହନ; ଏହା ଦିନାମାର ବିରୁଦ୍ଧରେ ଫରାସୀର ବାଜି । ଏ ସବୁ ବାଜିର ତାତ୍ପର୍ଯ୍ୟ କଣ ?

ଅସ୍ରି—ରାଜା ବାଜି ରଖିଛନ୍ତି ଯେ ଲର୍ଟିସର ସହିତ ତୁମ୍ଭର ବାର ଥର ଅସି ଖେଳ ହେଲେ, ତୁମ୍ଭେ ତାଙ୍କୁ ଯେତେଥର ଆଘାତ କରିବ ତାହା ଅପେକ୍ଷା ସେ ତୁମ୍ଭଙ୍କୁ ତିନି ଥରରୁ ବେଶି ଆଘାତ କରି ପାରିବେ ନାହିଁ ଏବଂ ଲର୍ଟିସ୍ ବାଜି ରଖିଛନ୍ତି ଯେ ତୁମ୍ଭେ ତାଙ୍କୁ ନଅ ଥର ଆଘାତ କରିବା ପୂର୍ବରୁ ସେ ତୁମ୍ଭଙ୍କୁ ବାର ଥର ଆଘାତ କରିବେ । ତୁମ୍ଭେ ବର୍ତ୍ତମାନ ଏହାର ଗୋଟିଏ ଉତ୍ତର ଦେଲେ ଶୀଘ୍ର ଏହାର ନିଷ୍ପତ୍ତି ହେବ ।

ହ୍ୟାମ୍—ମୁଁ ଯଦି ଉତ୍ତରରେ 'ନାହିଁ' କହେ ତାହେଲେ କ'ଣ ହେବ ?

ଅସ୍ରି—ଯୁବରାଜ, ମୋର କହିବାର ଉଦ୍ଦେଶ୍ୟ ତୁମ୍ଭେ ଅସିଖେଳରେ ରାଜିଅଛ କି ନାହିଁ ।

ହ୍ୟାମ୍—ମହାଶୟ, ମୁଁ ଏହି ସଭାଗୃହରେ ଭ୍ରମଣ କରୁଛି, ରାଜାଙ୍କୁ ଜଣାଅ ଯେ ଏଇଟା ମୋର ବ୍ୟାୟାମ କରିବାର ସମୟ; ତରବାରି ଏଠାକୁ ଆଣନ୍ତୁ, ରାଜାଙ୍କର ଯଦି ଇଚ୍ଛା ଥାଏ ଏବଂ ସେ ଭଦ୍ରଲୋକ ଯଦି ସମ୍ମତ ହୁଅନ୍ତି ତା' ହେଲେ ବାଜିରେ ତାଙ୍କର

ଯେତେ ଦୂର ହୁଏ ତାର ମୁଁ ଚେଷ୍ଟା କରିବି; ଆଉ ଯଦି ମୁଁ ହାରି ଯାଏଁ, ତା' ହେଲେ କେବଳ ନିନ୍ଦା ଓ କେତୋଟି କ୍ଷତ-ଚିହ୍ନ ଅର୍ଜ୍ଜନ କରିବି ।

ଅସ୍ରି—ତା' ହେଲେ କ'ଣ ଏହି କଥା ରାଜାଙ୍କୁ ଜଣାଇବି ?

ହ୍ୟାମ୍—ଏହି ବିଷୟଟା ରାଜାଙ୍କୁ ଜଣାଇବ; କଥାଟା ତୁମ୍ଭର ହେଲେ କୌଣସି ଆପତ୍ତି ନାହିଁ ।

ଅସ୍ରି—ଯୁବରାଜ, ଏ ଅଧୀନ ସେବକ ପ୍ରତି ଆଦେଶ ଦେବା ହେଉ ।

ହ୍ୟାମ୍—ତୁମ୍ଭର ଅଧୀନ ଭୃତ୍ୟ । ( ଅସ୍ରିକର ପ୍ରସ୍ଥାନ ) । ଏପରି ସେବକର ସେବା ଯେ ଥରେ ଲାଭ କରିଛି, ସେ ଆଉ ଦ୍ୱିତୀୟ ଥର ତାହା ଆବଶ୍ୟକ କରିବ ନାହିଁ ।

ହୋରା—ଏତ ଟିକ୍ ଟେଁ ଟେଁ ହୋଇଥା ଚଢ଼େଇ ପରି ଫୁଟୁଣୁ ନ ଫୁଟୁଣୁ ଡିମ୍ବରୁ ଖୋଳ ମୁଣ୍ଡରେ ନେଇ ଦୌଡ଼ୁଛି ।

ହ୍ୟାମ୍—ଏ ମାତୃ ସ୍ତନ୍ୟ ପାନ କରିବା ପୂର୍ବରୁ, ଆଗେ ତାହାର ଅନୁମତି ନେଇ ତାପରେ ପାନ କରିଥିବ । ଏଟା ହେଉଛି ଏ କାଳର ମାହାତ୍ମ୍ୟ; ଏ ଯୁଗଟା କେବଳ ଖୁଷାମଦରେ ପୂର୍ଣ୍ଣ ଏବଂ ଏ ଯୁଗରେ ଖୁସାମଦିଆମାନଙ୍କର ପ୍ରସାର ବଢ଼ୁଛି । ଏହିଭଳି ଲୋକଗୁଡ଼ାକ କାଳୋପଯୋଗୀ କେତେ ଗୁଡ଼ାଏ ଖୋସାମୁଦିଆ କଥା ଶିଖି ରଖିଛନ୍ତି ଏବଂ ଲୋକମାନେ ମଧ୍ୟ ସେସବୁ କଥା ଶୁଣିବାକୁ ଭଲ ପାଆନ୍ତି । ସେମାନେ ଏଠୁ ସେଠୁ ପାଞ୍ଚ ଜାଗାରୁ ଯେଉଁ ପାଞ୍ଚଟା ଲମ୍ବା ଚଉଡ଼ା କଥା ଶିଖି ଥାଆନ୍ତି ତାହାର ମାହାତ୍ମ୍ୟରେ ଖୁବ୍ ପ୍ରବୀଣ ଲୋକମାନଙ୍କ ଆଖିରେ ମଧ୍ୟ ଧୂଳି ପକାଇ ଦିଅନ୍ତି,

ସେମାନଙ୍କର କଥା ଜଳ-ବୁଦ୍ବୁଦ ତୁଲ୍ୟ ଅନ୍ତଃସାର ଶୂନ୍ୟ,
ଟିକିଏ ଫୁଙ୍କି ଦେଖିଲେ ସହଜରେ ଧରା ପଡ଼ିଯାଏ ।

( ଜଣେକ ସଭାସଦର ପ୍ରବେଶ )

ସଭାସଦ—ଯୁବରାଜ, ରାଜା ଯୁବକ ଅସ୍ରିକଙ୍କୁ ତାଙ୍କର ଅଭିପ୍ରାୟ ଜଣାଇବା ପାଇଁ ତୁମ୍ଭ ନିକଟକୁ ପଠାଇ ଥିଲେ; ସେ ଫେରିଯାଇ ସମ୍ବାଦ ଦେଲେ ଯେ ତୁମ୍ଭେ ଏହି ସଭାଗୃହରେ ତାଙ୍କର ଅପେକ୍ଷା କରୁଅଛ । ସେ ଜାଣିବାକୁ ଚାହାନ୍ତି ତୁମ୍ଭେ ବର୍ତ୍ତମାନ ଲାର୍ଟିସ୍‌ର ସହିତ ଅସି-କ୍ରୀଡ଼ା କରିବ, ନା ଅଳ୍ପ କିଛି ଦିନ ପରେ ?

ହ୍ୟାମ୍‌—ମୁଁ ଏ ବିଷୟରେ ଯାହା କହିଛି ତାହା ପରିବର୍ତ୍ତନ କରିବାକୁ ଚାହେଁନା, ବର୍ତ୍ତମାନ ରାଜାଙ୍କର ଯେଉଁଠି ଇଚ୍ଛା, ସେ ଯଦି ପ୍ରସ୍ତୁତ ଥାଆନ୍ତି ମୁଁ ମଧ୍ୟ ପ୍ରସ୍ତୁତ ଅଛି । ବର୍ତ୍ତମାନ କିମ୍ବା ଅନ୍ୟ ଯେ କୌଣସି ସମୟରେ ହେଲେ ମୋର କୌଣସି ଆପତ୍ତି ନାହିଁ, ତେବେ ଉଭୟଙ୍କର କଥାଟା ତ ଏତେ କଣ୍ଠିତ-ଭାବରେ କହି ହୁଏ ନାହିଁ ।

ସଭାସଦ—ରାଜା, ରାଣୀ ଓ ଅନ୍ୟାନ୍ୟ ସମସ୍ତେ ଆସୁଛନ୍ତି ।

ହ୍ୟାମ୍‌—ଖୁସିର କଥା ।

ସଭାସଦ—ରାଣୀ କହୁଛନ୍ତି ତୁମ୍ଭେ ଲାର୍ଟିସ୍‌ର ସହିତ ଅସି-କ୍ରୀଡ଼ା କରିବା ପୂର୍ବରୁ ଶିଷ୍ଟ ବ୍ୟବହାରରେ ତାଙ୍କୁ ତୁଷ୍ଟ କରିବ ।

ହ୍ୟାମ୍‌—ତାଙ୍କର ଏ ଉପଦେଶ ଯୁକ୍ତିସଙ୍ଗତ । ( ସଭାସଦର ପ୍ରସ୍ଥାନ )

ହୋରା—ଯୁବରାଜ, ତୁମ୍ଭେ ଏ ବାଜିରେ ହାରିଯିବ ।

ହ୍ୟାମ୍—ମୋର ତା' ମନେ ହୁଏ ନା; ସେ ଫ୍ରାନ୍ସକୁ ଯିବାପରେ, ମୁଁ ଏ ପର୍ଯ୍ୟନ୍ତ ବରାବର ଅସି-କ୍ରୀଡ଼ା ଅଭ୍ୟାସ କରୁଛି । ମୋତେ ଯେ ସୁବିଧା ଟିକ ଦିଆ ହୋଇଅଛି ତଦ୍ୱାରା ମୁଁ ଜୟଲାଭ କରି ପାରିବି ବୋଲି ମୋର ଆଶା ହୁଏ । କେଜାଣି କାହିଁକି ମୋର ମନୋମଧ୍ୟରେ ଗୋଟାଏ ଅମଙ୍ଗଳର ଆଶଙ୍କା ହେଉଅଛି—କିନ୍ତୁ ସେଟା କିଛି ନୁହେଁ ।

ହୋରା—ନାଁ, ଯୁବରାଜ—

ହ୍ୟାମ୍—ଏହା ଗୋଟାଏ ଭ୍ରାନ୍ତ ଧାରଣା ମାତ୍ର, କିନ୍ତୁ ଏହିଭଳି ଆଶଙ୍କା କୌଣସି ସ୍ତ୍ରୀଲୋକର ମନରେ ଜାତ ହେଲେ ତାକୁ ସମ୍ଭବତଃ ବିଚଳିତ କରିଦେବ ।

ହୋରା—ଯଦି ତୁମ୍ଭର ମନରେ କୌଣସି ଆଶଙ୍କା ଥାଏ, ତା' ହେଲେ ସେଟା ଅବହେଳା କରିବା ଠିକ୍ ନୁହେଁ । ମୁଁ ଯାଉଛି ସେମାନଙ୍କୁ କହିବି ତୁମ୍ଭେ ଆଜି ପ୍ରସ୍ତୁତ ନୁହଁ, ଅତଏବ ସେମାନଙ୍କର ଆସିବାର ଦରକାର ନାହିଁ ।

ହ୍ୟାମ୍—ମୋର ଲେଶ ମାତ୍ର ଆଶଙ୍କା ନାହିଁ । ମୁଁ ମୋର ଭବିଷ୍ୟତ ଶୁଭାଶୁଭ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ, କାରଣ ଭଗବାନଙ୍କ ଇଚ୍ଛା ବ୍ୟତିରେକେ ସାମାନ୍ୟ ଗୋଟିଏ ଘରଚଟିଆର ମଧ୍ୟ ପତନ ହୋଇ ନ ପାରେ । ଜନ୍ମ ହେଲେ ମୃତ୍ୟୁ ଅନିବାର୍ଯ୍ୟ, ଯଦି ବର୍ତ୍ତମାନ ଘଟେ, ତା'ହେଲେ ଭବିଷ୍ୟତରେ ଆଶଙ୍କାର କୌଣସି କାରଣ ରହିବ ନାହିଁ; ଯଦି ଭବିଷ୍ୟତରେ ନ ଘଟେ; ତା ହେଲେ ବର୍ତ୍ତମାନ ଘଟିବ, ଯଦି ବର୍ତ୍ତମାନ ନ ଘଟେ, ଶୀଘ୍ର ହେଉ ବା ବିଳମ୍ବ ହେଉ ଦିନେ ହେଲେ ନିଶ୍ଚୟ

ଘଟିବ, ସେଥିପାଇଁ ଆମ୍ଭମାନଙ୍କର ସର୍ବଦା ପ୍ରସ୍ତୁତ ରହିବା ଦରକାର । ମନୁଷ୍ୟ ଗଲା ବେଳେ କୌଣସି ଜିନିସ ତା ସହିତରେ ନେଇ ଯାଏ ନାହିଁ; ସୁତରାଂ ସ୍ୱଳ୍ପ ବୟସରେ ମୃତ୍ୟୁ ହେଲେ ଆମ୍ଭେମାନେ ଦୁଃଖ କରିବା କାହିଁକି ?

( ରାଜା, ରାଣୀ, ଲର୍ଟିସ୍, ସଭାସଦଗଣ, ଅସ୍ରିକ୍ ଓ ତରବାରି ସହ ଅନୁଚରମାନଙ୍କର ପ୍ରବେଶ )

ରାଜା—ଆସ, ହ୍ୟାମ୍‌ଲେଟ୍, ଆସ, ତୁମ୍ଭ ଦୁଇଜଣଙ୍କର ହସ୍ତ ମିଳାଇ ଦେଇ ତୁମ୍ଭମାନଙ୍କ ମଧ୍ୟରେ ବନ୍ଧୁତା ସ୍ଥାପନ କରିଦେଏଁ ।

( ରାଜା ଲର୍ଟିସ୍‌ର ହସ୍ତ ନେଇ ହ୍ୟାମ୍‌ଲେଟ୍‌ର ହସ୍ତରେ ସ୍ଥାପନ କଲେ )

ହ୍ୟାମ୍—କର, କ୍ଷମା ମୋତେ, କରିଛି ମୁଁ ତୁମ୍ଭ ପ୍ରତି
ଅଶିଷ୍ଟ ଆଚାର, ଅଟ ହେ ସୁଜନ ତେଣୁ
କର ମୋତେ କ୍ଷମା । ଜାଣନ୍ତି ଏ ଭଦ୍ରବୃନ୍ଦ,
ଶୁଣିଥିବ ତୁମ୍ଭେ ମଧ୍ୟ ଗିରବ୍ ବାତୁଲତା,
ବୁଦ୍ଧିବୃତ୍ତି ମୋର କରିଛି ଆଚ୍ଛନ୍ନ । ଯେଉଁ
କାର୍ଯ୍ୟ ମୋର ଦେଇଛି ଆଘାତ ପ୍ରାଣେ ତବ,
ଖର୍ବ କରିଛି ମର୍ଯ୍ୟାଦା, ଜାଳିଛି ଅନ୍ତରେ
କୋପାନଳ, ଜାଣ ତାହା ପୂର୍ଣ୍ଣ ବାତୁଳତା ।
କରିଛି କି ଅନ୍ୟାୟ ବେଭାର ହ୍ୟାମ୍‌ଲେଟ୍
ଲର୍ଟିସର ପ୍ରତି ? ହ୍ୟାମ୍‌ଲେଟ୍‌ର ପକ୍ଷେ ତାହା
ଅସମ୍ଭବ । ହ୍ୟାମ୍‌ଲେଟ୍ ଜ୍ଞାନହତ-ଚେତ ହୋଇ
କରେ ଯେବେ ଅନ୍ୟାୟ ବେଭାର ଲର୍ଟିସର
ପ୍ରତି, ନୁହେଁ ତା କଦାପି ହ୍ୟାମ୍‌ଲେଟ୍‌ର କାର୍ଯ୍ୟ,

ନାହିଁ ହ୍ୟାମ୍‌ଲେଟ୍‌ର ଭଲେ ଝଞ୍ଜିବ ତହିଁରେ,
କରନ୍ତୁ ଏ କର୍ମ କିଏ ? ତାର ବାତୁଳତା,
ସତ୍ୟ ଏ ସିଦ୍ଧାନ୍ତ ଯେବେ ଶତ୍ରୁ ସେ ନିଶ୍ଚୟ
ହ୍ୟାମ୍‌ଲେଟ୍‌ର, ହ୍ୟାମ୍‌ଲେଟ୍‌ର ପ୍ରତି ମଧ୍ୟ ସେହୁ
ବାତୁଳତା କରଛି ଅନ୍ୟାୟ ।

ସମବେତ

ଭଦ୍ରମଣ୍ଡଳୀରେ କହୁଛି ମୁଁ ମୁକ୍ତକଣ୍ଠେ,
କରନାହିଁ ତୁମ୍ଭପ୍ରତି ଜ୍ଞାନତଃ ଅନ୍ୟାୟ;
ପେଶିଲି ମୁଁ ଊର୍ଦ୍ଧେ ଶର ଅକର୍ଷି କାର୍ମୁକ
ବାଜଲା ସହଜ ଗାତ୍ରେ ଲଙ୍ଘି ତା ପାଚେରୀ, (୧)
ନୁହଇ ତ ଇଚ୍ଛାକୃତ ତାହା, ସେହୁଭବେ
ଘେନ, ବନ୍ଧୋ, ଉଦାର ହୃଦୟେ ତବ ଏହୁ
ତ୍ରୁଟି ମୋର, ଦଅ ମୋତେ କ୍ଷମା ।

ଲାର୍ଟିସ୍—

ହେଲା ତବ

ଯୁକ୍ତି ଶୁଣି ସନ୍ତୁଷ୍ଟ ମୋ ଚିତ୍ତ. ଅନ୍ତରର
ବୃତ୍ତିଚୟ ଅନ୍ୟାୟ ବେଭାରେ ତବ ହୋଇ
ବିଚଳିତ କରିଥିଲା ଉତ୍ତେଜିତ ମୋତେ
ପ୍ରତିହିଂସା କଲେ; କିନ୍ତୁ କି ଭବେ ବେଭାର
ତବ କରିବ ଲାଘବ ମର୍ଯ୍ୟାଦା ମୋହର,
ପ୍ରବୀଣ ମାନଙ୍କ ତାହା କରିବେ ବିଗ୍ଚାର,
ପୂର୍ବ ପ୍ରଥା ଅନୁସରି ଦେବେ ସେ ବ୍ୟବସ୍ଥା,

(୧)ସହଜ—ସହୋଦର ।

ହେବ ଯେବେ ତାଙ୍କ ମତେ ସଙ୍ଗ ତୁମ୍ଭ ସହ
ସୁସଙ୍ଗ, ସୁଖ୍ୟାତିର ବିମଳ-କାୟାରେ
ପଣି କଳଙ୍କ କାଳିର ଯେବେ ନ କରନ୍ତି
ତାକୁ କଳୁଷିତ, ବନ୍ଧୁଭାବେ କରିବି ମୁଁ
ତୁମ୍ଭଙ୍କୁ ଗ୍ରହଣ, ସେ କାଳେ ମୁଁ ଦୋଷ ତବ
କରିବି ମାର୍ଜନା, ତଦବଧି ଅର୍ପିତ ଏ
ପ୍ରୀତି ତବ କରୁଛି ଗ୍ରହଣ ନିର୍ବିକାର
ଚିତ୍ତେ ।

ହ୍ୟାମ୍— ହେଲି ମୁଁ ସମ୍ମତ ଏ ପ୍ରସ୍ତାବେ ତବ;
ସହୋଦର ଭାବେ ଏବେ କରିବି ମୁଁ ଅସି-
କ୍ରୀଡ଼ା ତୁମ୍ଭ ସହ, ଅଣ ତରବାରି, ହୁଅ
ଅଗ୍ରସର ।

ଲାର୍ଟିସ୍— ଅସ, ଦିଅ ଖଣ୍ଡେ ଅସି ମୋତେ ।

ହ୍ୟାମ୍— ଅଜ୍ଞତା-ଅମ୍ବରେ ମୋର ନିପୁଣତା-ଜ୍ୟୋତିଃ
ତବ ତେଜ ଉଦ୍ଭାସିତ, ଅସିତ ନିଶାରେ
ହୁଏ ଯେସନ୍ତେ ବିକଶିତ ନଭଃସ୍ଥଳେ ଅଗ୍ନି
ନକ୍ଷତ୍ର ।

ଲାର୍ଟିସ୍— କରୁଛ ବିଦ୍ରୂପ ମୋତେ ।

ହ୍ୟାମ୍— ନୁହେଁ ।
ଏ ବିଦ୍ରୂପ ।

ରାଜା— ଅସ୍ରିକ୍‌, ଦଅ ତାଙ୍କୁ ତରବାରୀ ।
ହ୍ୟାମ୍‌ଲେଟ୍‌, ଜାଣ ତ କ ପଣ ?

ହ୍ୟାମ୍‌— ଭଲରୂପେ, ପ୍ରଭୁ;
ଦୁର୍ବଳର ପକ୍ଷେ ବଳ ରଖିଛ ଅଧିକ ।

ରାଜା—ନାହିଁ ସଂଶୟ ମୋ ଶଢେ, ଦେଖିଛି ମୁଁ କ୍ରୀଡ଼ା
ବେନଙ୍କର; ଯେଣୁ ଦକ୍ଷତର ସେହୁ, କଲି
ବୈଷମ୍ୟର ସମତା ବିଧାନ ଅମ୍ଭ ପକ୍ଷେ ।

ଲେଟିସ୍‌—ଅତି ଗୁରୁ ଏହା, ଦେଖେଁ ଅନ୍ୟ ଖଣ୍ଡେ ।

ହ୍ୟାମ୍‌— ଭଲ
ଏହା ମତେ ଲାଗତ, ସମ ଦୈର୍ଘ୍ୟ-ଶାଳୀ ଏହୁ
ଅସିମାନ । (କ୍ରୀଡ଼ାର ଉଦ୍ୟମ)

ଅସ୍ରିକ୍‌— ଯଥାର୍ଥତଃ ତାହା, ଯୁବରାଜ ।

ରାଜା—ରଖ ସୁରାପାତ୍ର ସବୁ ଶ୍ରେଣୀବଦ୍ଧ କରେ
ସେହି ମେଜେ । କରେ ଯଦି ଆଦ୍ୟ ଅବା ମଧ୍ୟେ
ହ୍ୟାମ୍‌ଲେଟ୍‌ ଆଘାତ, ଅବା କରେ ପରିଶୋଧ
ତୃତୀୟ ଉଦ୍ୟମେ, ଜଗାଇବ ତୋପମୁଖୁଁ
ଶତ ଛିଦ୍ରପଥେ ତାର ପ୍ରାଚୀର ଅନଳ,
କରିବେ ମଦିରା ପାନ ହରଷେ ନୃପତି,
ଶୁଣି ଶଢେ ହ୍ୟାମ୍‌ଲେଟ୍‌ର ବଳମ-ବର୍ଦ୍ଧନ,'

ହେଲ ରତ୍ନ ଅନୁପମ ନିକ୍ଷିପ୍ତ ଚପଳେ,
କବା ଛାର ଦନାମାର-ନ୍ଦଶ୍ୱଃ-ଭୂଷଣ-
ମଣିମୟ-ମଧ୍ୟମଣି ସେ ମଣି ସମୀପେ ।
ଦଅ ମୋତେ ପାନ ପାନ; ବାଜୁ ସମକାଳେ
ପଟହ, ଦୁନ୍ଦୁଭି, ଗର୍ଜ୍ଜୁ ତୋପ ମେଘ-ମନ୍ଦ୍ରେ
କମ୍ପାଇ ଗଗନ, ଘୋଷୁ ସେ ଅମ୍ବରେ ମନ୍ତ୍ର,
'ମହୀପତି ଏବେ ଧାଇ ସ୍ୱାସ୍ଥ୍ୟ ହ୍ୟାମ୍‌ଲେଟ୍‌ର
କରୁଛନ୍ତି ପାନ' । ଆସ, କର ଅସି-କ୍ରୀଡ଼ା;
ବିଚାରକବୃନ୍ଦ, କର କ୍ରୀଡ଼ା ନିରୀକ୍ଷଣ
ସାବଧାନେ ।

ହ୍ୟାମ୍— ଆସ, ଭଦ୍ର ।

ଲର୍ଟିସ୍— ଆସ, ଯୁବରାଜ । (କ୍ରୀଡ଼ାରମ୍ଭ)

ହ୍ୟାମ୍—ଏକ ।

ଲର୍ଟିସ୍— ନାହିଁ ।

ହ୍ୟାମ୍— ଦଅ ମତ । ( ବିଚାରକ ପ୍ରତି )

ଅସ୍ରିକ୍— କରେଛ ଅଘାତ,
ନାହିଁ ଥିଲେ ସଂଶୟ ତହିଁରେ ।

ଲର୍ଟିସ୍— ହେଉ, ଆସ
ପୁନରପି ।

ରାଜା— ଯାଉ ଦୁଅ କ୍ଷଣେ, ଅଣ ସୁରା ।
ହ୍ୟାମ୍‌ଲେଟ୍, କଲ ଏ ମୌକ୍ତିକ ଉତ୍ସର୍ଗ ତୁମ୍ଭ
ପାଇଁ, ଯେନ୍ ଏ ପାଜାସ୍ତ୍ର । (ଅନ୍ତରାଳରେ ଦୁନ୍ଦୁଭି ଓ ତୋପଧ୍ୱନି)
ଦଅ ପାନ-ପାତ୍ର

ତାକୁ ।

ହ୍ୟାମ୍—ଦେଉଜ୍ ସାଙ୍ଗ ପ୍ରଥମେ ଏ କ୍ରୀଡ଼ା; ରଖ
କିଛିକ୍ଷଣ ତାହା । ଅସ, ( ଅସି-କ୍ରୀଡ଼ା )
ଦ୍ୱିତୀୟ ଅଘାତ,
କହ କି ମତ ତୁମ୍ଭର ?

ଲିଟିସ୍— କଲା ମାତ୍ର ସ୍ପର୍ଶ
ତବ ଅସି, କରୁଛି ସ୍ୱୀକାର ।

ରାଜା— ହେବ ଜୟୀ
ତନସ୍ତ୍ର ଅମ୍ଭର ।

ରାଣୀ— ସ୍ଥୂଳତା ବଶତଃ ଖର-
ଶ୍ୱାସ ବହୁଛି ତାହାର । ଏ ରୁମାଲେ, ବତ୍ସ,
ପୋଛିଦଅ ଶ୍ରମ-ବାରି ଲଲାଟୁ ତୁମ୍ଭର ।
ମନାପି ବିଜୟ ତବ ପ୍ରଫୁଲ୍ଲ ମାନସେ
କରଇ ମୁଁ ଏବେ ଏହି ସୁରା ପାନ ।

ହ୍ୟାମ୍— ଭଦ୍ରେ

ରାଜା—କାର୍ତ୍ତବୁଜ୍, ନ କର ତା' ପାନ ।

ରାଣୀ— କରିବ ମୁଁ,
ପ୍ରଭୁ, ନ କର ବାରଣ ।

ରାଜା—(ସ୍ୱଗତ) ବିଷାକ୍ତ ପାଶାସୁ
ତାହା, ବୃଥା ପ୍ରତିକାର-ଆଶା ।

ହ୍ୟାମ୍—ଲ କଲେ ପାନ
ଏହିକ୍ଷଣି, ରକ୍ତ ମୋର ହେବ ଜର୍ଜରିତ;
ଲଦ୍ଦ୍ରେ, ଶୀଘ୍ର ମୁଁ କରିବ ପାନ ।

ରାଣୀ— ଆସ, ଦିଏଁ
ପୋଛି ବଦନ ତୁମ୍ଭର ।

ଲର୍ଟିସ୍— କରିବ ଅଘାତ
ଏବେ କହୁଛି ନୃମଣି ।

ରାଜା— ହେଉନାହିଁ ପ୍ରତେ ।

ଲର୍ଟିସ୍—(ସ୍ୱଗତ) ଏ ଗର୍ହିତ କର୍ମେ ନାହିଁ ପ୍ରବୃତ୍ତି ମୋହର ।

ହ୍ୟାମ୍—ହେଲ ଏ ତୃତୀୟ ବାର, ହୁଅ ଅଗ୍ରସର,
ହେଲ କପାଁ ହତବୀର୍ଯ୍ୟ ? ଯେନ ମୋ ମନରେ,
ସାଧ୍ୟମତେ ମୋତେ ତୁମ୍ଭେ କର ଆକ୍ରମଣ,
ନ ମଣ ମୁଁ ସୁକୁମାର ଦୁର୍ବଳ ବାଳକ ।

ଲର୍ଟିସ୍‌—କହୁଛ ଏସନ ? ଅସ ତେବେ । (ଅସି-କ୍ରୀଡ଼ା)

ଅସ୍ରିକ୍‌— ଶୂନ୍ୟ ଦୁଇ
ପକ୍ଷେ ।

ଲର୍ଟିସ୍‌— ଭଲ ମୁଁ ଅଘାତ । ( ଲର୍ଟିସ୍‌ ହ୍ୟାମ୍‌ଲେଟ୍‌କୁ ଅଘାତ କଲେ; ତତ୍ପରେ ଅସି ପରିବର୍ତ୍ତନ କରିବାକୁ ଯାଇ ପରସ୍ପର ମଧ୍ୟରେ ଅସି ବଦଳ ହୋଇଗଲା ଏବଂ ହ୍ୟାମ୍‌ଲେଟ୍‌ ଲର୍ଟିସ୍‌କୁ ଅଘାତ କଲେ )

ରାଜା— କର ବନ୍ଧନ ତାହାଙ୍କୁ
ହୋଇଛନ୍ତି ଉତ୍ତେଜିତ ସେହୁ ।

ହ୍ୟାମ୍‌— ନାହିଁ, ଅସ
ପୁନରପି । (ରାଣୀଙ୍କର ପତନ)

ଅସ୍ରିକ୍‌— ଦେଖ, ରାଣୀଙ୍କର ହେଲା କିସ ।

ହୋରା—ଉଭୟେ ରକ୍ତାକ୍ତ; ହେଲା ଏ କିପରି, ପ୍ରଭୁ ?

ଅସ୍ରି—ହେଲା ଏ କିପରି ଲର୍ଟିସ୍‌ ?

ଲର୍ଟିସ୍‌— ପଡ଼ିଲି ଧରା
ନିଜ ଫାନ୍ଦେ ମୁହିଁ, ଅପଣା ଦୁଷ୍କୃତ ଫଳେ
ହେଲି ମୁଁ ନିହତ ।

ହ୍ୟାମ୍— ହେଲା କଅଣ ରାଣୀଙ୍କର ?

ରାଜା— ହେଲେ ସେ ମୂର୍ଚ୍ଛିତା ଦେଖି ଶୋଣିତର ଧାର
ବେନଙ୍କର ଗାତ୍ରେ ।

ରାଣୀ— ନାହିଁ, ନାହିଁ, ସେହି ସୁରା,
ସୁରା, ସୁରା — ପ୍ରାଣର ହ୍ୟାମ୍‌ଲେଟ୍—ସେହି ସୁରା,
ସେହି ସୁରା ! କଲା ମୋତେ ଜର୍ଜରିତ ବିଷେ । ( ମୃତ୍ୟୁ )

ହ୍ୟାମ୍—ଅହୋ କି ଦୁଷ୍କର୍ମ ! କର ଦ୍ୱାର ରୁଦ୍ଧ; ଅଣ
ଖୋଜି କାହିଁ ଗଲା ବିଶ୍ୱାସ-ଘାତକ ।

ଲଟିସ୍— ହ୍ୟାମ୍‌ଲେଟ୍,
ଅଛି ସେ ଏଠାରେ; ହୋଇଛ ନିହତ ତୁମ୍ଭେ,
ନାହିଁ ଶକ୍ତି ଭେଷଜର କରିବ ତୁମ୍ଭଙ୍କୁ
ଆରୋଗ୍ୟ, ଘଡ଼ିକାର୍ଦ୍ଧ ମାତ୍ର ନାହିଁ ଆୟୁଷ୍ୟ
ତୁମ୍ଭର, ଯେଉଁ ଅସି ହସ୍ତେ ତବ କରିଛ
ଧାରଣ, ଶାଣିତ ମୁନ ତାର ଅନୁଲିପ୍ତ
ବିଷାକ୍ତ ମଳମେ; ଆପଣା ଦୁଷ୍କର୍ମ ଜାଲେ
ହେଲି ମୁଁ ଜଡ଼ିତ, ଉପସ୍ଥିତ ଏବେ ମୋର
ଅନ୍ତିମ ସମୟ; ଦେଖ ଏ ଭୂତଳ ଶଯ୍ୟା
ହେବ ପରିଣତ ଅମ୍ଭ ଅନ୍ତିମ ଶୟନେ;
ବିଷାକ୍ତ ମଦିରା ପାନେ ଜନନୀର ତବ

ହେଲା ମୃତ୍ୟୁ, ଅଉ ନାହିଁ ଶକ୍ତି ମୋର, ଜାଣ
ରାଜାଙ୍କର ଦୋଷେ ଏ ସବୁ ଅନର୍ଥ ହେଲା
ସଂଘଟିତ, ଦୋଷ ରାଜାଙ୍କର ।

ହ୍ୟାମ୍—                                  ବିଷାକ୍ତ ଏ
ଅସି ପୁନ ! କରୁ ବିଷ ଶସ୍ତ୍ର ବିଷମୟ ।

( ରାଜାଙ୍କୁ ଅସବିଦ୍ଧ କରିଦେଲେ )

ସମସ୍ତେ— ରାଜଦ୍ରୋହ ! ରାଜଦ୍ରୋହ !

ରାଜା—                                  ବନ୍ଧୁଗଣ, ରକ୍ଷା
ମୋତେ କର ହେ ଏ କାଳେ, ହୋଇଛି ଆହତ
ମାତ୍ର ।

ହ୍ୟାମ୍—          ଅରେ ଅଉଡାଯି ଲମ୍ପଟ ନାରକି !
କର ଏହ ସୁରାପାନ । ଅଛି କି ରେ ମୁକ୍ତା
ଏହ ପାନପାତ୍ରେ ? ଯାରେ ଯହିଁ କଲେ ଯାତ୍ରା
ଜନନୀ ମୋହର ।

(ରାଜାଙ୍କର ମୃତ୍ୟୁ)

ଲିର୍ଟ୍ସ୍—                          ହେଲା ଶାସ୍ତି ସମୁଚିତ;
କରିଥିଲା ନିଜ ହସ୍ତେ ବିଷାକ୍ତ ସେ ସୁରା ।
ହେ ସୁଧୀ ହ୍ୟାମ୍‌ଲେଟ୍, କର ଏବେ ବିନିମୟ
କ୍ଷମା ମୋ ସହିତ; ପିତାଙ୍କର ହତ୍ୟାଦୋଷ

ତା ସହ ମୋହର ସ୍ପର୍ଶ ନ କରୁ ତୁମ୍ଭଙ୍କୁ,
ତୁମ୍ଭ ହତ୍ୟା ଦୋଷ ତଥା ନ ବର୍ତ୍ତୁ ମୋ ଶିରେ ।

( ମୃତ୍ୟୁ )

**ହ୍ୟାମ୍**—ପରମେଶ ଦୋଷମୁକ୍ତ କରନ୍ତୁ ତୁମ୍ଭଙ୍କୁ;
ଯାଉଛି ମୁଁ ତୁମ୍ଭ ପଛେ ପଛେ । ହେ ହୋରେସିଓ,
ଖେଳିଲା ସଇଳ୍ପ ମୋହର । ହାୟ ରାଣି
ଅଭାଗିନି, ଯାଅ ପ୍ରେତପୁରେ । ଭଦ୍ରବୃନ୍ଦ,
ଦେଖି ଏ ନୃଶଂସ ଦୃଶ୍ୟ ଲୋମ-ହର୍ଷ-କର
ହୋଇଛ କମ୍ପିତ ତୁମ୍ଭେ ବାକ୍-ଶକ୍ତିବହୀନ;
ଥାଅନ୍ତା ସମୟ ଯଦ—ମାତ୍ର କ୍ରୂର କାଳ
କାହାରି ମିନତି କାର ନ କରେ ଶ୍ରବଣ,
ଝିଙ୍କିନଏ ବଳେ ଅସି—କହିଥାନ୍ତି ମୁହିଁ—
ଥାଉ ଏବେ । ହୋରେସିଓ, ଅନ୍ତିମ ସମୟ
ମୋର ହେଲା ଉପସ୍ଥିତ; ରହିବ ଜୀବତ
ତୁମ୍ଭେ; ଘୋଷିବେ ମୋହର ଯେବେ ନିନ୍ଦାବାଦ
ଜନେ, କହିବ ତାହାଙ୍କୁ ବୁଝାଇ ସମସ୍ତ
କି ହେତୁ ମୁଁ ହେଲି ଲିପ୍ତ ଏ ନୃଶଂସ କର୍ମେ ।

**ହୋରେ**—ନ ଭାଳ ମୁଁ ତୁମ୍ଭ ଅନ୍ତେ ରଖିବ ପରାଣ,
ପ୍ରାଚୀନ ରୋମୀୟ ରୀତି ଅଛି ମୋତେ ଜଣା,
ଅଦ୍ୟାପି ଏ ପାତ୍ରେ ଶେଷ ଅଛି କଛି ସୁରା ।

ହ୍ୟାମ୍—ନୁହଁ ତୁମ୍ଭେ କାପୁରୁଷ, ଦିଅ ପାନପାତ୍ର,
ଛାଡ଼ ଦିଅ ନେବି ମୁଁ ଏହାକୁ । ହୋରେସିଓ,
ଭାବ ଦେଖ ମନେ, ରହିବ ଅଜ୍ଞାତ ଯେବେ
ଏ ବୃତ୍ତାନ୍ତ, ଲୋକେ କରିବେ କୀର୍ତ୍ତନ ସଦା
ଅପକୀର୍ତ୍ତି ମୋର । ବନ୍ଧୁ ବୋଲି ଥାଏ ଯଦି
ସ୍ନେହ ମୋ ପ୍ରତି ତୁମ୍ଭର, କିଛିକାଳ ସ୍ୱର୍ଗ-
ସୁଖ ପାସୋରି, ବୟସ୍ୟ, ଅବନୀ-ମଣ୍ଡଳେ
ରହି ସହି ତାପ, କ୍ଲେଶ, କହ ସର୍ବ ଜନେ
ଚରିତ ମୋହର ।

( କିଛି ଦୂରରେ ରଣବାଦ୍ୟର ଶବ୍ଦ ଓ ଅନ୍ତରାଳରେ ତୋପ ଧ୍ୱନି )

କି ହେତୁ ଏ ରଣ କୋଳା-
ହଳ

ଅସ୍ରିକ୍— ଫୋର୍ଟିନ୍‌ବ୍ରାସ୍ ଯୁବରାଜ ଜୟମାଲ୍ୟ
ଘେନି ପୋଲଣ୍ଡୁଁ ଆସିଲେ ଫେରି, ଏବେ ସେହି
କରୁଛନ୍ତି ଅଭ୍ୟର୍ଥନା ତୋପଧ୍ୱନି ଛଳେ
ଇଂଲଣ୍ଡୁଁ ଆଗତ ରାଜଦୂତଗଣେ ।

ହ୍ୟାମ୍— ଦେଖ
ହୋରେସିଓ, ହେଲା ମୃତ୍ୟୁ ସନ୍ନିକଟ ମୋର,
ପ୍ରବଳ ଏ ବିଷ ମୋତେ କରୁଛି ଅଶକ୍ତ;
ନାହିଁ ବେଳ ଶୁଣିବାକୁ ବାର୍ତ୍ତାବହ ମୁଖୁଁ
ବାର୍ତ୍ତା ଇଂଲଣ୍ଡର; କହୁଛି ନିଶ୍ଚୟ ମୁହିଁ
ଇଂଲଣ୍ଡ-ନୃପତି ବରିବେ ଫୋର୍ଟିନ୍‌ବ୍ରାସଙ୍କୁ

ମନୋଗତ ସ୍ୱଜା ରୁଟପ, ହେବେ ସେ ଭୂପତି
ଅନ୍ତିମ ନିୟୋଗେ ମୋର ଏହି ଭୂ-ଖଣ୍ଡର;
ଦେବ ଏ ସମ୍ବାଦ ତାଙ୍କୁ, କହିବ ବିସ୍ତାର
କିପାଁ ଏହି କ୍ରୂର କର୍ମେ ହେଲି ମୁଁ ଜଡ଼ିତ ।
ହେଲା ଛିନ୍ନ ତନ୍ତ୍ରୀ ଏବେ ନୀରବ ମୋ ବୀଣା । (ମୃତ୍ୟୁ)

ହୋରା—ହେଲା ଚ୍ୟୁତ ପୃଥ୍ୱୀନ୍ଦ୍ର-ସମାଙ୍କୁ ଅଛି ପୃଥ୍ୱୀ-
ବର ଏକ । ଯୁବରାଜ, ଦେଉଛି ମେଲାଣି;
ଦେବ-ଦୂତ-ବୃନ୍ଦ ଆସି ବନ୍ଦାଇ ତୁମ୍ଭଙ୍କୁ
ନିଅନ୍ତୁ ଅମର ଧାମେ ଜ୍ୟୋତିର୍ମୟ ପଥେ,
ଅମର ସଙ୍ଗୀତେ ଭୁଲି ଭବ-ତାପ-ଜ୍ୱାଳା
ଲଭ ଚିର ଶାନ୍ତି ତହିଁ ବିବୁଧ ସଙ୍ଗମେ ।
କି ହେତୁ ବାଦନ ଶବ୍ଦ ଆସୁଛି ଏ ଦିଗେ ?

(ଅନ୍ତରାଳରେ ରଣବାଦ୍ୟ)

( ଫୋର୍ଟିନ୍‌ବ୍ରାସ୍, ଇଂଲଣ୍ଡର ରାଜଦୂତଗଣ ଓ
ଅନ୍ୟାନ୍ୟମାନଙ୍କର ପ୍ରବେଶ

ଫୋର୍ଟିନ୍—କାହିଁ ସେହି ଦୃଶ୍ୟ ?

ହୋରା— କହ କି ଦେଖିବ ତୁମ୍ଭେ ?
ଭଲ ଯଦି ଦେଖିବାକୁ ଦୃଶ୍ୟ ଭୟାନକ,
କରୁଣ, ଅଦ୍ଭୁତ, ତୁଅ ରହ ଏହି ସ୍ଥଳେ ।

ଫୋର୍ଟିନ୍‌ —ଅହୋ, କି ଭୀଷଣ ଦୃଶ୍ୟ ! ରାଶୀକୃତ ଶବ !
ରେ ମତ୍ତ କୃତାନ୍ତ, ଅଛି କି ଭୋଜ ତୋହର
ହେଉଛି ଉତ୍ସବବୃତ ଅଚଳ ଭବରେ,
କଲୁ ତୁ ରେ ସେ କାରଣ, କ୍ରୂର, ଏକାବେଳେ
ପ୍ରହାର ତୋ ଯମଦଣ୍ଡ ସଂହାର ଏ ନର-
କୁଳ-ମଉଳ-ମଣ୍ଡନ ରାଜପୁତ୍ରଗଣେ ?

ପ୍ରଃ ରାଜଦୂତ—ଭୀଷଣ ଏ ଦୃଶ୍ୟ; କହିବୁ କାହାକୁ ଏବେ
ଇଂଲଣ୍ଡର ବାର୍ତ୍ତା, କିଏ କରିବ ଶ୍ରବଣ ?
ଶୁଣନ୍ତା ଯେ କର୍ଣ୍ଣ ତାର ହୋଇଛି ବଧୀର,
ଶରୀର ପିଞ୍ଜର ତାର ତେଜି ପ୍ରାଣପକ୍ଷୀ
ଯାଇଛି ପଳାଇ; ଦେବ କିଏ ଧନ୍ୟବାଦ
ଶୁଣି ଏ ସମ୍ବାଦ: ରାଜ ଆଜ୍ଞା ଅନୁଯାୟୀ
ରୋଜେନ୍‌କ୍ରାନ୍‌ସ, ଗିଲ୍ଡେନ୍‌ଷ୍ଟାର୍ଣ୍ଣ ହୋଇଛନ୍ତି ହତ !

ହୋରା—ନ ମଣ ଜୀବିତ ଥିଲେ ଦେଇଥାନ୍ତା ସେହି
ଧନ୍ୟବାଦ ଲଭି ଏ ବାରତା, ଜାଣ ତାର
ନୁହେଁ ସେ ଆଦେଶ । ହୋଇଛ ଆଗତ ଯେଣୁ
ପିଶାଚର କ୍ରୀଡ଼ାଭୂମି ଏ ଭୀଷଣ ସ୍ଥଳେ,
ପୋଲକ ସମରୁଁ ତୁମ୍ଭେ, ତୁମ୍ଭେ ଇଂଲଣ୍ଡରୁ,
କହିବ ମୁଁ ସର୍ବଜନେ ବୁଝାଇ ସମସ୍ତ,
ଘଟିଲା କେମନ୍ତେ ଏହି ଲୋମ-ହର୍ଷ-କର
ନିଦାରୁଣ କାଣ୍ଡ । ରଖ ଅନୁଚରବୃନ୍ଦ

ଉଚ୍ଚ ମଞ୍ଚପରେ ନେଇ ଏହି ଶବଗଣେ,
ସର୍ବେ କରନ୍ତୁ ଦର୍ଶନ । କହିବି ତୁମ୍ଭଙ୍କୁ
ପ୍ରୀତିର ଅବୈଧ-ଲୀଳା, ଲମ୍ପଟର କ୍ରୂର—
କୃତ୍ୟ, ପାଶବ ଅତ୍ୟାଚାର, ବୁଦ୍ଧି-ବିପର୍ଯ୍ୟୟ
ହେତୁ ଘଟିଲା କେସନ ଆକସ୍ମିକ ହତ୍ୟା,
ଅବ୍ୟାପାରେ ଆପଣାକୁ କରଣ ଜଡ଼ିତ,
ଘଟନାର ବହନ ଅବଶେଷେ ପଡ଼ ହେଲେ
କି ରୂପେ ବିନଷ୍ଟ, ଅହୋ, ଦୁର୍ବଶଯ୍ୟ ଜନେ,
ପରିଶେଷେ ପୁଣି, କି ଷ୍ଟେବ କୁଚକ୍ରୀ-ଚକ୍ର
ନେଇଛି ତା ଶିରେ କଲ୍ପ ବିନାଶ ତାହାର,
ଏ ବୃତ୍ତାନ୍ତମାନ ଯଥାଯଥ ଭାବେ ମୁହିଁ
କରିବି ବର୍ଣ୍ଣନା ।

ଫୋର୍ଟିନ୍— ଶୁଣିବା କହନ ଏହି
ଅପୂର୍ବ କାହାଣୀ, ରାଜ ପାତ୍ର, ମନ୍ତ୍ରୀ ଆଦି
ଉଚ୍ଚବଂଶ ସମ୍ଭୂତ ନାଗରିକ ଗଣେ ।
ବିଷଣ୍ଣ ଅନ୍ତରେ ଏବେ କରୁଛି ଗ୍ରହଣ,
ଅର୍ପିତ ଏ ଶୋକ-ଦଗ୍ଧ ଦାନ ସୌଭାଗ୍ୟର;
ଅଛି ଏ ସାମ୍ରାଜ୍ୟେ ମୋର ଦାବୀ କିଯଦଂଶ,
ଥିବ ତାହା ସ୍ମୃତିପଥେ ପୁରବାସୀଙ୍କର,

ଘଟନା ନିବନ୍ଧ ହୋଇ ଅନୁକୂଳ ଏବେ,
କରୁଛି ପ୍ରବୃତ୍ତ ମୋତେ ସେ ସ୍ୱତ୍ୱ ମୋହର
କରିବାକୁ ସଂସ୍ଥାପନ ।

ହୋସ୍— ଅଛି ସେ ସମ୍ପର୍କେ
ପୁଣି ବକ୍ତବ୍ୟ ମୋହର, ଶୁଣିଲେ ସେ ବାଣୀ,
ସେହି ନିଯୋଗ ତାଙ୍କର ହେବ ବହୁ କଣ୍ଠେ
ଶ୍ରୁତ ପ୍ରତିଧ୍ୱନି ତାର । ଏହି ଶବଗଣେ,
ଉଚ୍ଚ ମଞ୍ଚେ ନେଇ ଏବେ ରଖିବା ଉଚିତ,
କରନ୍ତୁ ଦର୍ଶନ ତାହା ପୌରଜନବର୍ଗ,
ଉଦ୍‌ବେଳିତ ଚିତ୍ତ ଯେଣୁ ହୋଇଛି ତାଙ୍କର;
ଘଟିଲେ ବିଳମ୍ବ ହେବ ବିଷମ ଅନର୍ଥ ।

ଫୋର୍ଟିନ୍—ସେନାପତି ଚତୁଷ୍ଟୟ ରଖନ୍ତୁ ଯତନେ,
ବୀରବେଶେ ହ୍ୟାମ୍‌ଲେଟ୍‌ଙ୍କୁ ମଞ୍ଚପରେ ନେଇ;
ହୋଇଥିଲେ ସୁପ୍ରସନ୍ନ ଭାଗ୍ୟ ତାଙ୍କ ପ୍ରତି,
ହେମ ସିଂହାସନେ ବସି ଏ ବୀର କୁଞ୍ଜର,
କରିଥାନ୍ତେ ଧୀରମଣି ଚକ୍ରବର୍ତ୍ତୀରୂପେ
ସାମ୍ରାଜ୍ୟ ଶାସନ, ସୁଖ୍ୟାତି-ସୌରଭେ କରି
ମଗ୍ନ ଅମୋଦିତ; ବାଦ୍ୟ ତାଙ୍କ ଯାତ୍ରାକାଳେ

ସମର ବାଜଣା, ଘୋର ସ୍ୱନେ, ଅନୁସର
ଯଥାବିଧି ସାମରିକ ରୀତି !

ଶବରଣି

ଉଠାଅ ବନ୍ଧନ; ଏ ଦାରୁଣ ଦୃଶ୍ୟ ସିନା
ଅଲଙ୍କାର ସମର କ୍ଷେତ୍ରର, ମାତ୍ର ଏଥି
ଦୃଷ୍ଟିକଟୁ ଏହା । ଯାଅ ଦିଅ ସୈନ୍ୟଗଣେ
ଆଜ୍ଞା, କରନ୍ତୁ ସେ ତୋପଧ୍ୱନି ।

( ଅନ୍ତ୍ୟେଷ୍ଟିକାଳୀନ ସାମରିକ ବାଦ୍ୟ । ମୃତ ଦେହ ସବୁ ବହନ କରି ସମସ୍ତଙ୍କ ପ୍ରସ୍ଥାନ; ଉପରେ ତୋପଧ୍ୱନି )




କଟକ ସତ୍ୟବାଦୀ ପ୍ରେସରେ ଶ୍ରୀ ରାଧାନାଥ ରଥଙ୍କ ଦ୍ୱାରା ମୁଦ୍ରିତ । ୧୯୩୪